# ବଡ଼ଘରେ ବଡ଼କଥା

କମଳାକାନ୍ତ ଦାଶ

ଓଡ଼ିଶା ବୁକ୍ ଷ୍ଟୋର୍

ବଡ଼ଘରେ ବଡ଼କଥା—

ଲେଖକ
କମଳାକାନ୍ତ ଦାଶ

ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ—୨ ଓ
ଭୁବନେଶ୍ୱର—୯

ପ୍ରଥମ ସଂସ୍କରଣ
ମହାବିଷୁବ ସଂକ୍ରାନ୍ତି—୧୯୭୩

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ
କାଜିବଜାର, କଟକ—୧

**ମୂଲ୍ୟ :**
ସାଧାରଣ ଆଠ **ଟଙ୍କା**
ଶୋଭନ [illegible] **ପଚାଶ ପଇସା**




# ଓଡ଼ିଶା ସାହିତ୍ୟ ଏକାଡେମୀ
## ଭୁବନେଶ୍ୱର

ମାନନୀୟ ଶ୍ରୀଯୁକ୍ତ କମଳାକାନ୍ତ ଦାଶ

ମହୋଦୟ,

ଜନପ୍ରିୟ ଔପନ୍ୟାସିକ ଭାବରେ ଆପଣ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ବହୁ ଉଚ୍ଚକୋଟୀର ଉପନ୍ୟାସ ରଚନା କରି ଆପଣ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଅଛନ୍ତି ।

ଆପଣଙ୍କଦ୍ୱାରା ରଚିତ ପ୍ରତ୍ୟେକଟି ଉପନ୍ୟାସ ଭାଷା, ରଚନାଶୈଳୀ ଏବଂ ଚରିତ୍ରଚିତ୍ରଣରେ ଆଦର୍ଶସ୍ଥାନୀୟ ।

କ୍ଷୁଦ୍ରଗଳ୍ପ, କବିତା ଏବଂ ନାଟକ ରଚନାରେ ମଧ୍ୟ ଆପଣଙ୍କର କୃତିତ୍ୱ ଅଭିନନ୍ଦନୀୟ ।

ଏଣୁ ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆପଣଙ୍କର ସାହିତ୍ୟିକ କୃତିତ୍ୱକୁ ସମ୍ମାନିତକରି ନିଜକୁ ଗୌରବାନ୍ୱିତ ମନେକରୁଅଛି ।

ସଭାପତି | ତା ୨୫ । ୧୦ । ୧୯୭୨ | ସମ୍ପାଦକ

ସଂଯମର ଯୁଗ ଯୁଗ ସାଧନା ପରେ ଆଜର ଏ ସଂସ୍କୃତ ମାନବ ସମାଜଟି ପ୍ରତିଷ୍ଠିତ । ଚରିତ୍ରହୀନତା ଓ ବ୍ୟଭିଚାରର ଫଳରେ ବହୁ ବଡ଼ ବଡ଼ ପରିବାର ସମୂଳେ ନଷ୍ଟ ହୋଇଯାଇଥିବା କଥାରେ ଇତିହାସର ବହୁ ପୃଷ୍ଠା ପରିପୂର୍ଣ୍ଣ । ସୁଶୃଙ୍ଖଳ, ସୁସଂଯତ, ସୁସଭ୍ୟ ମାନବିକତା ହିଁ ଦେବତ୍ୱ ।

ଚରିତ୍ରହୀନାଃ ପଶୁଭିଃ ସମାନାଃ ।

**କମଳାକାନ୍ତ ଦାଶ**

## ଲେଖକଙ୍କର ରଚନାବଳି :

**ଉପନ୍ୟାସ :**

ବୋଉ, ଆଶ୍ରିତ, ଭଉଜ-ବୋଉ, ମନଗ୍ରେଶ, ଜୀବନ-ସଉଦା, ମଣିଷର ଦାବୀ, ମନର ଦାଉ, ଶରଧା ନାମା, ରୂପହୀନାର ଜୀବନ, ଚରିତ୍ରହୀନା, ମିଳନ-ସନ୍ଧ୍ୟା, ମଦଭାଟି, ସଦର-ମଫସଲ, ଚବଶ ନମ୍ବର କେବିନ୍, ନର୍ତ୍ତକୀ, ବନାମୀର ନିଦ୍ରାଭଙ୍ଗ, ଦୀପଶିଖା, ବାପା, ଗୃହଦାମଚଉକ, ଆଜାନ୍, ଚନ୍ଦ୍ର-ତାରକା, ପଦ୍ମାଳୟା ହୋଟେଲ, ରକ୍ତରାଗ (ଅନୁବାଦ), ଚଢ଼ଆଖାନା, ଇଚ୍ଛାବରଣ, ବଡ଼ଘରେ ବଡ଼କଥା ।

**ଗଳ୍ପ**

ଧର୍ମପଥ, ଦାସଙ୍କ ଚଟଣି, ନବ ପତ୍ରିକା, ଘାସୀପଡ଼ାର ମାୟା, ଭୂତଗଳ୍ପ ।

**ଜୀବନୀ :** କବି ଗଙ୍ଗାଧର

**କବିତା** ସାବଜୀ, ଉଆଁସ ।

**ଶିକ୍ଷା ପୁସ୍ତିକା** ସଂକ୍ଷେପେ ସମବାୟ ।

**ଚନ୍ଦ୍ର ନାଟିକା :** ଜାଗରଣୀ, ଗାଆଁ ମାଟି ।



ଭାଦ୍ର—ଶୁକ୍ଳ-ଦ୍ୱାଦଶୀ—ସୁନିଆଁ । ଠାକୁର ରାଜାଙ୍କ ନୂଆବର୍ଷ ଆରମ୍ଭ । ଏବେ ଯୁଗ ବଦଳିଛି । ଆଗେ ଜମିଦାର ଓ ପ୍ରଜାଙ୍କ ଭିତରେ ଭେଟା ଭେଟିର ଦିନ । ଫଳେ ପୁନଶ୍ଚ ଯାହାକୁ ଯାହା ମିଳେ ତାହା ହାତରେ ଧରି ଗୋଟି ଗୋଟି ଓ ଦଳ ଦଳ ହୋଇ ଜମିଦାରଙ୍କ ଘରକୁ ପ୍ରଜାମାନେ ଆସୁଛନ୍ତି—ଭେଟି ଦେବାଲଗି । ଜମିଦାରଙ୍କ ଆଡ଼ୁ ମଧ୍ୟ ସେମାନଙ୍କ ଚର୍ଚ୍ଚା ଓ ଅଭ୍ୟର୍ଥନା ଲଗି ବ୍ୟବସ୍ଥା ଚାଲିଛି । ପ୍ରଜାଏ ରାତିରେ ରହିବେ, ଭୋଜ-ଭାତ ଖାଇବେ, ନାଟ ତାମସା ଦେଖିବେ; ଆନନ୍ଦ ମନରେ ଘରକୁ ଲେଉଟିବେ । ବର୍ଷକ ପରେ ହୁଏ ତ ପୁଣି ବାପ-ପୁଅର ଭେଟ ହେବ ।

ସାକ୍ଷାତବେଳେ ଭଲ ମନ୍ଦ, ସୁଖ ଦୁଃଖ ଓ ହାରି ଗୁହାରି କଥା ପଡ଼େ । ଭଲରେ ଭଲରେ ଅଡ଼ୁଆ ତଡ଼ୁଆର ମୀମାଂସା ହୋଇଯାଏ । କଚେରି ବରଣ୍ଡାଯାକ ସତରଞ୍ଜି ବିଛା ହୋଇଛି । କଚେରି ହତା ଭିତରେ ବଉଳ ଗଛ ଛାଇତଳେ ମୁଦିରା ହେଁସ ଉପରେ ପ୍ରଜାଏ ଆଣିଥିବା ଭେଟିଯାକ ଜମା ହୋଇଛି—କଦଳୀ କାନ୍ଧି, କଖାରୁ ଓ ଖମ୍ବ ଆଳୁ ଆଦି ଏବଂ ଦୁଧ, ଦହି, ଛେନା, ଘିଅ ଆଦିର ହାଣ୍ଡିମାନ ଓ ଆଉରି କେତେ କଅଣ । ସଦର ଗୁମାସ୍ତା ବୁଢ଼ାଲୋକ, ମୁଣ୍ଡରେ ବେଣ୍ଟି, ଦେହରେ ଫତେଇ ଜାମା । ମାଣିଆବନ୍ଧୀ ଧୋତି ପହରଣ । ଅଣ୍ଟାରେ ଗୁଡ଼ିଆ-ହୋଇଛି ଜରିପାଡ଼ ଓଢ଼ା । ନାକ ଅଗରୁ ତାଳୁଯାକେ ହରି ମନ୍ଦିର ଚିତା । ନସର ପସର ହୋଇ ଏଣେ ତେଣେ ଧାଇଁଛନ୍ତି । ମୋହରିର ନନ୍ଦ ମହାପାତ୍ର ହେଁସ ଉପରେ ବସିପଡ଼ି ଜଙ୍ଘ ଉପରେ ହିସାବ ଫର୍ଦ୍ଦଟା ଥୋଇ କାଠି କଲମରେ ଟିପି ଯାଉଛନ୍ତି—କେଉଁ ଗାଁରୁ କେଉଁ ପ୍ରଜା କଅଣ କଅଣ ଭେଟି ଆଣିଛନ୍ତି ।

ତେଣେ କୋଣବାଡ଼ିଆ ହୋଇ ଗୋସେଇ ଖନ୍ଦା ଉପରେ ବଡ଼ ବଡ଼ ପିତ୍ତଳ ହଣ୍ଡାମାନଙ୍କରେ କାନକା, ଖିଆ, ଡାଲି, ତରକାରି, ଆମ୍ବିଳ, ଶାଗ-ଘଣ୍ଟ ଆଦି ରନ୍ଧା ହୋଇ ରଖାଯାଉଛି । ଗୁଡ଼ିଏ ଜଣ ରାନ୍ଧୁଣୀଆଙ୍କ ଉପରେ ଫଙ୍କାର ପଣ୍ଡାଏ ଲୁହାର ବଡ଼ ଚଟୁଟାଏ ଧରି ହୁକୁମ ଚଲେଇଛନ୍ତି । ଦୁଇଜଣ ଠେଙ୍ଗୁଆ ପଳପଟରବା କାଠି ଯୋଗାଉଛନ୍ତି । ଶିଳ ଉପରେ ଅଣନଃଶ୍ୱାସୀ ହୋଇ ଆଉଜଣେ ମସଲ ମସଲ ବାଟି ଯାଉଛି ଏବଂ ବଡ଼ ବଡ଼ ପଗଡ଼ ଥାଳୀରେ ସମ୍ଭାଳି ରଖୁଛି । ଇନ୍ଦ ଆଉ ବୃନ୍ଦ ବୋଲି ଦୁଇଜଣ ଗୃହକର୍ତ୍ରୀ । ବୟସ କେତେ କେତେ ହେବ ବାର ହେଉନାହିଁ । ବଡ଼ଲୋକ ଘରେ ଅଏସରେ ବଢ଼ୁଛନ୍ତି । ଜଣକ ହାତରେ ରୁପା ପଇଁଚ ଓ କାଚ ଏବଂ ଆର ଜଣକ ହାତରେ ବଟଫଳ ଓ ନାଲି ଶଙ୍ଖା । ବାହୁରେ ଜଣଙ୍କର ରୂପାର ତାଇତ ହେଲେ ଆରଜଣକ ହାତରେ ଅନନ୍ତ । ଜଣକ ବେକରେ ସୋରିଷିଆ ମାଳି ତ ଆର ଜଣକର ଗଳାରେ ହରଡ଼-ଫାଳିଆ କଣ୍ଠି । ଇନ୍ଦର କାନରେ ସୁନାର ଲବଙ୍ଗ ଦାନା ଏବଂ ଅଣ୍ଟାରେ ସରକଆ ରୂପାଗୋଠ । ବୃନ୍ଦର କାନରେ ଝିଁଲୁଚି ଢଇଠା ମାଙ୍କିଡ଼ି ଆଉ ଗୋଡ଼ରେ ମଗରମୁହାଁ ମଲ । ଦୁହିଙ୍କ ମୁଣ୍ଡରେ ଜୁଡ଼ା । ରୂପାର ଝିମ୍ପି ପଛପଟକୁ ଓହଳାଇ ଉଭୟଙ୍କର । ଆଖିରେ କଜଳଗାର ସାଙ୍ଗକୁ ଓଠରେ ଦୁହିଁଙ୍କର ଚୂନ ଖଇରର ନାଲିଆ ବୋଳ । ଖିଲେ ଲେଖାଁ ଟାନ ପାଟି ଭିତରେ ପୂରେଇ ଦେଇଛନ୍ତି ଯେ ଦୁହିଙ୍କ ବାଁ ଗାଲ ଫୁଲୁକା ଫୁଲୁକା ଦିଶୁଛି । ଏଣେତେଣେ ଗୋସେଇ ସରଞ୍ଜାମ ଧରି ଦୋହଲି ଦୋହଲି ଯା ଆସ କଲା ବେଳକୁ ହସଫୁଟା ମୁହଁରେ ସୌନ୍ଦର୍ଯ୍ୟର ତେଜ ଖେଳୁଛି । ଦୁହିଙ୍କର ପୁରିଉଠୁଥିବା ଭରା ଯୌବନର ଜୁଆର ମନମତାଣିଆ ତେଜ ପିଟୁଛି । ରାନ୍ଧୁଣିଆମାନଙ୍କ ଆଖି ତାଙ୍କର ଆଡ଼େ ବୁଲୁଚି । ହେଉ୍ ପୂଜାରୀ ନିଜ ବୟସର ସଞ୍ଜମକୁ ସମ୍ଭାଳିନେବାକୁ ଚେଷ୍ଟା କରି ଲୁଚିଇ ଲୁଚିଇ କଣେଇ କଣେଇ ସେମାନଙ୍କ ଆଡକୁ ଅନାଇ ଦେଉଛି ସିନା ପ୍ରକାଶ୍ୟରେ ପାଟିକରି ଉଠୁଚି—କରେ ଟୋକାଏ, ନିଜ କାମରେ ମନ ନ ଦେଇ ଏଣେତେଣେ ମନ ଉଡ଼ଉଚି କାହିଁକି ? ଲୁଣ ତେଲ ବେଶୀ କମି ହୋଇ ଯିବ ଯେ !

ପଣ୍ଡାଙ୍କ କଥା ଶୁଣି ଇନ୍ଦ୍ର ଆଡକୁ ଅନାଇ ମୁରୁକି ହସା ଦେଉଚ—ଗୃନ୍ଦ । ଦୁ'ଜଣଙ୍କ ମନଭିତରେ ରସାନୁଭୂତିର ସୁମିଷ୍ଟ ମାଦକତା ଉଛୁଳୁଚ । ଦୁହେଁଯାକ ଅବିବାହିତ । ବଡ଼ଘରେ ବଡ଼ୁଚନ୍ତି । ଆଇଁସର ଆଇଁସିଆ ଗନ୍ଧକୁ ଧେନ ସଦାବେଳେ କାରବାର ତାଙ୍କର । କେଉଁ କଥାଟି ଅଜଣା, ନା କେଉଁ କଥାରେ ଅଭାବ ? ଦରିଦ୍ର ଘରେ ଜନ୍ମିଥିଲେ ହେଁ ବଡ଼ଘରେ ବର୍ଢିଲରୁ ବିଧାତା ତାଙ୍କୁ କୌଣସି ଦିଗରେ ଦରିଦ୍ର କରି ନାହାନ୍ତି । ବଳ, ବପୁ ଓ ଯୌବନ ଶ୍ରୀ—ବନ୍ୟା ଆସିଲେ ଖାଲ, ଖମା, ନଈ, ନାଳ ସବୁତ ଭରିଯାଏ—ପୂରିଯାଏ—ଫୁଲି ଉଠୁଥାଏ ଢେଉ । ଫଗୁଣ ବେଳକୁ ଦକ୍ଷିଣା ପବନ ବହିଲେ ଥୁଣ୍ଟା, ଝଁଟା, କଣ୍ଟା, ଲଟା ସବୁଯାକ ହସି ଉଠନ୍ତି ସିନା! ଯୌବନର ଦାନ ଦେଲବେଳକୁ ସାମ୍ୟବାଦୀ ବିଧାତା କାହାରିକି ଅଳ୍ପ ବହୁତ ଦେବାର କେହି କେବେ ଦେଖିଚକି ?

ଯୌବନେ ମର୍କଟୀ ରମ୍ୟା ।

"କାମ ଗୃଲିଚନା ହସ ହଉଚ ?" କହି କହି ସଦର ଗୁମୁସ୍ତାଏ ପଶି ଆସିଲେ । ଗୁମୁଦାନ୍ତ କେତୁଟା ଉପୁଡ଼ି ଯାଇଚ । କାମ ତଦ୍‌ବିର କରିବା ବାହାନାରେ ସେଏବି ବେଳେ ବେଳେ ଇଆଡ଼କି ପଶିଆସି, ମସଲିବଟା ଓ ପରିବାକଟା ପାଖରେ ଠିଆହୋଇ ଯାଉଚନ୍ତି—ଚଳନ୍ତି ଯୌବନର ସଞ୍ଚାଳିତ କୁହୁକ ମଦିରା ଭିତରେ ସେ ବି ନିଜେ ଆତ୍ମ-ବିଭୋଳତାର ପରମ ସୁଖ ଗୃଖିବା ଲାଗି ଆସିଯାଉଚନ୍ତି । କାହାରି ମନ ଭିତରେ ତ ଦାନ୍ତ ନାହିଁ ଯେ ଝଡ଼ିପଡ଼ିବ ! କେଶ ନାହିଁ ଯେ ପାଚି ଧଳା ପଡ଼ିଯିବ !

ପଗ୍ଚରିଲେ—କେତେଦୂର ଗଲା ?

ଫକୀର ପଣ୍ଡା ହସ ଗୃପି ଉତ୍ତର ଦେଲେ—

—ଖରିବଣ ଯାକେ ।

—କଅଣ ଖରିବଣ କଅଣ ?

ଉତ୍ତର—ଫେବ୍ରୁଆ ମାସରେ ଭଗ୍ନାନଣରେ ପାଣି କମି କମି ଆସୁଥାଏ । ବାଲି ପଠା ଉପରେ ଖରବଣରେ ଧଳା ଧଳା ଫୁଲ ଫୁଟି ବଗପକ୍ଷୀ ପ୍ରାୟ ଧଳା ଦିଶୁଥାଏ । କେମିତି ସୁନ୍ଦର ଦେଖାଯାଉଥାଏ ଆଜ୍ଞା ?

ପଣ୍ଡାଏ ପାଲ୍ଲ ଦଳର ଗାୟଣ । ସଦର ଗୁମାସ୍ତାଙ୍କ ମନର ଠେର ପାଇ ଠାରରେ କହିଦେଲେ ଯେ ତାଙ୍କ ମୁଣ୍ଡରେ ଅଧାଅଧି ବାଳ ଧଳା ପଡ଼ିଗଲାଣି ଏଣେ ଦାନ୍ତ ପଡ଼ିଗଲାଣି । ବୁଢ଼ା ବୟସରେ ମନ ଭିତରେ ଯୁବା ବୟସର ଆଇଁସିଣିଆ ଚନ୍ତା କାହିଁକି ? ଗୁମୁକରଣେ ସେ କଥାଟି ବୁଝିଲେ ଏବଂ ହସ ମୁହଁକୁ ତଳକୁ କରି ଆଡ଼େଇ ହୋଇ ଯିବାକୁ ବାହାରିଲେ । ଜଭଠାକୁ କାମୁଡ଼ି ପକାଇ, ମୁଣ୍ଡ ଉପରକୁ ଓଢ଼ଣାଟା ଘୋଡ଼େଇ ପକାଇ ମୁରୁକି ହସି ତଳମୁହାଁ ହୋଇ ଇନ୍ଦ ଶୁଣାଇ ଦେଲି—ତମର ସେଆଡ଼ି କାମ କେତେଦୂର ଗଲା ଗୁମୁକରଣେ ? ବୁଢ଼ାଙ୍କର ଏଠି କିଛି କାମ ନାହିଁ ।

ଗୁମୁକରଣେ କହି ଉଠିଲେ—ନାଚୁଣୀ ଦିଜଣ ଏଠି କଅଣ କରୁଚନ୍ତି ଦେଖିବା ପାଇଁ ଅଇଲି ପରା ? ଘବଲି—କାମ ଚୁଲିଚ ନା ରଙ୍ଗରସ ଚୁଲିଚ ?

ଆଖିଡୋଳା ଦୁଇଟାକୁ ଅତି ଚଞ୍ଚଳ ଖେଳେଇ ନେଇ ଇନ୍ଦ ଜବାବ ଦେଲି—ସବୁ ଚୁଲିଚ ଆଜ୍ଞା; ସବୁ ଏକା ସଙ୍ଗରେ ଚୁଲିଚ ଆଜ୍ଞା ।

ଗୁମୁକରଣେ ଅଳ୍ପ ହସି ଠିଆ ହୋଇଗଲେ ଏବଂ ଚାହିଁ ରହିଲେ—ଇନ୍ଦ—ଚୁନ୍ଦ ଆଡ଼କୁ । ତରଙ୍ଗାୟିତ ଅଙ୍ଗଲତାର ହିଲ୍ଲୋଳିତ ଦୋଳନ ଆଡ଼କୁ । ତା ପରେ ଧୀରେ ଧୀରେ ଅନ୍ୟ ଦିଗକୁ ଚୁଲି ଚୁଲି ଚୁଲିଗଲେ—ବିବେକର ଚୁବୁକ୍ ପ୍ରହାରରେ । ବୟସ ଆଗକୁ ମାଡ଼ି ଚୁଲି ଯାଉଚି ସିନା, ଅଳ୍ପ ବୟସର ଉନ୍ମାଦନା ପୂର୍ତ୍ତି ଆଗାଠା କନ୍ତୁ ପୂରାପୂରି ବିଦାୟ ନେଇ ଯାଉନାହିଁ ।

ଅଦୂରରେ ଦୋଳମଣ୍ଡପ । ଦୋଳକୁ ଠାକୁରେ ଝୁଲନ୍ତି । ଏବେ ଗୋଟାଏ ବଡ଼ଚୁନ୍ଦୁଆ ଠଣା ହୋଇଚି । ତଳେ ପରା ହୋଇଚି ଲମ୍ବା

ଲମ୍ବା ମଜଲିସ ମସିଣା । ତା ଉପରେ ଗାଁର ଛୁଆ ପିଲାଏ ଡିଆଁ ଡେଇଁ କରୁଚନ୍ତି । ପ୍ରଜାଙ୍କ ଭିତରୁ କେହି ତା ଉପରେ ଶୋଇଛ ବା କେହି କେହି ଗଡ଼ୁଚନ୍ତ—ବସିବସି ବାର ଆଡ଼ର ତେର ଗପ କୁହାକୁହି ହୋଇ ସମୟ କଟାଉଚନ୍ତ । ରାତକ ନାଚ ହେବ । ଠାକୁରଙ୍କ ବେଢ଼ା ଭିତରେ ଥିବା ଗୋଟାଏ ଘରେ ପଞ୍ଝାଏ ନାଚବାଲା ରହି ରହି ତୁରି ତାବଲାରେ ଟୁଂ ଟାଂ କର, ହାରମନିଆରେ କୁଁ କାଁ ତାନ ଉଠେଇ ଗାଁ ଝିଅ ପୁଅଙ୍କ ମନ ଭିତରେ ଉଦ୍ବେଗ ଓ ଉତ୍କଣ୍ଠାର ଅସରନ୍ତ ଢେଉ ଖେଳାଇ ଚାଲିଚନ୍ତି । ସମସ୍ତଙ୍କ ମନ ଭିତରେ— କେତେବେଳେ ସଞ୍ଜ ଓ ରାତି ହେବ ? କେତେବେଳେ ଯାତ୍ରା ଆରମ୍ଭ ହେବ ? ଗାଁର ଏମୁଣ୍ଡରୁ ସେମୁଣ୍ଡଯାକେ ବୋହୂ ଭୁଆସୁଣୀଏ ଦିନ ଥାଉଁ ଥାଉଁ କାମଧନ୍ଦା ଶେଷ କରିବା ପାଇଁ ବ୍ୟଗ୍ର ହୋଇ ଉଠିଲେଣି । ଗାଁର ସମସ୍ତଙ୍କୁ ବାବୁଘରେ ନିମନ୍ତ୍ରଣ । ରାତକ ସମସ୍ତେ ସେଇଠି ଖାଇବେ । ନାଚ ତାମସା ଦେଖି ମନ ଆନନ୍ଦରେ ରାତି କଟାଇବେ । ଆଜ ନୂଆଁ—ବର୍ଷର ପ୍ରଥମ ଦିନ ।

କଚିର ଦାଣ୍ଡରେ ଗଛ ଗୁଡ଼ିଇତଳେ ମଦରପୁରର ଢୋଲିଆ କାହାଳିଆଏ ଅପେକ୍ଷା କର ବସିଚନ୍ତ—ବାବୁଙ୍କ "ସୁଆରି" ବିଜେ ହୋଇଗଲେ ଭେଟି ବାଜଣା ବଜାଇ ଉଠିବେ ବୋଲି । ପକ୍କା ଶଡ଼ିକ ଆଡ଼କୁ ଚଙ୍ଗ ଚଙ୍ଗ ହୋଇ ଚାହିଁ ରହିଚନ୍ତ । ବାବୁ, ବାବୁଆଣୀ କଟକରେ ଥାଆନ୍ତ । ଘୋଡ଼ା ଗାଡ଼ିରେ ଆସି ସଞ୍ଜ ଆଗରୁ ନିଶ୍ଚେ ବିଜେ ହେବେ । ଏକା ସେଇମାନେ ନୁହେଁ, ଚାକର ବାକର, ଗୁମାସ୍ତା ମୋହରର, ପ୍ରଜାପାଟକ ଓ ଗାଁ ବାସୀଏ ; ସାନ ବଡ଼ ସମସ୍ତେ ଯୋଡ଼ି ଘୋଡ଼ା ବେକର ଘଣ୍ଟିକୁ କାନେଇ ରହିଚନ୍ତ । କେତେବେଳକେ ଶୁଭିଲା —ରୁଣୁଝୁଣୁ ରୁଣୁଝୁଣୁ । ସମସ୍ତଙ୍କ ମନରେ ଆନନ୍ଦ ଖେଳିଗଲା—ହେଇଟି ବାବୁ ଆସିଗଲେ । ସେତେବେଳକୁ ବେଳ ରହିରହି ।

ଆସିଗଲେ ବାବୁ । ଜମିଦାର ଆସିଗଲେ । ସାଆନ୍ତେ ଆସି-ଗଲେ । ସାଆନ୍ତାଣୀ ବି ଆସିଥିବେ । ଦୁଇଟି ବଡ଼ବଡ଼ ଧଳା ଘୋଡ଼ା— ବେକରେ ଘଣ୍ଟି । ଚକଚକିଆ ବଗି ଗାଡ଼ିଟା ଆଗେଇ ଆସିଲା ।

ଚାବୁକ ଓ ଲଗାମ ଧରିଥିବା ପଗଡ଼ି ମୁଣ୍ଡିଆ କଚୁଆନ ଦେଖାଗଲା । ସାନ ବଡ଼ ଗାଁ ବାସୀଏ ଯିଏ ଯୋଉଠି ଥିଲେ—ଧାଇଁ ଆସିଲେ । ବଜନ୍ତ୍ରୀମାନେ ଏକା ସଙ୍ଗରେ ଢୋଲ ପେଁକାଳି ବଜାଇ ଉଠିଲେ । ଗାଡ଼ି ଆସି ଭିତର ମହଲକୁ ମୁହାଁଇଲା । ପକ୍କା ପାଚେରି ଫାଟକର ଦୁ'କଡ଼କୁ ଉଚ୍ଚା ଉଚ୍ଚା ପକ୍କା ଖମ୍ବ ଓ ଉପରକୁ ଖିଲାଣ । ଲୋକେ କହନ୍ତି ଏଇ ଖିଲାଣ ତଳେ ସାଆନ୍ତଙ୍କ ବାପା ଅମଳରେ ହାତୀ ଯା ଆସ କରୁଥିଲା । ଗାଡ଼ି ଭିତରେ ଗୋଟିଏ କଡ଼କୁ ବାବୁ ବସିଚନ୍ତି, ଆର କଡ଼କୁ ବାବୁଆଣୀ । ଦୁହେଁଯାକ ବାହାରକୁ ମୁହଁ କାଢ଼ି ହସି ହସି ସମସ୍ତଙ୍କ ସଭକ୍ତି ପ୍ରଣାମ ଗ୍ରହଣ କରୁଚନ୍ତି ଏବଂ ସାନ ବଡ଼ ସମସ୍ତଙ୍କୁ ଆନ୍ତରିକ ଅଭିବାଦନ ଜଣାଉଚନ୍ତି । ଅନ୍ଦର ମହଲର ଦୁଆର ମୁହଁକୁ ଅପେକ୍ଷା କରିଚନ୍ତି ଭିତର ଲୋକେ, ଆତ୍ମୀୟ-ସ୍ୱଜନ, ଦାସଦାସୀ, ଝିଅ ବୋହୂ ସମସ୍ତେ । ସମସ୍ତଙ୍କ ମୁହଁରେ ଆନନ୍ଦ ଏବଂ ତୁଣ୍ଡରେ ଗୋଟିଏ ମାତ୍ର ଝଙ୍କାର—ବାବୁ ବାବୁଆଣୀ ଆସିଗଲେ ।

ଆସି ପହଞ୍ଚିଗଲେ—ବାବୁ ନକୁଳଚନ୍ଦ୍ର ଚଉଧୁରୀ । ଇଂରେଜ ସରକାରଙ୍କ ଠାରୁ ମିଳିଥିବା 'ରାୟ ସାହେବ' ଉପାଧିରେ ଭୂଷିତ—ଗାଁରେ ଜମିଦାର ଏବଂ କଟକରେ ନାମଜାଦା ଓକିଲ । ତା ଛଡ଼ା ଓଡ଼ିଶା ଓ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ହେଲେ ଜଣେ ସୁନାମଧନ୍ୟ ସାହିତ୍ୟିକ । ରୂପବାନ, ଗୁଣବାନ, ବରେଣ୍ୟ ପଣ୍ଡିତ ଓ ସୁବକ୍ତା । ସଙ୍ଗରେ ଆସିଚନ୍ତି ସାଆନ୍ତାଣୀ—ବୟସ ତିରିଶ ପଇଁତିରିଶ ହେବ । ସେ କାଳକୁ ତାଙ୍କ ଯଥେଷ୍ଟ ଶିକ୍ଷା ଲାଭ କରିଚନ୍ତି । ବଡ଼ଲୋକ ଘର ଝିଅ । ଜମିଦାର ଘରକୁ ବୋହୂ ହୋଇ ଆସିଚନ୍ତି । ପିଲାଦିନୁ ଦାସୀ ଚାକର ସେବା ବଢ଼ିଚନ୍ତି—ଘିଅରେ ମଣୋହି ତ ଦୁଧରେ ଅନ୍ଧେଇ ହେଉଚନ୍ତି । ରୂପକୁ ଲାଗି ନାଆଁଟିଏ ପାଇଚନ୍ତି—ଲାବଣ୍ୟମୟୀ ।

ଦୁଆର ମୁହଁକୁ ପାଡ଼ିଢାଳ ଧରି ଅପେକ୍ଷା କରି ରହିଥିଲା—ବାରିକ ପିଲା । ଦୁହେଁଯାକ ଭିତର ମହଲକୁ ପ୍ରବେଶ କଲେ । ଉଚ୍ଚ ଡିହ ଉପରେ ପ୍ରକାଣ୍ଡ ଧୂଳିଆ ଘର । ତଳ ପକ୍କା, କାନ୍ଥ

ପକ୍କା, ମୋଟା ମୋଟା କାଠ ଖୁଣ୍ଟରେ କେତେ ପ୍ରକାରର ଲତା ପତ୍ର ଓ ମୂର୍ତ୍ତି ଖୋଳା ହୋଇଛି । ଉଚ୍ଚା ଉଚ୍ଚା ଚାଳ ଓ କାଠର ରୁଅ ବତା, ଏବେ ସେ ଧୂଳିଆ ଘର ଦେଖିବାକୁ ସ୍ୱାତ ସପନ । ବଡ଼ ବଡ଼ ଘର । ଚୌଡ଼ା ଚୌଡ଼ା ବରଣ୍ଡା, ପ୍ରକାଣ୍ଡ ପକ୍କା ଅଗଣା । ବଡ଼ ବଡ଼ ପଞ୍ଜର ଝରକା । ଅଗଣାରେ ପକ୍କା କୂଅ, ପଥରର ଗାଧୁଆ କୁଣ୍ଡ ଓ ଗାଧୁଆ ଚଉକ । କୂଅ କଡ଼କୁ ଯୁଈ, ଯାଈ, ମଲ୍ଲୀ ଫୁଲ ଗଛ । ଅଦୂରରେ ଉଚ୍ଚା ପକ୍କା ଚଉରା ଉପରକୁ ଝଙ୍କା ତୁଳସୀ ଗଛ । ଇଶାନ କୋଣକୁ ଗୋସେଇଶାଳ । ଦାଣ୍ଡ ଆଡ଼କୁ ବିରାଟ ବୈଠକଖାନା— ଭିତରେ ମଜଲିସ ଗାଲିଚା ଉପରକୁ ମୋଟା ମୋଟା ତକିଆ । ଶେଣୀ ଉପରୁ ଓହଳଥାଏ କାଚର ଝାଲର ଲଗା ବଡ଼ ବଡ଼ ଲଣ୍ଠନ । କାନ୍ଥସାକ ବିଭିନ୍ନ ଦେବ ଦେବୀଙ୍କ ଚିତ୍ର ଅଙ୍କା ହୋଇଥାଏ । ଜମିଦାର ସାଆନ୍ତେ ସେଇ ଘରେ ବସି ଦରବାର କରନ୍ତି । ପ୍ରଜାପାଟକ ଆସି ହାରି ଗୁହାରି ଜଣାନ୍ତି । ଏଇ ଘରେ ତୁଣ୍ଡେ ତୁଣ୍ଡେ ବିଚାର ଓ ଫଇସଲା । କଟକ ପୁରି ସହରର ବରଗଛ ତଳ ନାହିଁ କି ଓକିଲ ମୋହରିର ବା ପେସକାର, ହାକମ ନାହାନ୍ତି । ସେ କାଳର ଜମିଦାର ଆଜି ନାହାନ୍ତି କି ସେମାନଙ୍କ ସାହାଯ୍ୟ ସହାନୁଭୂତି ଓ ବିଚାର ଏବଂ ଅନ୍ୟାୟ ଅତ୍ୟାଚାର ବି ଏବେ ନାହିଁ । ଜମିଦାର ଭଲ ଲୋକ ଥିଲେ ସବୁ ଭଲ, ଖରାପ ଲୋକ ଥିଲେ—ଅନ୍ୟାୟ ଅତ୍ୟାଚାର ।

ବାବୁ ବାବୁଆଣୀ ଆସିଚନ୍ତି । ଆଜି ସୁନିଆଁ । ରାଜ ପହଡ଼ିକ ସରିକ ଭୋଜି ଭାତ । ତା ପରେ ନାଚ ତାମସା । ଓଡ଼ିଆ ଘରେ ଆଜି ନୂଆ ବର୍ଷର ଆରମ୍ଭ ଦିନ । ଆଜିଠାରୁ ଠାକୁର ରାଜାଙ୍କ ନୂଆ ଅଙ୍କ ଗୁଣିବ । ଓଡ଼ିଆ ପ୍ରାଣରେ ଆଜି ନୂଆ ଉନ୍ମାଦନା ଓ ନବ ପ୍ରେରଣାର ଢେଉ ଉଚ୍ଛୁଳୁଛି ।

ବାବୁ ଆସିଚନ୍ତି । ରାୟ ସାହେବ ନକୁଳଚନ୍ଦ୍ର ଚଉଧୁରୀ । ବିଖ୍ୟାତ ପଣ୍ଡିତ ଓ ସାହିତ୍ୟିକ । ଅଞ୍ଚଳ ସାରା ଲୋକେ ତାଙ୍କୁ ଭକ୍ତି କରନ୍ତି, ଭୟ ମଧ୍ୟ କରନ୍ତି ।



ପୁରି ଜିଲ୍ଲାର ସୁଭଦ୍ରାଦେଇପୁର ଶାସନ—ଲାବଣ୍ୟଦେବୀଙ୍କ ବାପଘର । ପକ୍କା ସଡ଼କ କଡ଼କୁ ଶାସନ ଗ୍ରାମଟି ପଶ୍ଚିମରୁ ପୂର୍ବ ଆଡ଼କୁ ଅଧ ମାଇଲିଏ ଲମ୍ବି ଯାଇଛି । ପକ୍କା ସଡ଼କ ଛାଡ଼ି ଶାସନ ଭିତରକୁ ଗଲେ ମାନେ ବେଲେଶ୍ୱର ମହାଦେବ ମନ୍ଦିର ଏବଂ ବେଲ-ଗାଡ଼ିଆ ପୋଖରୀ । ତା ପରେ ସିଧା ସଳଖ ଚଉଡ଼ା ମାଟି ରାସ୍ତା । ଦି କଡ଼କୁ ସାଆନ୍ତମାନଙ୍କ ଘରର ଉଚ୍ଚା ଉଚ୍ଚା ପିଣ୍ଡା ଏବଂ ତଳକୁ ଲାଗିଲାଗି ନଡ଼ିଆ ଗଛଗୁଡ଼ିକ ଫଳ ଭାରରେ ସୁଇଁରହିଛି ଏବଂ ଗାଁ ଦାଣ୍ଡ ଉପରେ ଘଞ୍ଚ ଛାୟା ବିସ୍ତାର କରିଛି—ଦାଶ, ମିଶ୍ର, ଓଝା, ନନ୍ଦ ଆଦି ବ୍ରାହ୍ମଣ ସାମନ୍ତମାନଙ୍କ ଘରକୁ ନେଇ ଶାସନଟି ଗଠିତ । କେତେ ଶହ ବର୍ଷ ତଳେ କେଉଁ ରାଜାଙ୍କ ରାଣୀ ସୁଭଦ୍ରାଦେବୀ ଏ ଶାସନଟି ବସାଇ ଥିଲେ, ତାର ଉତ୍ତର ଏବେ କେହି ଦେଇପାରିବେ ନାହିଁ । ରାଜଦତ୍ତ ବାଜ୍ୟାପ୍ତି ବାହେଲି ଜମି ପୁଳାଏ ଲେଖାଏଁ ଧରି ସାମନ୍ତମାନେ ପୁରୁଷାନୁକ୍ରମେ ବଂଶ ବୃଦ୍ଧି କରି ଚାଲିଚନ୍ତି । ପ୍ରଥମେ ଅବଶ୍ୟ ସାମାନ୍ୟ କେତୋଟି ଘରକୁ ନେଇ ଶାସନଟି ଗଠିତ ହୋଇ-ଥିଲା । ଏକରୁ ଦଶ, ଦଶରୁ କୋଡ଼ିଏ । ଗ୍ରାମ ସୀମା ପୂର୍ବପଟକୁ ମାଡ଼ି ଚାଲିଛି । ଶେଷକୁ ରାଜଗୁରୁଙ୍କ ଘର ଏବଂ ଧୋବା ଭଣ୍ଡାରୀ ଘର । ରାଜଗୁରୁଙ୍କ ଘରକୁ ଲାଗି ଇଷ୍ଟଦେବୀ କନକ ଦୁର୍ଗାଙ୍କ ମନ୍ଦିର । ତାଙ୍କର ପକ୍କା ବେଢ଼ା ଭିତରକୁ ବଉଳ, ଚମ୍ପା ଓ କୁରୁଅନା ଗଛ କେତୋଟି । ଗାଁ ଲୋକଙ୍କ ଘରେ ବିଭା ବ୍ରତ ହେଲେ ଏଇଁଠାରେ ଦିଅଁ ମଙ୍ଗୁଳା କାମ ବଢ଼େ ।

ସୁଭଦ୍ରାଦେଇପୁର ଶାସନର ଇତିହାସ ସଙ୍ଗେ ଏଇ ରାଜଗୁରୁ ପରିବାରର ଇତିହାସ ଓତପ୍ରୋତ ଭାବେ ଜଡ଼ିତ । ରାଜାଙ୍କ ଗୁରୁ ଥାଇ

ଏ ବଂଶର ପିଲାଏ କାଳକ୍ରମେ ଏ ଶାସନ-ବାସୀ ସମସ୍ତଙ୍କ ଘରେ ପୁରୋହିତ ରୂପେ ପ୍ରତିଷ୍ଠିତ ହୋଇଥିଲେ—କର୍ମ କାଣ୍ଡ ଆସୁ କି ନ ଆସୁ। ରାଜଦତ୍ତ ନିଷ୍କର ଜମି ଏଙ୍କର ଅନେକ ଥିଲା। ଧୀରେ ଧୀରେ ଧନ ସମ୍ପତ୍ତି ଓ ପ୍ରତିପତ୍ତି ବଢ଼ିଲାରୁ ପିଲାଏ ପୁରୋହିତ କାର୍ଯ୍ୟ ଛାଡ଼ିଦେଲେ। ଶେଷ ବଂଶଧର ବିଶ୍ୱନାଥ ବାବୁଙ୍କର ଦୁଇଟି ମାତ୍ର ଝିଅ—ଲାବଣ୍ୟମୟୀ ଏବଂ ସୁବର୍ଣ୍ଣମୟୀ। କଟକ ଜିଲ୍ଲାର ମଧୁସୂଦନପୁର ଜମିଦାର ରାୟ-ସାହେବ ନକୁଳଚନ୍ଦ୍ର ଚଉଧୁରୀଙ୍କୁ ବଡ଼ ଝିଅ ଲାବଣ୍ୟମୟୀ ବିଭା ହେଲେ। ସାନଟିପାଇଁ ପାଞ୍ଚବର୍ଷକାଳ ଧାବଡ଼ନ୍ତି ଖୋଜାଖୋଜି କରି ପାଖ ଗାଁ ବିଶ୍ୱନାଥପୁର ଶାସନର ପଣ୍ଡିତ ପଞ୍ଚାନନ ତର୍କାଲଙ୍କାରଙ୍କ ଦ୍ୱିତୀୟ ପୁତ୍ର ଦିଗମ୍ବର ବାହିନୀପତିଙ୍କୁ ବାପା ସ୍ଥିର କଲେ। ଆଡ଼ମ୍ବରରେ ବିଭା ବଢ଼ିଲା। ତର୍କାଲଙ୍କାରଙ୍କର ସମ୍ପତ୍ତିବାଡ଼ିର ଅବସ୍ଥା ତେତେ ଭଲ ନ ଥିବାରୁ ଯୁବକ ଦିଗମ୍ବର ଧୀରେ ଧୀରେ ଶ୍ୱଶୁର ଘରେ ହିଁ ଅଟକି ଗଲେ। ଶେଷ ବେଳକୁ ବିଶ୍ୱନାଥବାବୁ ମହାଜନୀ କାରବାରର ସମସ୍ତ ଟଙ୍କା ଆଦାୟ କରି ବଡ଼ଝିଅ ନିକଟକୁ ପଠାଇ ଦେଲେ ଏବଂ ସ୍ଥାବର ସମ୍ପତ୍ତି ଜମିବାଡ଼ି ଓ ବାଗ ବଗିଚା ସାନ ଝିଅନାମରେ ଦତ୍ତପତ୍ର କରିଦେଲେ। ଏହିଭଳି ଭାବେ ସାନ ଝିଅ ଓ ଜୋଇଁଙ୍କୁ ନିଜ ଘରେ ପ୍ରତିଷ୍ଠିତ କରିବାର ମାତ୍ର ପାଞ୍ଚୋଟି ବର୍ଷ ପରେ ସଂସାରରୁ ସେ ବିଦାୟ ନେଲେ। ପରେ ବିଧବା ସ୍ତ୍ରୀ ମାଧବୀଦେବୀ ମଧ ସ୍ୱାମୀ ଚିନ୍ତାରେ ହିଁ ସଂସାର ଛାଡ଼ିଲେ। ଶ୍ୱଶୁର ଓ ଶାଶୁ ଉଭୟଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ସୁଭଦ୍ରାଦେଈପୁରକୁ ଆସିଥିଲେ ବଡ଼ଝିଅ ଓ ବଡ଼ଜୋଇଁ।

ବଡ଼ ଭଉଣୋଇଙ୍କ ହାତ ଧରି କାନ୍ଦକାଟି ସୁବର୍ଣ୍ଣମୟୀ କହିଲେ—ତୁମେ ହିଁ ଭରସା ମୋର ଭାଇନା—ମୁଁ ପିଲାକୁ ଇଏ ବି ପିଲା। ଆଜଯାକେ ପୋଲଫାଙ୍କିଆ ହୋଇ ବୁଲୁଥିଲେ—ସମ୍ପତ୍ତିବାଡ଼ିର ଜଞ୍ଜାଳ ସେ କଅଣ ବୁଝନ୍ତି ?

ଲାବଣ୍ୟ ଦେବୀ ଜମିଦାର ଘରର ବୋହୂ। ସୁବର୍ଣ୍ଣ ପିତୃଦତ୍ତ ସମ୍ପତ୍ତିର ଅଧିକାରିଣୀ। ଦିଗମ୍ବର କିନ୍ତୁ ଗୋଟିଏ ମଧ୍ୟବିତ୍ତ ଘରୁ ଏ ଘରକୁ ଏକପ୍ରକାର ଗୃହଜାମାତା ଭଳି ଆସି ଯାଇଛନ୍ତି ! ନକୁଳବାବୁ

ଜମିଦାର, ଓକିଲ ଏବଂ ସମ୍ପ୍ରସାଦେବ ଉପାଧି-ଭୂଷିତ । ଦିଗମ୍ବର ଆଇ, ଏ, ପର୍ଯ୍ୟନ୍ତ ପଢ଼ିଛନ୍ତି ମାତ୍ର । ଏଣେ ପୁଣି ସ୍ତ୍ରୀ ସୁବର୍ଣ୍ଣମୟୀ ସମ୍ପତ୍ତିବାଡ଼ି ତତ୍ତ୍ୱାବଧାନର ଅଧିକାର ଏକ ପ୍ରକାର ସମର୍ପି ଦେଲେ ଯୋଗ୍ୟ ଭିଣୋଇଙ୍କ ଉପରେ । ଏଭଳି ପରିବେଶ ମଧ୍ୟରେ ଦିଗମ୍ବର ବାହ୍ମନପତି ଧୀରେ ଧୀରେ ନିଜକୁ ବେଖାପ ବୋଲି ଅନୁଭବ କରିବାକୁ ଲାଗିଲେ । ପୂର୍ବ ସମ୍ପର୍କ ଅନୁସାରେ ବାପାଙ୍କ ଅମଳର ଗୁମାସ୍ତା କଥା କଥାକେ ସୁବର୍ଣ୍ଣମୟୀଙ୍କ ନିକଟକୁ ଆସି ପରାମର୍ଶ ମାଗନ୍ତି । ଆଗଭଳି ସୁବର୍ଣ୍ଣ ତାଙ୍କୁ ଉପଦେଶ ଓ ଆଦେଶ ଦିଅନ୍ତି । ସାମାନ୍ୟ କେଇବର୍ଷ ହେଲା ବାହ୍ମନପତି ଏ ଘରକୁ ଆସିଛନ୍ତି ସିନା, ସମ୍ପତ୍ତି ବାଡ଼ି ଏବଂ ଘରଦ୍ୱାର ସହିତ ତାଙ୍କର କୌଣସି ଆଧିପତ୍ୟ ନଥିଲା କି ନାହିଁ । ସୁବର୍ଣ୍ଣଙ୍କୁ ବିଭା ହୋଇଥିବାରୁ ସେ ଜାମାତା । ନିର୍ଲିପ୍ତ ଭାବେ ସେ ଚଳି ଆସୁଛନ୍ତି ମାତ୍ର । ସେ ଭିତରେ ଭିତରେ ଭାବୁଛନ୍ତି ହୁଏତ ଏ ଘରର ସମସ୍ତେ ତାଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରି ଚାଲିଛନ୍ତି । ଶ୍ୱଶୁର ନିଜେ ମଧ୍ୟ ସମ୍ପତ୍ତିବାଡ଼ି ଉତ୍ତରପତ୍ର କଲାବେଳେ ଜୋଇଁଙ୍କି ଗୁଡ଼ି କେବଳ ଝିଅଟି ନାମରେ ଦଲିଲ ସମ୍ପାଦନ କରିଦେବାର ଉଦ୍ଦେଶ୍ୟଟି କଅଣ ? ହୁଏତ ସେ ନିଜେ ନିଜ ଅନ୍ତରର ଲୁକ୍କାୟିତ ବିଭେଦତାକୁ ତଦ୍ୱାରା ପରିସ୍କାର କରିଦେଇ ଯାଇଛନ୍ତି । ବିଶ୍ୱନାଥ ବାବୁଙ୍କ ପରେ ବିଧବା ମାଧବୀ ଦେବ୍ୟା ନିର୍ଲିପ୍ତଭାବେ ସମ୍ପତ୍ତି ପରିଚାଳନା କରୁଥିଲେ । ତାଙ୍କ ଅନ୍ତେ ସୁବର୍ଣ୍ଣଦେବୀ ଚତୁର୍ଦ୍ଦିଗ ଅନ୍ଧକାର ଦେଖିଲେ । ଜୀବଦ୍ଦଶାରେ ଥିଲାବେଳେ ମାଧବୀ ଦିନେହେଲେ ସାନଜୋଇଁ ବାହ୍ମାପତିଙ୍କୁ କୌଣସି କଥା ବୁଝାବୁଝି କରିବାକୁ ନିର୍ଭର ଦେଇ ନଥିଲେ । ତେଣୁ ବାହ୍ମାପତି ଗୁଏଁ ଗୁଏଁ ଦୂରେଇ ଦୂରେଇ ରହିବାକୁ ଭଲ ପାଇଲେ । ବୋଉଙ୍କ ଶୁଦ୍ଧି କ୍ରିୟା ବେଳକୁ ନିଜେ ସୁବର୍ଣ୍ଣଦେବୀ ନକୁଳବାବୁଙ୍କ ଉପରେ ନିର୍ଭର ଦେଇଦେଲେ । ବାହ୍ମାପତି ସେଇ କଥାରେ ନିତାନ୍ତ ମର୍ମାହତ ହୋଇ ଭାବିଲେ—ମୁଁ ତେବେ ଏଠି କେହିନୁହେଁ !

ବିଦାୟ ନେଲାବେଳକୁ ଘରର କର୍ମଚାରୀ କେଇଜଣ ନକୁଳ ବାବୁଙ୍କ ମୁଣ୍ଡିଆ ମାରିବାକୁ ଆସିଲାବେଳେ ସୁବର୍ଣ୍ଣ କାନ୍ଦକାନ୍ଦ କହିଲେ— ଭାଇନା, ତୁମେ ଜମିଦାର ଲୋକ ଏବଂ ଆଇନଜୀବୀ ଓକିଲ । ଏମାନେ

ତୁମର ପାଖକୁ ସମ୍ପତ୍ତିବାଡ଼ର ଆୟ ବ୍ୟୟ ଓ ଭଲମନ୍ଦର ହିସାବ ପଠାଇ ଦେବେ । ମୁଁ ତ ପିଲା ଲୋକ ଏବଂ ବାହ୍ମଣୀପଣ୍ଡାବାବୁ ତ ନିର୍ଲିପ୍ତ ଲୋକ ।

ବାହ୍ମଣୀପଣ୍ଡା ମଧ୍ୟ ସେଇଠି ଉପସ୍ଥିତ ଥିଲେ—ବିଦାୟ ନେବା-ଲାଗି । ସେ କିନ୍ତୁ ସୁବର୍ଣ୍ଣ କଥାଟାକୁ ଅନ୍ୟ ଅର୍ଥରେ ନେଇ ମନେ ମନେ କହିଲେ—ବଡ଼ଲୋକ ବଡ଼ଲୋକ, ଗରିବ ଗରିବ । ସୁବର୍ଣ୍ଣ କଥା ଶେଷ କରିବା ଆଗରୁ ନକୁଳବାବୁ ତ ପଦେ କହି ନାହାନ୍ତି—ଦିଗମ୍ବର, ତୁମେ ନିଜେ ତୁମ ସମ୍ପତ୍ତିବାଡ଼ି ବୁଝାବୁଝି କରୁନା ? ମୁଁ ହୁଏ ତ ଦରକାର ବେଳେ ପରାମର୍ଶ ଦେବି । ଏଇଠି ରହିଲା ତଫାତ୍ । ସେମାନେ ବଡ଼ଲୋକ, ଆଉ ମୁଁ ଗରିବ । ସେମାନେ ତେଲ ଆଉ ମୁଁ ପାଣି ।

ନିରୋଳାରେ ବସି ବସି ବାହ୍ମଣୀପଣ୍ଡା ଭାବିଲେ—ମୁଁ ତେବେ ଏ ଘରେ କେହି ନୁହେଁ ? ସୁବର୍ଣ୍ଣର ସ୍ୱାମୀ ଭାବରେ ଏ ଘରର ଜଣେ ଆଶ୍ରିତ ଓ ପୋଷ୍ୟ ଜୀବ ମାତ୍ର ! ଯେତେ ସୁଖ ମିଳୁ ପଛକେ ଏ ଘରେ ତ ମୋତେ ଶାନ୍ତି ସନ୍ତୋଷ ମିଳିବ ନାହିଁ ! ଏଠି ତେବେ ମୋର ଯଥାର୍ଥ ପରିଚୟଟା କଅଣ ? ସବୁ ମୁଁ, କିନ୍ତୁ କେହି ନୁହେଁ । ସର୍ବାଧିକାରିଣୀର ସ୍ୱାମୀ ହୋଇ ସୁଦ୍ଧା କ୍ଷମତା ଓ କର୍ତ୍ତୃତ୍ୱ-ବିହୀନ ଭିକାରୀ ସଦୃଶ । ନିଜତ୍ୱ ତାହାହେଲେ କିଛି ମାତ୍ର ନାହିଁ ମୋର !

ଘରଆଡ଼ ଖାଁ ଖାଁ ଲାଗିଲା । ଭାବିଲା ସତେକି ଶୂନ୍ୟରେ ସେ ଭାସୁଛି । ମହାଶୂନ୍ୟରେ ସେ ଦୋହଲୁଛି । ଏ ଘରର ଜୋଇଁ, କିନ୍ତୁ କେହି ନୁହେଁ ।

ସକାଳେ ଲାବଣ୍ୟମୟୀ ଏବଂ ନକୁଳବାବୁ ଯିବାପାଇଁ ବାହାରିଲେଣି । ଗାଡ଼ି ଭିତରକୁ ଉଠି ବସିଚନ୍ତି । ସୁବର୍ଣ୍ଣ ଆସି କଡ଼କୁ ଛିଡ଼ା ହେଲା । କହିଲା—ଭାଇନା, ମୁଁ ବି ତୁମ ଘରକୁ ଯିବି ବୋଲି ଭାବୁଚି ।

ଦୂରକୁ ଛିଡ଼ାହୋଇ ଦିଗମ୍ବର ନମସ୍କାର କଲା ! ନକୁଳବାବୁ ପାଖକୁ ତାକୁ ଡାକିଲେ ନାହିଁ । ଦୂରେଇ ରହି ଆଶୀର୍ବାଦ କରି ବିଦାୟ

ନେଲେ । ସତ୍ୟ ହେଲେ ବ ବଡ଼ ଲୋକ ସେ—ଜମିଦାର ସେ, ଆଡ଼-ଭୋକେଟ ସେ, ରାୟବାହାଦୁର ମଧ୍ୟ ସେ । ସମାଜର କେତେ ଉଚ୍ଚତାରେ ସେ ଅଧିଷ୍ଠିତ । ଆଇ: ଏ: ପାସ ସାନ ସତୀଟିକୁ ସେ ବା କାହିଁକି ଶ୍ରେଷ୍ଠ କରି ନ ଦେଖିବେ ? କଅଣ ଅଛି ତାର—ପ୍ରତିଷ୍ଠା ନା ସମ୍ପତ୍ତି-ବାଡ଼ି, ନା ଅଛି ତାର ଉଚ୍ଚ ଯୋଗ୍ୟତା ?

ଗାଡ଼ି ଛାଡ଼ିଦେଲା, ଏବଂ ଘୋଡ଼ାଙ୍କ ଟାପୁ ଶବ୍ଦ ଧୀରେ ଧୀରେ ଅନ୍ତର୍ହିତ ହୋଇଗଲା । ଧୀରେ ଧୀରେ ଗାଡ଼ିଟା ଅଦୃଶ୍ୟ ହୋଇଗଲା । ଧୀରେ ଧୀରେ କନକଦୁର୍ଗାଙ୍କ ବେଢ଼ା ଭିତରକୁ ଚାଲିଗଲେ ଦିଗମ୍ବର । ଦାଣ୍ଡ ଦୁଆର କବାଟକୁ ଆଉଜି ଛିଡ଼ାହୋଇ ଏକ ଲୟରେ ଚାହିଁ ରହିଲେ ସୁବର୍ଣ୍ଣ ଦେବୀ । ଦୁଇ ଆଖିରୁ ଦୁଇଟି ଧାର ଲୁହ ଗଣ୍ଡଦେଶ ଓଦା କରି ଉନ୍ନତ ବକ୍ଷ ଉପରକୁ ଗଡ଼ି ପଡ଼ିଲା । ସୁଦୀର୍ଘ ନିଶ୍ୱାସ ଟାଣି ଅନ୍ୟମନା ଭାବେ ଶୋଇବା ଘର ଭିତରକୁ ପଶି ଖଟର ବିଛଣା ଉପରେ ଏକ ପ୍ରକାର ସେ କଚାଡ଼ି ହୋଇ ପଡ଼ିଲେ । ବଡ଼ ତକିଆଟିକୁ କୋଳ ଭିତରକୁ ଭିଡ଼ିଆଣି ତାହାର ଉପରେ ମୁହଁ ଗୁଞ୍ଜି ସେ କାନ୍ଦିବାକୁ ଲାଗିଲେ । ହୁଏ ତ ସେ ବାପ ମାଆଙ୍କ ପାଇଁ ଏଭଳି ଭାବେ ଅଜ୍ଞାନ ହୋଇ କାନ୍ଦୁ ନାହାନ୍ତି । କାନ୍ଦୁ ନାହାନ୍ତି ବଡ ଭଉଣୀ ବିଦାୟ ନେଇ ଯିବାରୁ । ହୁଏ ତ ସେ ଏଇ ଶଯ୍ୟା ଉପରର କୌଣସି ଗୋଟାଏ ସୁମଧୁର ସ୍ମୃତିର ମର୍ମଦାହୀ ରୋମନ୍ଥନରେ ଦଗ୍ଧୀଭୂତ ହୋଇ ଭିଣୋଇଙ୍କ ବିଦାୟ ବ୍ୟଥାରେ ହିଁ କାନ୍ଦୁଚନ୍ତି । ଯେଉଁ ଘଟନାକୁ ସୁବର୍ଣ୍ଣ ଏ ଜୀବନ ଥିବାଯାକେ କେବେହେଲେ ଭୁଲି ଯାଇ ପାରିବେ ନାହିଁ । ମନ ନିକିତିରେ ଗୋଟାଏ ପଲା ଉପରେ ସ୍ୱାମୀ ଦିଗମ୍ବରଙ୍କୁ ଥୋଇ, ଆର ପଲା ଉପରେ ଥୋଇଚନ୍ତି ଜମିଦାର, ଆଡ଼ଭୋକେଟ, ସୁଖ୍ୟାତ ସାହିତ୍ୟିକ ରାୟସାହେବ ନକୁଳବାବୁଙ୍କୁ ।

ତେଜସ୍ୱୀର କରେ କର ଛନ୍ଦିବାକୁ
ପ୍ରୟାସୀ ସଦା ସୁନ୍ଦରୀ
ନୋହିଲେ କି ଫୁଲ- ରାଣୀ କମଳିନୀ
ରବିଙ୍କି ଆଆନ୍ତା ବରି ?

'କୁ' ବୋଲ କ 'ସୁ' ବୋଲ, କେଉଁ ଦିନ ଏବଂ କେଉଁ ମୁହୂର୍ତ୍ତରେ ସ୍ୱପ୍ନଦାହେବଙ୍କ କୁନ୍ତମୁନ ବାଜଯାଇ ସୁବର୍ଣ୍ଣମୟୀର ସୁକୋମଳ ବକ୍ଷକୁ ସ୍ପର୍ଶ କରି ଦେଇଛନ୍ତି—ଅନ୍ତରାତ୍ମା ଝୁରି ହେଉଛି ତାହାର ସ୍ମୃତିକୁ ଅହରହ । ସେ ଘଟଣାର ନୀରବ ଓ ମୂକସାକ୍ଷୀ ରୂପେ ବିଦ୍ୟମାନ ରହିଚି—ଏଇ ସୁକୋମଳ ଶଯ୍ୟା ଏବଂ ଏଇ ନିଭୃତ ଶୟନ କକ୍ଷଟି । ସେ ସମୟର ନିଜ ଅନୁରୋଧଟି ନିଜ ଭିତରେ ବାରମ୍ବାର ଧ୍ୱନିତ ହୋଇ ଉଠୁଛି—ଭାଇନା, ମୁଁ ବି ଚାଲିଯିବି ତୁମର ପାଖକୁ । ଏଠି ମୋତେ ଭଲ ଲାଗୁନାହିଁ । ତୁମ ସାନ ସତ୍ତ୍ୱ—ନା ଅଛି ବିଦ୍ୟା, ନା ଅଛି ସାମାଜିକ ଗୌରବ । ବାପା ବିଭା ଦେଇଛନ୍ତି ସତ, ଅଛି କଅଣ ତାଙ୍କର ? ଏଠି ମୁଁ ଏକୁଟିଆ ଚଳିପାରିବି ନାହିଁ ।

ଦିଗମ୍ବର ତା ଦୃଷ୍ଟିରେ 'ଦିଗମ୍ବର' ଗୋଟିଏ ଦରିଦ୍ର ସନ୍ୟାସୀ ମାତ୍ର । କାହା ମନ କାହାକୁ ଛାଡ଼େ, କାହାକୁ ଚାହେଁ ସେ କଥା ଜାଣେ ଏକା ତା'ଆର ମନ ।

କିନ୍ତୁ ନାମ୍ନୀ ? ଲାବଣ୍ୟ ନାମ୍ନୀ ?

ସୁବର୍ଣ୍ଣ ଆଗରେ ଏଇ କଥାଟି ହେଲା ମସ୍ତବଡ଼ ସମସ୍ୟାର ପ୍ରଶ୍ନବାଚୀ ଚିହ୍ନ ।



ମେନା, ହେ ମେନା !

ଆଜ୍ଞା—ଯାଉଚି ।

ମେନା ଡେଣେ କୁଆଡ଼େ ଥିଲା । ପାଖକୁ ଆସି ଠିଆହେଲା । ସୁବର୍ଣ୍ଣ ପଚାରିଲେ—ବାବୁ କାହାନ୍ତି ?

—କହିପାରିବି ନାହିଁ । ସକାଳୁ ତ କୁଆଡ଼େ ଯାଇଚନ୍ତି ।

—କାଲି ତ ଫେରିଲେ ଏତେ ରାତିରେ ? ବାହାରେ ଏତେ କଅଣ ସବୁ କାମ ଅଛି କି ?

ମୁଁ କିମିତି କହିବି ଆଜ୍ଞା ?

—ତୁ କହିବୁ ନାହିଁ ତ କହିବ କିଏ ? କେଇଦିନ ହେଲା ସବୁବେଳେ ତ ତାଙ୍କ ମୁହଁରେ—ମେନା, ମେନା, ମେନା !

କାନ୍ଥକୁ ଆଉଜି ପଣତ କାନକୁ ଦାନ୍ତରେ କାମୁଡ଼ିଧରି ଠିଆ ହୋଇ ରହିଚି ମେନା । ମୃଦୁ ମୃଦୁ ହସୁଚି । ବୟସ କୋଡ଼ିଏ କି ପଚିଶ ହେବ । ରଙ୍ଗ ସଫା । ଗୋଲ ଗାଲ ଚେହେରା । ନକୁଳବାବୁ ବିଦାୟ ନେଇଯିବା ପରଠାରୁ ଦିଗମ୍ବରବାବୁ ଏକ ପ୍ରକାର ବାହାରେ ବାହାରେ ସମୟ କଟାଉଚନ୍ତି । ସେ ଶମ୍ଭୁଚନ୍ଦ୍ର ଏତେବଡ଼ ଘରେ ସତେକି ସେ ଜଣେ ନିତାନ୍ତ ଅଦରକାରୀ ଜୀବ । ସମ୍ପତ୍ତିବାଡ଼ି କଥା ବୁଝିବେ ଗୁମାସ୍ତା ଓ ନକୁଳବାବୁ; ମାଲିକ ହେଲେ ସୁବର୍ଣ୍ଣଦେବୀ । ଗୁଞ୍ଜା ହେଲା ଛୁଅଁଟାଏ ପରି ତାଙ୍କର ସ୍ଥିତି ନିତାନ୍ତ ଅସଂଲଗ୍ନ । ବେଶୀ ଉପରର

ହିବାହଗ୍ରନ୍ଥି ଧୀରେ ଧୀରେ ଶିଥିଳ ହୋଇଆସୁଛି । କେବଳ ଖାଇ-ପିଇ, ଶୋଇ ବସି ସମୟ ଓ ଜୀବନଟାକୁ କଟାଇ ହୁଏନାହିଁ । ସୁବର୍ଣ୍ଣ ପାଖକୁ ଗଲେ ସତେ କି ସେ କଲଗାଉଣୀର କଥାବାର୍ତ୍ତା ଆବୃତ୍ତି କରୁଛି । ପ୍ରାଣହୀନ ଆବୃତ୍ତି ମାତ୍ର । ସବୁବେଳେ ସେ ଅନ୍ୟମନସ୍କା —କେବଳ କଅଣ ଗୁଡ଼ାଏ ଭାବ ହେଉଚି । ପଚାରିଲେ ଖାପଛଡ଼ା ଉତ୍ତର । ପାଖକୁ ଗଲେ ଦୂରେଇ ଯାଉଚି । ନିହାତି ଏକୁଟିଆ ଏବଂ ନିଃସହାୟ ଦିଗମ୍ବର ନିଜେ ନିଜେ କଅଣ ଭାବୁଚି ନିଜେ ବି ବୁଝି ପାରୁନାହିଁ । ଦରକାର ପଡ଼ିଲେ ମେନା ଗୃହକର୍ତ୍ତ୍ରୀଙ୍କ ଡାକୁଚି । ବୟସରେ ସୁବର୍ଣ୍ଣ ଏବଂ ଦେଖିବାକୁ ସୁନ୍ଦରୀ । ଅସହାୟ ଦିଗମ୍ବର ଭାବୁଚି ସେଇ ଏକା ତାର ଏକମାତ୍ର ସହାୟ ।

ମେନା ଆଡ଼କୁ କିଛିକ୍ଷଣ ରହସ୍ୟଭେଦୀ ନୀରବ ଦୃଷ୍ଟି ନିକ୍ଷେପ କରି ମୃଦୁ ହସି ସୁବର୍ଣ୍ଣ ପଚାରିଲେ—ତୁ କହିବୁ ନାହିଁ ତ କହିବ କିଏ ?

ସୁବର୍ଣ୍ଣର ମନଭିତରେ ସନ୍ଦେହ ଘନୀଭୂତ ହୋଇଉଠୁଚି । ଦିଗମ୍ବର ପ୍ରତି ନିଜ ମନ ଭିତରେ ଛାଡ଼ ଛାଡ଼ ଭାବ ଏବଂ ମେନକାର ଆକର୍ଷଣ । ଧୀରେ ଧୀରେ ଚିନ୍ତାଧାରା କୁହୁଡ଼ିଆ ହୋଇ ଯାଉଚି । ବୟସରେ ମେନକା ବଡ଼ ଏବଂ ସୁବର୍ଣ୍ଣ ସାନ । ପିଲାବେଳେ ତାଆରି ସାଙ୍ଗରେ ହସିଚି, କାନ୍ଦିଚି, ଖେଳିଚି, ବୁଲିଚି ସୁବର୍ଣ୍ଣ । ଆଗେ ସେ ସୁବର୍ଣ୍ଣକୁ ଝିକି—ନାନୀ ବୋଲି ଡାକୁଥିଲା । ଏବେ ଡାକୁଚି—ସାଆନ୍ତାଣୀ—ଆଜ୍ଞା । ସୁବର୍ଣ୍ଣର ଭଲ ମନ୍ଦ, ପାପ ପୁଣ୍ୟ ସବୁର ହିସାବ ଜାଣେ ମେନା । ତାଆରି ବି ସବୁ କଥା ଜାଣେ ସୁବର୍ଣ୍ଣ ।

ଏଇ କେଇଦିନ ହେଲା ବାହାରେ ବାହାରେ ସମୟ କଟାଉଚି ଦିଗମ୍ବର । ପଶାଖେଳ ଠାରୁ ଆରମ୍ଭ କରି ସଙ୍ଗୀତ ଆଖଡ଼ା ଓ ଭାଙ୍ଗ ଆଡ୍‌ଡ଼ାଯାକେ ତାର ଗତି । ସଙ୍ଗୀତ ଚର୍ଚ୍ଚା ଅଛି ଏବଂ କୁତ୍ସିତ ବ୍ୟବସାୟ ବି ଅଛି । ମଗାଇ ପଠାଇଲେ ବିନା ଆପତ୍ତିରେ ପଇସା କଉଡ଼ି ପଠାଇ ଦେଉଚି ସୁବର୍ଣ୍ଣ । ସେ ଚାହେଁ କୌଣସି ଉପାୟରେ ଦିଗମ୍ବରକୁ ଦୂରେଇ ରଖିବାକୁ । ମେନା ପ୍ରତି ଦିଗମ୍ବର ଆସକ୍ତ ବୋଲି

ଜାଣି ସୁଦ୍ଧା ସେ କିଛି କହେ ନାହିଁ । ଦିନେ ରାତି ବାରଟା ପରେ ଦିଗମ୍ବର ଦାଣ୍ଡ କବାଟରେ ଶବ୍ଦ କରିବାର ଶୁଣି ମେନା ଦ୍ୱାର ଖୋଲି ଦେଲା । କହିଲା—ପୁଝାରିକି ଡାକିବି ? ଖାଇବାକୁ ଦେବି ?

ବାହାର ଘରେ ପଡ଼ିଥିବା ଖଟ ବିଛଣା ଉପରେ ଶୋଇ ପଡ଼ୁ ପଡ଼ୁ ଦିଗମ୍ବର କହିଲେ—ନା ଖାଇବି ନାହିଁ । ଖାଇ ଆସିଛି । ନିଦ ମାଡ଼ୁଛି ।

ନିକଟକୁ ଆସି ମେନା କହିଲା—ଶୋଇବେତ, ଭିତରକୁ ଯାଆନ୍ତୁ । ସାଆନ୍ତାଣୀ ଅପେକ୍ଷା କରିଥିବେ ଯେ !

—କହିଦେ ଶୋଇ ପଡ଼ନ୍ତୁ । ମତେ ଭାରି ନିଦ ମାଡ଼ୁଛି । ଏଇଠି ଶୋଇବି ।

—ବେଶୀ ଗୁଡ଼ାଏ ଭାଙ୍ଗ ଖାଇଦେଇଚନ୍ତି ପରା ?' ଖଟା ଆଣିବି କି ?—ଖାଇବେ ?

—ନା, ନା, କିଛି ଦରକାର ନାହିଁ । ଆଲୁଅଟା ନିଭେଇଦେ । କବାଟ ଆଉଜେଇ ଦେ ।

ଧୀର ପଦରେ ବାହାରକୁ ଆସି ଚାରି ଆଡ଼କୁ ନଜର କଲା ମେନା । ଧୀରେ ଧୀରେ ଅନ୍ଧକାର ଭିତରେ ଚାଲି ଚାଲି ଯାଇ ସୁବର୍ଣ୍ଣ ଦେବୀଙ୍କ ଶୋଇବା ଘର କବାଟରେ ହାତମାରି ଦେଖିଲା—ଭିତରଆଡ଼ୁ ବନ୍ଦ ଅଛି । ଭିତରୁ ଶୁଭୁଛି ସୁବର୍ଣ୍ଣଙ୍କ ଘୁଙ୍ଗୁଡ଼ି । ନିଶ୍ଚିନ୍ତ ହୋଇ ମେଲଘର ଆଡ଼କୁ ଲେଉଟି ଗଲା । କବାଟଟାକୁ ଭିତରପଟୁ ଆଉଜାଇ ଦେଇ ଦିଗମ୍ବର ଶୋଇଥିବା ଖଟ କଡ଼କୁ ଯାଇ ଠିଆହେଲା । ଅନୁଚ୍ଚ-ସ୍ୱରରେ ପଚାରିଲା—ଗୋଡ଼ ମୋଡ଼ି ଦେବି କି ଆଜ୍ଞା ?

ଅନ୍ଧକାର ଭିତରେ ଦିଗମ୍ବରର ଗୋଟିଏ ହାତ ଆସି ମେନାର ହାତଧରି ଟାଣିନେଲା । ଅନ୍ଧକାର ଶେଯ ଉପରେ ସୁଦକ୍ଷ ମେନକା ବାବୁଙ୍କୁ ଲାଗି ଶୋଇ ପଡ଼ିଲା ।

ବଡ଼ଘରେ ଏସବୁ କଥାଗୁଡ଼ାକ ନହାତ ମାମୁଲି ବ୍ୟାପାର ଥିଲା ।

ଆଠ ଦଶ ବର୍ଷ ତଳେ ପ୍ରଥମ ହୋଇ ମେନକା ଏ ଘରକୁ ଆସିଲା—ଜଣେ ଗୁମାସ୍ତା ସାଙ୍ଗରେ । ସେ ଗୁମାସ୍ତା ରାଜଗୁରୁଙ୍କ ଘରେ ଚାକିରି କରନ୍ତି । କୁଶଭଦ୍ରା କୂଳରେ ନନ୍ଦନପୁର ଗ୍ରାମରେ ମେନକାର ଜନ୍ମ । ମାଆ ନେତ୍ରମଣି, ବାପା କିଏ ଜଣାନାହିଁ । ନନ୍ଦନପୁର ଗ୍ରାମର ସାଆନ୍ତ ଘରେ ସେ ଜନ୍ମ ହୋଇ ବଢ଼ିଥିଲା । ସେ ସାଆନ୍ତ ଥିଲେ ରାଜବଂଶୀୟ ଜମିଦାର । ମେନକାର ଆଉ ଦୁଇଟି ଭଉଣୀ । ସେ ତିନି ଭଉଣୀ ଓ ତାଙ୍କ ମାଆ ନେତ୍ରମଣି, ସାଥିରେ ସାନ ବଡ଼, ବୁଢ଼ୀ ଭୁଆସୁଣୀ ହୋଇ ଆଉର ଅଠରଟି ଦାସୀ ଏ ଘରେ ଥାଆନ୍ତି । ସାଆନ୍ତଘର ପିଲାଏ ବାଇଶିଟି ଦାସୀ ରଖିଥିବା କଥା କହି ଗର୍ବ ଓ ଗୌରବ ଅନୁଭବ କରନ୍ତି ଏବଂ ନିଜ ବଂଶର ସୌଖିନ ପଣିଆ ଓ ଆଭିଜାତ୍ୟର ଗୌରବଗାଥା ବର୍ଣ୍ଣନା କରନ୍ତି । ହୁଏତ କୌଣସି ଏକ ସମୟରେ ଗୋଟିଏ ଅନାଥା ଝିଅ ଏ ଘରକୁ ଆସିଥିଲା ଏବଂ ଚାକରାଣୀ କାମ ଆରମ୍ଭ କଲା । ଏଇ ଘରର ସାଆନ୍ତ ପିଲାମାନେ ଉପଭୋଗ କଲାରୁ କାଳକ୍ରମେ ସେଇ ଝିଅଟିର ପିଲା, ତା ପିଲା, ତା ପିଲା ହୋଇ ଏଇ ଘରେ ଗୋଟିଏ ଦାସୀ ବଂଶ ବୃଦ୍ଧି ପାଇ ଏକରୁ ବାଇଶି ସଂଖ୍ୟାରେ ପରିଣତ ହେଲା । ପୁଅପିଲା ଗୁଡ଼ିକୁ କିଏ କୁଆଡ଼େ ନେଇଗଲେ କି ମରିହଜିଗଲେ । ଝିଅପିଲାଗୁଡ଼ିକ ଏଇଘରେ ଝିଅରୂପେ ଜନ୍ମହୋଇ ଏଇ ଘରେ ଝିଅଜନ୍ମ କରି ଯାଇଚନ୍ତି । ସାଆନ୍ତ ଘର ପିଲାଙ୍କର ଅଭଦ୍ର ଉଚ୍ଛୃଙ୍ଖଳତାର ସେଗୁଡ଼ିକ ହେଲେ ଆଭିଜାତ୍ୟ ଓ ଗୌରବର ନିଦର୍ଶନ । ଏ ଘର ପିଲାଏ କହନ୍ତି—

ଦାଣ୍ଡ ଦାସୀ ଘୋଡ଼ା
ତିନି ପୁରୁଷ ଚଢ଼ା ।
ସାଆନ୍ତମାନଙ୍କ ବଡ଼ ଘରେ—ବଡ଼ ବଡ଼ କଥା ।
ବଡ଼ଲୋକଙ୍କର ସବୁ ସୁନ୍ଦର
ବଡ଼ଲୋକଙ୍କୁ ଉତ୍ତର ନାହିଁ
ସ୍ୱର୍ଗକୁ ନିଶୁଣୀ ନାହିଁ ।

ବୁଢ଼ାବୁଢ଼ୀଏ କହନ୍ତି—କୌଣସି ଘରକୁ ସାଧୁତା ଓ ଧର୍ମ-ପରାୟଣତା ଆସିଗଲେ ଧର୍ମର ଅବତାର ବିଷ୍ଣୁ ନିଜେ ଆସିଯାଆନ୍ତି । ବିଷ୍ଣୁ ଆସିଗଲେ ଗୁଏଁ ଗୁଏଁ ଆସି ଯାଆନ୍ତି ଲକ୍ଷ୍ମୀଦେବୀ । ବଢ଼ିଯାଏ ଧନଜନ । ବାପ ମା ଆସିଯିବାରୁ ଆସିଯାଆନ୍ତି ପୁଅବୋହୂ—କନ୍ଦର୍ପ ଓ ରତି ଦେବୀ । ତାଙ୍କ ସଙ୍ଗରେ ଆସିଥାଏ ଫୁଲଧନୁ ଓ ଫୁଲଶର । ତାଙ୍କ ପ୍ରଭାବରୁ ଚାଲେ ବ୍ୟଭିଚାର ଖେଳାଖେଳି । ପୁଅ ବୋହୂଙ୍କ ପ୍ରଭାବ ବିସ୍ତାର ସଙ୍ଗେ ସଙ୍ଗେ ଲଜ୍ଜାରେ ବାପ ମାଆ ଅର୍ଥାତ୍ ବିଷ୍ଣୁ ଓ ଲକ୍ଷ୍ମୀ ପଳାନ୍ତି । ଧର୍ମ କର୍ମ ଉଡ଼ିଭାଇ ଯାଏ । ଆସିଯାଏ ଦାରିଦ୍ର୍ୟ ଓ ଅଭାବ ।

ଧୀରେ ଧୀରେ ସାଆନ୍ତଙ୍କ ଘରୁ ବ୍ୟଭିଚାର ଉପରେ ସବୁ ଚାଲିଗଲା । ସମ୍ପତ୍ତିବାଡ଼ି ଉଡ଼ିଗଲା । ମହାଜନମାନେ ଜମିବାଡ଼ି ନିଲାମ କରି ନେଲେ । ଯେଉଁ ପିଲାଏ ବାଇଶି ଦାସୀ ରଖିବାକୁ ଗୌରବ ବୋଧ କରୁଥିଲେ, ସେଇମାନେ ପେଟ ବିକଳରେ ଏଣେ ତେଣେ କଏ କୁଆଡ଼େ ଧାଇଁ ପଳାଇଲେ । ଶେଷଯାକେ ଥିବା ଆଠ ଦଶୋଟି ଦାସୀପିଲା ଭଙ୍ଗା ଉଆସ ଇଟା ପାଚେରି ଡେଇଁ ବାହାରକୁ ଆସି ବୁଲିଲେ । ଉକ୍ତ ଗୁମାସ୍ତା ହାବୁଡ଼େ ପଡ଼ିଗଲା ମେନକା । ଗୁମାସ୍ତାଏ କହିଲେ—ମୁଁ ତୋତେ ଠାଏ ରଖେଇ ଦେବି ଲୋ ମେନକା । ମୁଁ ବି ସେଇଠି ଅଛି । ଖାଇପିଇ ସୁଖରେ ରହିବୁ । ବେଳକାଳ ଦେଖି ତୋର ମୋର ବି କଥାଭାଷା ହେବ ।

ମେନାର କାନ୍ଦୁରା ଆଖିରେ ହସର ଆଭା ଓ ଆଶାର ଆଲୋକ ଝଲକି ଉଠିଲା । ତେତେବେଳକୁ ସେ ନବ-ଯୁବତୀ । ଖାଦ୍ୟ ଅଭାବରେ ଫୁଟି ଆସୁଥିବା ଗୋଲାପ ଫୁଲଟି ଶୁଖି ଝାଉଁଳି ମଉଳି ଆସୁଥିଲା । ଚିରା କାନରେ ପୂର୍ଣ୍ଣଦେହ ଘୋଡ଼ାଇ ହୋଇ ପାରୁ ନଥିଲା । ସୁକୁଟା ମୁହଁରେ ଲାଜ ସଙ୍କୋଚ ଓ ଅସହାୟତା ପ୍ରକଟି ଦିଶୁଥିଲା । ମୁଣ୍ଡହଲାଇ "ହଁ" କଲା ଏବଂ ଗୁମାସ୍ତାଙ୍କ ସଙ୍ଗରେ ଆସି ରାଜଗୁରୁ ଘରେ ଆଶ୍ରୟ ନେଲା । ସୁବର୍ଣ୍ଣ ତେତେ ବେଳକୁ ପିଲାଟିଏ । ତାର ସେ ହେଲା ଖେଳସାଥି । ସେଇଦିନୁ ସେ ସୁବର୍ଣ୍ଣକୁ ଠିକ-ନାଆ ବୋଲି ଡାକେ । ଏବେ ଡାକୁଛି ସାଆନ୍ତାଣୀ ନାନୀ ।

କୁଆ କାଆ କଲା ପୂର୍ବରୁ ଦିଗମ୍ବର ବାବୁଙ୍କ ବିଛଣାରୁ ଉଠି ଚାଲିଗଲା ମେନକା ଏବଂ ଘର ଦ୍ୱାର ଓଳଆ ଓଳରେ ଲାଗିଗଲା । ସୁବର୍ଣ୍ଣ ଉଠି ଦେଖିଲେ—ଝକମକ ମଜା ଥାଳରେ ଥାଳେ ପାଣି ଓ ନୂଆ ଦାନ୍ତକାଠି ଖଣ୍ଡେ ତା ଦୁଆର ମୁହଁରେ ଥୁଆ ହୋଇଛି । ମୁହଁ ଧୋଇ ମୁରୁକ ହସାଦେଇ ମେନା ଆଡକୁ ସେ ଅନାଇ ରହିଲେ । ସବୁ ବୁଝିଛି, ସତେକ କିଛି ସେ ଜାଣି ପାରି ନାହିଁ । ଭିତରେ ଭିତରେ ଦିଗମ୍ବର ଠାରୁ ଗୁଡ଼ାଏ ଛାଡ଼ି ଭାବେ । ବଡ଼ଭଉଣୀ ସ୍ୱାମୀ ଗୌରବ ଯେବେ କାହିଁ ପାଇଁ କେତେ ଉଚ୍ଚରେ ! ଆଉ ଇଏ ? ଦିଗମ୍ବରଙ୍କର ଅଛି କଅଣ ? ଧନ, ସମ୍ପଦ, ମାନ, ମହତ୍ତ୍ୱ, ସମ୍ଭ୍ରାନ୍ତ ପଣିଆ ନା ଉଚ୍ଚଶିକ୍ଷା ? ଦିଗମ୍ବର ସବୁ କଥାରେ ଦିଗମ୍ବର ।

ଘରୁଆ ବାପର ଝିଅ ସେ, ଧନ ସମ୍ପତ୍ତିର ଅଧିକାରିଣୀ । ଦାସୀ ଚାକରରେ ବଢ଼ୁଛି । ସେ ଏକ ପ୍ରକାର ସ୍ୱାଧୀନା । ଯେତେବେଳେ ଯାହା ମନ କରିବ, ତାହା ପାଇ ପାରିବ ।

ଦାନ୍ତ ଘଷି ସାରି ମେନାକୁ ଡାକି କହିଲେ—ମତେ କଅଣ ଖାଇବାକୁ ଦେବାକୁ କହ । ଗାଧୁଆ ପାଧୁଆ ସାରି ତୁ ଟିକେ ଆସିବୁ ।

ମେନା କିନ୍ତୁ ସବୁ କାମ ସାରି ସୁଦ୍ଧା ହେଲା କରୁଛି । ଆସୁ ନାହିଁ । ଶେଷକୁ ବେଳକୁ ସୁବର୍ଣ୍ଣ ଡାକ ଛାଡ଼ିଲେ—ମେନା, ହେ ମେନା !

ଦୂରରୁ ଉତ୍ତର ଶୁଭିଲା—ଯାଉଛି ଆଜ୍ଞା ।

ସୁବର୍ଣ୍ଣ—ବାବୁ କାହାନ୍ତି ?

ମେନା—ସକାଳୁ ତ କୁଆଡ଼େ ଯାଇଛନ୍ତି ।

ସୁବର୍ଣ୍ଣ—କାଲି ରାତିରେ ଫେରିଲେ ଏତେ ବିଳମ୍ବରେ ?

ମେନା ମନକୁ ମନ ଚମକି ପଡ଼ିଲା—ତେବେ କାଲି ରାତିର ସବୁ କଥା ଠିକ ନାମା ଜାଣିଛନ୍ତି !!

କାନ୍ହକୁ ଆଉଜ ମେନା ଠିଆ ହୋଇଗଲା । ସେ ବି ଜାଣେ ଖାଉନ୍ଦାଣୀଙ୍କର ଅନେକ କଥା । ସୁବର୍ଣ୍ଣ ତା ମୁହଁକୁ ଚାହିଁ ଧୀରେ ଧୀରେ ହସୁଛନ୍ତି; ଧୀରସ୍ୱରରେ ପଚାରୁଛନ୍ତି—ବାବୁ ତ ବାହାରେ ବାହାରେ ବୁଲିଲେ, ମୁଁ କଅଣ କରିବି ?

ସୁବର୍ଣ୍ଣର ଦି ହାତକୁ ଧରି ପକାଇ ମେନକା ଭିଡ଼ିନେଲା ଟଣାଇଲା ଘର ଭିତରକୁ । ଖଟ ଉପରେ ବସାଇଦେଇ ମେନକା ବସି ପଡ଼ିଲା ସୁବର୍ଣ୍ଣର ପାଦତଳେ । କହିଲା ସାମାନ୍ୟ ଦାସୀଟାଏ ହେଲି ମୁଁ ନାନି, ପେଟ ଖଣ୍ଡକ ପାଇଁ ଆମେ ତ ଆମର ସବୁ କଥାକୁ ତୁମରି ଚରଣ ତଳେ ସମର୍ପି ଦେଇଚୁ ଆଜ୍ଞା—ଦେହ, ମନ, ଇଜ୍ଜତ, ମହତ୍ତ୍ୱ ସବୁ ତ ବିକି ଦେଇଚୁଁ । ଆଜ୍ଞାକୁ ଅବଜ୍ଞା କରିବାକୁ ଅଧିକାର କାହିଁ ଆମର ସାଆନ୍ତାଣି ?

ସୁବର୍ଣ୍ଣ—ସେକଥା ଛାଡ଼ । ସତ କହିଲୁ—ବାବୁ କେତେବେଳେ ଗଲେ ଏବଂ କୁଆଡ଼େ ଗଲେ ? ତୁ କଅଣ ସତରେ ଜାଣିନାହୁଁ ?

ମେନା—ଜାଣିଚି ଆଜ୍ଞା, ଜାଣିଚି । ସକାଳଓଳି ଠାକୁର ଅଗଣାରେ ଗାଧୁଆ ପାଧୁଆ ସାରି ପ୍ରସାଦ ପାଇଲେ । ତା ପରେ ଗଲେ ତାଙ୍କ ଗାଆଁ ଆଡ଼େ । ସେଠୁ ଯାଇଥିବେ ପୁରୁଷୋତ୍ତମ । କହୁଥିଲେ ଦି'ଦିନ ପରେ ଫେରିବେ ।

ସୁବର୍ଣ୍ଣ ଚିନ୍ତା କରିବାକୁ ଲାଗିଲେ । ଅନେକ କଥା ମନ ଭିତରେ ଓଲଟ ପାଲଟ ହେଉଚି । କେତେବେଳକେ କହିଲେ—ଗୋଟିଏ କଥା କରିବୁ ? ମୁଁ କଟକ ଯିବି—ନାନୀ ଘରକୁ । ଗୁମାସ୍ତାକୁ କହି ଗାଡ଼ିର ବ୍ୟବସ୍ଥା କର । ମତେ ଏଠି ଏକୁଟିଆ ଭଲ ଲାଗୁନାହିଁ ।

ତଳେ ବସିଥିବା ଅବସ୍ଥାରେ ମେନା ପାଖକୁ ଲାଗି ଆସିଲା । ସୁବର୍ଣ୍ଣର ପାପୁଲି ଦୁଇଟାକୁ ଜାବୁଡ଼ି ଧରି ଧୀର ସ୍ୱରରେ ପଚାରିଲା—କାହିଁକି ନାନି, କଟକ ଯିବେ ? ଆଜି ମୁଁ ଠାକୁର ଅଗଣାରେ ଚମ୍ପା ଗଛକୁ ଲାଗି ବଢ଼ାଇ ଫୁଲ ତୋଳୁଥିଲି—ଦେଖିଲି—ପାଖକୁ ଲାଗି ଲାଗି

ଆସୁଚନ୍ତି ମକରନ୍ଦମେ—ଭୁନ ଭୁନ କହିଲେ—ସଞ୍ଜକୁ ଦେଖା କରିବାକୁ ଆସିବେ ।

ଚହିଁକି ଉଠିଲେ ସୁବର୍ଣ୍ଣ । ପଚାରିଲେ—ମକରନ୍ଦମେ ? ଆସିବେ ? ଆଜି ସଞ୍ଜକୁ ?

ଏଇ ଗାଁରେ ଘର । ଗାଁ ଇସ୍କୁଲରେ ପଢ଼ିଲାବେଳେ ଏକା ସଙ୍ଗରେ ପଢ଼ୁଥିଲେ । ଏଇ ଘରେ ସାଙ୍ଗସାଥି ହୋଇ ଖେଳ କୌତୁକ ହେଉଥିଲେ । କେତେ ଦିନର କେତେ କଥା । କେତେ ସ୍ମୃତି । ସବୁ ଆଜି ଗୋଟି ଗୋଟି ହୋଇ ମନେ ପଡ଼ିଗଲା । ଦୁହିଁଙ୍କର ବିବାହ ହୋଇ ପାରିଲା ନାହିଁ—ତାର କାରଣ ମକରନ୍ଦମେ ଉଚ୍ଚ-ବ୍ରାହ୍ମଣ ନୁହନ୍ତି ବୋଲି । ନୋହିଲେ ଅଭାବ କଅଣ ଥିଲା ତାଙ୍କ ଠେଇଁ ? ବୟସରେ, ରୂପ ଗୁଣରେ ନା ଯୌବନରେ ? ସୁବର୍ଣ୍ଣଙ୍କର ବିବାହ ପରେ ତାଙ୍କ ସହିତ କେତେଥର ଦେଖା ହୋଇଛି । ନିରୋଳାରେ ଦୁହେଁ ବସି କନ୍ଦାକଟା କରିଚନ୍ତି । ମେନକା ହାତରେ ଦୁହିଁଙ୍କ ମଧ୍ୟରେ କେତେ ଚିଠିପତ୍ର ଦିଆ ନିଆ ହୋଇଛି । ବାପା ବୋଉ ମରିଯିବା ପରେ ସୁବର୍ଣ୍ଣ ଏ ସମ୍ପତ୍ତି ବାଡ଼ିର ଅଧିକାରିଣୀ ହେଲେ । ଏଇ ମେନକା ଜରିଆରେ ମକରନ୍ଦମେ କେତେଥର ଆସି ଏଇ ଘରେ ରାତ୍ରି ଯାପନ କରି ଯାଇଚନ୍ତି । ଏ କଥା ସିନା ଅନ୍ୟ କେହି ଜାଣେ ନାହିଁ, ଜାଣିଛି କିନ୍ତୁ ମେନକା । ପୁରିଠାରେ ମକରନ୍ଦମେ ରହନ୍ତି ଏବଂ ବିବାହିତ ହେଲେ ବି ମନଟି ପୂରାପୂରି ବୁଭୁକ୍ଷିତ । ମେରିନର୍ସ କମ୍ପାସଟି ସବୁବେଳେ ଉତ୍ତର-ମୁଖୀ ।

ସୁବର୍ଣ୍ଣର ମନ ଭିତରେ ତରଙ୍ଗାୟିତ ହୋଇଉଠିଲା ସୁନାମଧନ୍ୟ କବିଙ୍କର ମଧୁମୟ ସଙ୍ଗୀତ—

କି ନାମ ବୋଇଲୁ ଭିନ୍ନ ଗୋ ଲଳିତେ
କି ନାମ ବୋଇଲୁ ଭିନ୍ନ ?
ପୁଣି ଶୁଣିବାକୁ ଚିତ୍ତ ବଳିଲାକି
କୃଷ୍ଣ ବୋଲି ଥିଲି କହି ।

ମେନକାର ହାତ ଦୁଇଟିକୁ ଜାବୁଡ଼ି ଧରି ସୁବର୍ଣ୍ଣ ନିଜ ଆଡ଼କୁ ଭିଡ଼ିନେଇ ଉତ୍କଣ୍ଠିତ ସ୍ୱରରେ ପଚାରି ଦେଲା—କଅଣ କହିଲୁ ମେନା ? ମକଦ୍ଦମେ ଆସିଥିଲେ । ଏତେ ଦିନକେ ମନେ ପଡ଼ିଲା । କହିଚନ୍ତି—ସଞ୍ଜକୁ ଆସିବେ ?

ମେନକା ଠିଆ ହୋଇଗଲା ଏବଂ ଗାଲ ଫୁଲାଇ ହସିପକାଇଲା, କହିଲା—ହଁ ଗୋ ହଁ । ଆଜି ନିଶ୍ଚେ ଆସିବେ—ସଞ୍ଜକୁ ! ବାବୁ ବି ଆଜି ଆସୁନାହାନ୍ତି ।

ସୁବର୍ଣ୍ଣ—ସତ୍ତ ଆସନ୍ତି ?

ମେନା—ସେ କଥା ମୋତେ ଲଗା । ଆସିବେ ତ ନାହିଁ । ଆସିଲେ ମୁଁ ତାଙ୍କୁ ଦାଣ୍ଡ ଘରେ ଅଟକାଇ ଦେବି । ମୋ ନା ମେନକା । ତୁମରି ଚରଣ ସେବିକା ଦାସୀ । ତୁମରି ସୁଖ ଶରଧା ପାଇଁ ସବୁକାମ ମୁଁ କରିପାରେ । ମୋର ଏ ଜୀବନଟା ତୁମରି ପାଇଁ ଗୋ ସାଆନ୍ତାଣୀ ନାନି !

ଗତ ରାତିର ସବୁ କଥାକୁ ପାସୋରି ପକାଇ ଆସନ୍ତା ରାତିର ମହୁକା ପାଇଁ ଉଠିଗଲା ସୁବର୍ଣ୍ଣ । ନିଜକୁ ଓ ନିଜ ମନକୁ ପୁଣି ପ୍ରସ୍ତୁତ କରି ନେବାକୁ ହେବ ଯେ ! ମନେମନେ ମେନକାର ଦୀର୍ଘ ଜୀବନ କାମନା କରି କହିଲା—ମକଦ୍ଦମଙ୍କ ଖାଇବା ଯୋଗାଡ଼ ତୁଇ କରିବୁ ମେନା । ତଳ ଖଞ୍ଜାର ଶେଷ ଘରେ ମୁଁ ଆଜି ଶୋଇବି । ସେ ପଟେ ବାଡ଼-ବାଟ ଅଛି—ମକଦ୍ଦମ ସାହିକୁ । ତୁ ଶୋଇବୁ ଦାଣ୍ଡ ଘରେ । ଜାଣିଲୁ ? ଉଠି ଯାଉ ଯାଉ ମେନା କହିଦେଲା—ଜାଣିଚି ଆଜ୍ଞା, ସବୁ କଥା ମୁଁ ଜାଣେ । ଯାଉଚି ଫୁଲ ପୁଳାଏ ତୋଳି ଆଣିବି । ମଧୁ-ଶଯ୍ୟା ପାଇଁ ଯୋଗାଡ଼ କରିବାକୁ ହେବ ଯେ !

ମେନା ହସି ହସି ଯାଉଥିଲା । ସୁବର୍ଣ୍ଣ ହସି ଉଠି ତା ଗାଲରେ ଗେଲରେ ଗୁପୁଡ଼ାଏ କସି ଦେଇଗଲେ ।

ମନ ଭିତରେ ମହୁଆ ନିଶା ଲାଗିଗଲା । ମନେ ମନେ ନିଜକୁ ସେ କହିବାକୁ ଲାଗିଲା—

ଭଅଁର ଗୁହେଁ ଫୁଲେ ଫୁଲେ ମହୁ ଗୁଣି ବୁଲିବାକୁ । ଫୁଲ କଅଣ ଅଶାୟୀ ପ୍ରାଣ ଯେନି ଭନେ ଭନେ ଭଅଁରର ଫୁଲଚଖା ଚୁମ୍ବନର ବିଭିନ୍ନ ଆସ୍ୱାଦନ ପାଇଁ ଆଶା କରି ବସି ନଥାଏ ?

ଏ କାଳ ଆଉ ସେ କାଳ ଭିତରେ ଢେର ତଫାତ୍ । ଅଭାବ ବଢ଼ିବା ସଙ୍ଗେ ସଙ୍ଗେ ମନର ପ୍ରଫୁଲ୍ଲତା ମରି ଆସୁଚି ଏବଂ ମନର ସଞ୍ଜମ ଓ ବିତୃଷ୍ଣା ବଢ଼ି ଯାଉଚି । ମଣିଷ ଜୀବନରେ ଗୋଟାଏ ନିକିତିରେ ଦୁଇଟି ପଲା ଝୁଲିଚି । ଗୋଟାଏ ପଟେ ସୁଖ ସମ୍ଭୋଗ ଓ ପ୍ରାଣ ପ୍ରାଚୁର୍ଯ୍ୟ ଏବଂ ଅପର ପଟେ—ସଞ୍ଜମ ବିତୃଷ୍ଣା ଓ ପ୍ରାଣ ଶୁଷ୍କତା । ସେ କାଳର ବଡ଼ବଡ଼ଆଙ୍କ ଘରେ ଅଭାବ ବୋଲି କିଛି ନ ଥିଲା । ସାମାଜିକ ବନ୍ଧନ ରଜ୍ଜୁଟି ଶିଥିଳ ଥିଲା, ଉଚ୍ଛୃଙ୍ଖଳତାର ନାମ ଥିଲା—ଆଭିଜାତ୍ୟତା ନୈତିକତାର କଠକଣା ଅଭିଜାତ ପରିବାରରେ ନିତାନ୍ତ ମାମୁଲି କଥାଟାଏ ବୋଲି ଗ୍ରହଣ କରାଯାଉଥିଲା ।

ମେନକା ନିଜେ ସୁବର୍ଣ୍ଣଦେବୀଙ୍କ ବରାଦ ମୁତାବକ ଶେଯ ସଜାଡ଼ି ଦେଇ ଆସିଲା ଏବଂ ମକଦ୍ଦମଙ୍କ ଅଭ୍ୟର୍ଥନା ଲାଗି ସୁମିଷ୍ଟ ଖାଦ୍ୟ ସାମଗ୍ରୀ ଥୋଇ ଦେଇ ଆସିଲା । ଯୁବକ ମକଦ୍ଦମ ବିରେନ୍ଦ୍ର ଦାଶ ରାତି ପହଡ଼ିକ ବେଳକୁ ନିଭୃତ କକ୍ଷରେ ବିଜେହେଲେ । ଦି ଟେଳା ବଟା ଭାଙ୍ଗ ସଙ୍ଗରେ ମସଲାଦିଆ ପାନ ଡବାଏ ଥୋଇଦେଇ ଆସିଲା ମେନକା । ତା ସାଙ୍ଗକୁ ଡାଲାରେ ଡାଲାଏ ସୁଗନ୍ଧୀ ଫୁଲ । ଶେଯ ଉପରେ ପ୍ରଫୁଲ୍ଲ ମନରେ ଢଳ-ପଡ଼ିଲା ବେଳକୁ ସୁବର୍ଣ୍ଣଦେଇ, ଦିଗମ୍ବର—ମେନକା ଘନିଚ ପୂର୍ବ ରଜନୀ ଘିଟଣୀକୁ ପୁରାପୁରି ପାସୋରି ପକାଇଲେ । ଯେମିତି ସେଭଳି ଘଟନା-ଗୁଡ଼ାକ ଏ ଘରେ ନିହାତି ଲଘୁ ଏବଂ ମାମୁଲି ବ୍ୟାପାର ମାତ୍ର ।

ଗାଁରେ ଲୋକ ଡଗ ମେଲନ୍ତି—

ଆ ଆ ଲୋ ମୁଗୁଣି ଶୋଇବା
ତୁଉ ତ ମୁଗୁଣି ମୁଁ ଉଁ ତ ମୁଗୁଣି
ନେହିଁସ କାହିଁ ପାଇଁ ଧୋଇବା



ରାୟ ସାହେବଙ୍କ ବିଶ୍ୱାସୀ ଭୃତ୍ୟ ଜଣେ ଆସି ସୁବର୍ଣ୍ଣଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ଏବଂ ତାଙ୍କ ହାତକୁ ମୁଦା ଚିଠି ଖଣ୍ଡିଏ ବଢ଼ାଇ ଦେଇ କହିଲା--ସାଆନ୍ତେ ପଠାଇଚନ୍ତି ।

ଗୁଣୁଁ ଗୁଣୁଁକା ଛନକା ମନରେ ଚିଠି ଖୋଲି ପଢିଗଲେ ସୁବର୍ଣ୍ଣ—

କଲ୍ୟାଣୀ ସୁବର୍ଣ୍ଣମୟୀ,

ଆସନ୍ତା ଛଅ ତାରିଖ ଠାରୁ ପାଞ୍ଚ ଦିନ କଚେରି ବନ୍ଦ । ନିଜେ ବସି ଧାନ ଅମଳ କରାଇବାପାଇଁ ନାନା ଗାଁକୁ ଯାଇଚନ୍ତି । ମୁଁ ନିଜେ ତୁମ ସେଠା ଧାନ ଅମଳ ଦେଖିବି ! ଦିଗମ୍ବରଙ୍କୁ ଏ ଚିଠି ଦେଖାଇ କହିବ—ଭାଇନା କହିଚନ୍ତି ତୁମେ ବିଜୟପୁର ଖମାରକୁ ଯାଇ ନିଜ ତତ୍ତ୍ୱାବଧାନତାରେ ସେଠା ଧାନତକ ଅମଳ କରାଅ । ସେଠି ତ ଅନେକ ଜମି ଏବଂ ଖୁବ କମରେ ପନ୍ଦର କୋଡ଼ିଏ ଦିନ ଲାଗିବ । ମୁଁ ଯଦି ସେଠିକି ଯାଏ ତେବେ ଏତେଦିନ ରହି ପାରିବି ନାହିଁ । କୋଠିଆ ଖମାରେଇଙ୍କୁ ମୋର ଆଦୌ ବିଶ୍ୱାସ ନାହିଁ । ଖାତକମାନେ ଦେଢ଼ି ସୂନେ ନେଇଥିବା ଧାନତକ ଆଦାୟ କରିବାକୁ ପଡ଼ିବ । ଲୋକେ ଅଗବରୁ ଖାଇ ଦେଇ ବସିଲେ ଆଦାୟ କରିବା କଷ୍ଟକର ହେବ । ଧାନ ଅମଳ କରାଇବା ସମୟରେ ମୁଁ ସଦରରେ ବସି ସଦର ଗୁମାସ୍ତା ହିସାବ ବୁଝିବି ଏବଂ ସେଠା ଦେଢ଼ୀ ଧାନ ଆଦାୟ କରାଇବି । ବିଜୟପୁରଟା ଦୂରରେ ଥିବାରୁ ଦିଗମ୍ବରବାବୁ ନିଜେ ଯାଇ ମଝିରେ ମଝିରେ ଯାଆ ଆସ ନ କଲେ ଲୋକେ ଓ ଖମାରେଇ ଆଦି ଠକିବାକୁ ଛାଡ଼ିବେ ନାହିଁ ।

ଆଶାକରେ ଦିଗମ୍ବର ଭଲରେ ଥିବ । ତୁମ ସେଠାରୁ ଆସିଲା-ବେଳକୁ ତୁମେ କାନ୍ଦୁଥିଲ । ସେ କଥା ମୁଁ ଭୁଲିପାରୁ ନାହିଁ । ସବୁବେଳେ ମୁଁ ତୁମର କଥା ହିଁ ଭାବ ହେଉଛି ବୋଲି ଜାଣିବ ।

ଇତି

ଚିଠି ଖଣ୍ଡିକୁ ବାରମ୍ବାର ସୁବର୍ଣ୍ଣ ପଢ଼ିଲେ ଏବଂ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ମନ ଭିତରଟା ଆନନ୍ଦରେ କୁରୁଳି ଉଠୁଚି । ଦିଗମ୍ବରଙ୍କ ପାଖକୁ ଯାଇ ଚିଠି ଖଣ୍ଡିକ ବଢ଼ାଇ ଦେଇ କହିଲେ—ପଢ଼, ଭାଇନା କଅଣ ଲେଖିଚନ୍ତି ।

ଚିଠିଟି ଗ୍ରହଣ କରୁ କରୁ ଦିଗମ୍ବର କହିଲେ—ଚିଠି ବୋଧ-ହୁଏ ତୁମ ନାଆଁରେ ଆସିଚି ?

ଠିକଣାଟା ଦେଖି କହିଲେ—ତୁମରି ନାଆଁରେ । ତେବେ ମୁଁ କିଆଁ ପଢ଼ିବ !

ସୁବର୍ଣ୍ଣ—ମୋ ନାଆଁରେ ସିନା ଦେଇଚନ୍ତି । ତୁମକୁ ବି ଲେଖିଚନ୍ତି ।

ଥରେ ପଢ଼ିସାରି ଦିଗମ୍ବର ପୁଣିଥରେ ପଢ଼ିଲେ । ଚିଠିର ଭାଷା ଓ ଭାବକୁ ଯେମିତି କିଛି କୂଳ କିନାରା ପାଉ ନାହାନ୍ତି । ଭାବୁଚନ୍ତି—ସତେ କଅଣ ଭାଇନା ଏ ସମ୍ପତ୍ତି ରକ୍ଷଣାବେକ୍ଷଣ ବିଷୟରେ ଏତେ ଚିନ୍ତିତ ? ମୁଁ ବା କିଏ ଏ ସମ୍ପତ୍ତିରେ ?

ମନ ଭିତରେ ସନ୍ଦେହର ବିନ୍ଦୁ । ଇନ୍ଦ୍ରଜାଲର ମାୟା ଭିତରେ କୁହୁକ ବିଦ୍ୟା ବିଦ୍ୟମାନ ଥାଏ ସତ, ମାତ୍ର ସତ୍ୟହୋଇ କିଛି କଅଣ ଥାଏ ? ଚିଠି ଖଣ୍ଡିକ ହାତରେ ଧରି ସେ ଭାବିବାକୁ ଲାଗିଲେ—ଶୁଣିଚି ରାୟସାହେବଙ୍କ ମୁଣ୍ଡ ଭିତରକୁ ସାଦା ପେନ୍‌ସିଲ କଣ୍ଡାଟିଏ ପୂରାଇଦେଲେ, କାଢ଼ି ଆଣିଲା ବେଳକୁ ପେଞ୍ଚକଣ୍ଟାଟିଏ ହୋଇ ସେ ବାହାରି ଆସିବ ।

ଠିଆ ହୋଇ ଯାଇ ଦୀର୍ଘ ନିଃଶ୍ୱାସ ଛାଡ଼ି ଚିଠିଟିକୁ ସୁବର୍ଣ୍ଣ ହାତକୁ ବଢ଼ାଇ ଦେଲେ ଦିଗମ୍ବର ।

ସୁବର୍ଣ୍ଣ ପଚାରିଲା—କେବେ ଯିବ ?

ଦିଗମ୍ବର—କୁଆଡେ ?

ସୁବର୍ଣ୍ଣ—ବିଜପୁର ଖମାରକୁ ।

ଦିଗମ୍ବର—ବିଜପୁର ନୁହେଁ । ପୁରୀ ।

ସୁବର୍ଣ୍ଣ—ମାନେ ?

ଅନ୍ୟ ଆଡକୁ ଅନାଇ ଦିଗମ୍ବର କହିଲେ—ପୁରୀ ଯାଇ ମୁଁ ଖଣ୍ଡେ ଚାକିରି ଯୋଗାଡ଼ କରି ଆସିଚି । ହୁଏତ ଇଆରି ଭିତରେ ମୂକରରି ଚିଠିଟା ଆସିଯିବ ଏବଂ ମୁଁ ଚାଲିଯିବି ।

ସୁବର୍ଣ୍ଣ—ତୁମେ ଚାକିରି କରିବ ? କାହିଁକି ? କଅଣ ତୁମର ଅଭାବ ?

ଦିଗମ୍ବର—ମୋର ଅଭାବଟା କଅଣ, ସେ କଥାଟା ବଡ଼ଲୋକ ଝିଅ ତୁମେ ବୁଝି ପାରିବ ନାହିଁ । ଏଘରେ ମୋର ମୂଲ୍ୟ କଅଣ ? ଅଧିକାର କଅଣ ? ଟେକା ହାତରୁ କିଛି ଗ୍ରହଣ କରିନେବା କେତେ ଦୁଃଖ ଦାୟକ, ସେକଥା ତୁମେ ବୁଝି ପାରିବ ନାହିଁ ସୁବର୍ଣ୍ଣ । ଚାକିରି କରିବ ଏବଂ ନିଜକୁ ପୋଷିବ ଏହାହିଁ ମୁଁ ସ୍ଥିର କରି ନେଇଚି ।

ଏକ ଲୟରେ ଅନାଇ ରହି ସୁବର୍ଣ୍ଣ କହିଲେ—କଅଣ ସବୁ କହି ଯାଉଚ ତୁମେ ? କୋଉ କଥାରେ କଅଣ ଅଭାବ ରହିଲା ? କିଏ କଅଣ କହିଲା ? କାହିଁକି ତୁମର ଏ ଛାଡ଼ ଛାଡ଼ ଭାବ ?

ଦିଗମ୍ବର—ମୋତେ କେହି କିଛି କହିନାହାଁନ୍ତି କି କୌଣସି କଥାରେ କିଛି ଅଭାବ ନାହିଁ । ଗରିବ ଘରର ପିଲା ମୁଁ । ବଡଲୋକ ଘରର ସୁନା ପଞ୍ଜୁରି ଭିତରେ ବନ୍ଦୀ ହୋଇ ପଡ଼ିରହିବାର ଆଗ୍ରହ ଏ ଜୀବନରେ ନାହିଁ । ତେଣୁ ସ୍ୱାଧୀନ ଭାବେ ଉପାର୍ଜନ କରି ମୁଁ ପେଟ

ପୋଷିବାକୁ ଚାହେଁ । ଅନ୍ୟର ସମ୍ପତ୍ତି ବାଡ଼ର ସ୍ତୁପ ମଧ୍ୟରେ ଚିର ଜୀବନ ପଙ୍ଗୁହୋଇ ପଡ଼ି ରହିବା ପାଇଁ ମୋର ଆତ୍ମାପୁରୁଷ ରାଜି ହୋଇ ପାରୁନାହିଁ ।

ଆଗକୁ ଆଗେଇ ଆସି ଉତ୍ତେଜିତ ଭାବେ ସୁବର୍ଣ୍ଣ ପଚାରିଦେଲେ—ଅନ୍ୟର ସମ୍ପତ୍ତି ବାଡ଼ର ସ୍ତୁପ ? ଏସବୁ ଘରଦ୍ୱାର ସମ୍ପତ୍ତିବାଡ଼ି ତୁମର ନୁହେଁ ?

—ନା, ମୋର ନୁହେଁ । କହି କହି ଅନ୍ତର ଭିତରର ଉତ୍ତେଜନାକୁ ଚାପିଧରି ଦିଗମ୍ବର ସେଠାରୁ ଚାଲିଗଲେ ଦାଣ୍ଡ ଆଡ଼କୁ । ଗୋଟିଏ ଅଗଣାପରେ ବାଣ୍ଟଘର । ତାପରେ ଆଉ ଗୋଟିଏ ଶୂନ୍ୟ ଅଗଣା । ତାପରେ ଦାଣ୍ଡଘର ।

ଅନ୍ତରାଳରେ ଲୁଚିରହି ମେନକା ସବୁ କଥା ଶୁଣୁଥିଲା । ଦିଗମ୍ବରଙ୍କ ପଛେ ପଛେ ଧୀରେ ଧୀରେ ସିଏବି ଦାଣ୍ଡଘର ଯାକେ ଚାଲି ଚାଲି ଆସିଲା । ବାଣ୍ଟରେ ଶୁନଶାନ, କେହିନାହିଁ । ଦାଣ୍ଡଘର ଭିତରକୁ ପାଦ ବଢ଼ାଇଚନ୍ତି ଦିଗମ୍ବର, ଠିକ ସେତିକବେଳକୁ ପଛରେ ଥାଇ ନମ୍ରସ୍ୱରରେ ଡାକିଦେଲା ମେନକା—ସାଆନ୍ତେ ଆଜ୍ଞା !

କଳକଣ୍ଠୀ ମେନକାର ସୁମଧୁର ଆହ୍ୱାନ । ଦାସୀ ଚାକରାଣୀର ଝିଅହେଲେ ବି ବିଧାତା ତାର କୌଣସି ବିଷୟରେ ଅଭାବ ରଖିନାହାନ୍ତି । କୋମଳାଙ୍ଗୀ, ତରଙ୍ଗାୟିତ ଯୌବନା, ଲାବଣ୍ୟମୟୀ ମେନକାର ରୂପର ଝଲକ ଆଖି ଝଲସାଇ ଦେଉଚି । ଦିଗମ୍ବର ପଛକୁ ମୁହଁ ବୁଲାଇ ଚାହିଁଲେ ।

ପୁଣି ଡାକିଲା—ବାବୁ ଆଜ୍ଞା !

ଦିଗମ୍ବର ନମ୍ରସ୍ୱରରେ ପଚାରିଲେ—କଅଣ କହୁଚୁ ମେନା ?

ସୁକୋମଳ ଅଧର ପଲ୍ଲବରେ ଆଦରସୋହାଗୀ ହାସ୍ୟର ମୂର୍ଚ୍ଛନା । ଅଦୂରକୁ ଘର ଭିତରେ ପଡ଼ିଥିବା ଚୌକି ଖଣ୍ଡିକଯାକେ ଆଗେଇ ଯାଇ ବସି ପଡ଼ୁ ପଡ଼ୁ ଦିଗମ୍ବର ପୁଣି ପଚାରିଲେ—କଅଣ ମେନା ?

କବାଟକୁ ଆଉଜି ଛିଡ଼ାହୋଇ ଅଗଣା ଆଡ଼କୁ ନଜରଦେଇ ମେନା ପଚାରିଲା—କୁଆଡ଼େ ଯିବେ ଆପଣ ? ଚରଣ ସେବା ନକରି ମୁଁ ବଞ୍ଚିବି ନା ମରିବି ? ନିରୀହ ନାରୀ-ହତ୍ୟା ଦୋଷଟି କାହାକୁ ଲାଗିବ ଆଜ୍ଞା ?

ଦିଗମ୍ବର ଭୁନ ଭୁନ ପଚାରିଲେ—କିଏ ତୁ ମୋର ମେନା ?

ମେନା—ମୁଁ ? ମୁଁ କିଏ (ଅଳ୍ପ ଅଳ୍ପ ହସୁଥାଏ) ?

ମୁଁ ହେଲି ତୁମ୍ଭଙ୍କ ଚରଣ ସେବିକା ।

ପୁରୁଷାନୁକ୍ରମେ ସାଆନ୍ତ ଘରେ ଚଳି ଆସିଛି ମେନା । କଥା କଥାକେ ଛାମୁଁ, ଆଜ୍ଞା, ମଣିମା ଆଦି କହିବାରେ ଧୁରନ୍ଧର । ରୂପର ଝଲକ ଦେଖାଇ, କଣ୍ଠର ଝଙ୍କାର ଉଠାଇ, ଆଖିର ଭ୍ରମରଜିଣା ଡୋଳା ଖେଳାଇ, ଦୀର୍ଘଶ୍ୱାସରେ ଉତ୍ତୁଙ୍ଗ ବକ୍ଷ-ସ୍ପନ୍ଦିତର ମୁଦ୍ରା ଦେଖାଇ ପୁରୁଷର ମନକୁ କିପରି ବଶୀଭୂତ କରାଯାଇ ପାରେ, ସେ କୌଶଳ କଳାକୁ ବଧିବଦ୍ଧ ଭାବେ ନିଜ ମାଆ ଭଉଣୀମାନଙ୍କ ଠାରୁ ଶିଖିଆସିଛି ମେନକା । ଜାରଣ, ମାରଣ, ମୋହନ, ଉଚ୍ଚାଟନ ଆଦି ବିଦ୍ୟାରେ ସେ ପାରଙ୍ଗମା । ଏଣେତେଣେ ଆଖି ବୁଲାଇଆଣି ପାଖକୁ ଲାଗିଆସି ହାସ୍ୟ ମଧୁର ମୁଖରେ ନମ୍ର ସ୍ୱରରେ କହିଲା—ପଳାଇଯିବି,ପଳାଇଯିବି ହେଉଥିବା ମନଟାକୁ ଧୈର୍ଯ୍ୟ ଧରି ବାନ୍ଧି ପକାନ୍ତୁ । ମାଆ ସାଆନ୍ତାଣି ଦେହାନ୍ତ ହେଲା ପରେ ନାମ ସାଆନ୍ତାଣୀଙ୍କ ମନ ଭଲ ରହୁନାହିଁ । ବିକଳ ହୋଇ ବେଳେ ବେଳେ କହୁଛନ୍ତି—କିଛିଦିନ ପାଇଁ ବଡ଼ନାମ ସାଆନ୍ତାଣୀଙ୍କ ପାଖକୁ ବୁଲିଯିବେ ବୋଲି । ଯାଆନ୍ତୁ କି ଭଲ ହେବ । ବାବୁ ଆଜ୍ଞା ଆଉ ମୁଁ ରହିଯିବୁଁ । ଆପଣ ହେବେ ରାଜାସାଆନ୍ତ, ଆଉ ମୁଁ ଉତ ହେବି ଶ୍ରୀଚରଣ ଦାସୀ ! ମୋର ଏ ଭରାଯୌବନ, ଏ ଦେହ, ଏ ରୂପ ଭେକ ସବୁତକ ହେବ ଛାମୁଙ୍କ ଶ୍ରୀଚରଣତଳେ ପୂଜାଫୁଲ ପରି । କୁ କଥାକୁ ଆପଣଙ୍କର ଅଭାବ ? ତେଣିକି କଅଣ କଅଣ କରିବାକୁ ହେବ ସେ କଥା ମୁଁ ନିରୋଳା ରାତିରେ ବାବୁ ଆଜ୍ଞାଙ୍କ କୋଳ ଭିତରେ ଥାଇ ଭୁନଭୁନ କହିବି ଯେ !

କଥା ଶେଷ ନ କରୁଣୁ ଲଜ୍ଜାବୋଳା ହସ ହସ ମୁହଁଟିକୁ ମେନକା ଆଡ଼େଇ ନେଲା ବାହାର ଆଡ଼କୁ । ହିଗମ୍ବରର ଉତ୍ତେଜିତ ମନ ଥପ୍‌କିନା ଥଣ୍ଡା ହୋଇଗଲା । ହାତ ବଢ଼ାଇ ସେ ମେନକାର ପଣତକାନିଟାକୁ ଧରି ଟାଣିଲା । ପାଖକୁ ଘୁଞ୍ଚିଆସି ମେନକା ତାଙ୍କ କାନ ପାଖକୁ ମୁହଁ ନେଇ କହିଲା—କାହିଁକି ଆପଣ ସବୁବେଳେ ପଳାଇଯିବି ପଳାଇଯିବି ହେଉଚନ୍ତି ଆଜ୍ଞା ? ଆପଣଙ୍କର ଅଭାବ କୋଉ କଥାକୁ ? ବୁଦ୍ଧି ଯାହାର, ମୁଲକ ତାର । ବଡ ସାଆନ୍ତେ ଭରସା ଦେଇଚନ୍ତି । ଆପଣ ବଜପୁର ଚାଲିଯାଆନ୍ତୁ । ନିଜେ ଥାଇ ଧାନଧର୍ମ ଅମଲ କରନ୍ତୁ । କେଉଁପାଣି କେଉଁ ଆଡ଼କୁ ଯାଉଛି ଦେଖନ୍ତୁ । "ଥିରପାଣି ପଥର କାଟେ ।" କହିବେ ତ ମୁଁ ସଙ୍ଗରେ ଯିବାର ଯୋଗାଡ଼ କରିନେବି ।

ବାଙ୍କଚାହାଣି ହାଣି ଦେଇ ମେନକା ଚାଲିଯିବାକୁ ବାହାରିଲା । ହିଗମ୍ବର ଭାବିଲେ—ବୁଦ୍ଧିମନ୍ତ ମେନକା ବଡ ଘରେ ବଢ଼ିଚି । ସାଆନ୍ତ ଘର କାରବାର ଦେଖି ଆସିଛି । ଯାହା କହିଲା ଠିକ୍ କଥାଟାଏ କହିଲା—ଥିରପାଣି ପଥର କାଟେ । ଦାସୀ ପିଲାଟିଏ ହେଲେବି ରୂପରେ ଗୁଣରେ ଆଉ ଯୌବନରେ ତା ପାଖରେ ସୁବର୍ଣ୍ଣଟା ପାସଙ୍ଗରେ ପଡ଼ିବ ନାହିଁ ତ ! ହଉତେବେ ବଜପୁର ଯିବି । ଖମାର ଘରେ ରହିବି । ମେନକା ଯଦି ଯାଇପାରେ ତେବେ ଚାଲୁ । ମୋର ଜଳଖିଆ ପଖ ଛଆର କରିଦେବ, ବୋଲହାକ କରିବ, ମେନକା ବୁଝାଇ କହିଲେ ସୁବର୍ଣ୍ଣ ରାଜି ହୋଇଯିବ ଯେ ।

ହିଗମ୍ବର ଡାକିଲେ—ମେନା ଶୁଣ ।

ମେନା ଫେରି ଚାହିଁଲା ।

ହିଗମ୍ବର—ତୁମୋ ସଙ୍ଗରେ ଯିବାକଥା ନାମାଙ୍କି କହି ରାଜି କରାଇନେ । ଆଜି ରାତିରେ ମତେ କହିବୁ ସେ କଅଣ କହିଲେ ।

ମେନା ହସିଦେଇ ଫାଳେ ଓଢ଼ଣାଟାଣି ପଳାଇ ଯାଉ ଯାଉ କହିଲା—ହଉ ଆଜ୍ଞା ।

× × ×

ସୁବର୍ଣ୍ଣ ଗୋରୁମୁଣ୍ଡ ଥାପି କପା ତୋଳିବାକୁ ଚାହେଁ । ଦିଗମ୍ବରକୁ ସେ ଅଂତରରେ ଗ୍ରହଣ କରି ପାରୁନାହିଁ । ତଥାପି ସେ କୁଆଡେ ଚାଲିଯିବେ ଏକଥାଟିକି ସେ ଚାହେଁ ନାହିଁ । ଦିଗମ୍ବରର ଉପସ୍ଥିତିରେ ସୁବର୍ଣ୍ଣର ଉଚ୍ଛୃଙ୍ଖଳ-ବିହାର ବରଂ ନିରାପଦ ।

ଚଟି ପଡ଼ି ସାରି ଦିଗମ୍ବର ଦାଣ୍ଡଆଡ଼କୁ ଚାଲିଗଲା ବେଳକୁ ମେନକା ଯେ ପଛେ ପଛେ ଯାଉଛି, ଏକଥାକୁ ଲକ୍ଷ୍ୟ କରିଥିଲା ସୁବର୍ଣ୍ଣ । ମେନା ଫେରିଆସିଲା ଏବଂ ସୁବର୍ଣ୍ଣ ତାଆରି ଆଡ଼କୁ ପ୍ରଶ୍ନବାଚକ ଦୃଷ୍ଟି ନିକ୍ଷେପ କଲା । ପଚାରିଲା—କଅଣ ହେଲା ?

ହସୁଚି ମେନା—ପାଖକୁ ଲାଗି ଅସୁଚି । ନିକଟକୁ ନୁଆଁଇ ଦେଲା ନିଜର ହସ ହସ ମୁହଁଟାକୁ । ଧୀର ସ୍ୱରରେ କହିଲା—ସବୁ ଠିକ୍ ଠାକ କରିଦେଇ ଆସିଲି ଆଜ୍ଞା । ଲମ୍ବ-ପାଦ ମୁନିଙ୍କ ତପସ୍ୟା ଭାଙ୍ଗିଦେଇ ପାରିଥିଲା ଜରଦା, ଆଉ ଆପଣଙ୍କ ମେନା ପାରିବ ନାହିଁ ଆପଣଙ୍କ ବାବୁଙ୍କ ମନଟାକୁ ବଦଳାଇ ଦେବାକୁ ? କଥାରି ନାଗଫାସିଆ ଅଠାକାଠି; ସହଜ ନୁହେଁ ଛୁଟେଇ ଅଲଗା ହୋଇ ଯିବାକୁ । ସୁନ୍ଦରିଆ ମୁହଁରେ ଦିପଦ କଥା ଶୁଣିଲା ମାତ୍ରେ 'ବାବୁ ଆଜ୍ଞା'ଙ୍କ ମୁଣ୍ଡଟା ଘାବରେଇ ଗଲା ଆଜ୍ଞା ! ଖ୍ରୀଷ୍ଟଙ୍କର ପ୍ରତିଜ୍ଞା ଓଲଟି ଯାଇଚ । ବିଜୟପୁର ଯିବେ ବୋଲି ହିଁ ଭରିଚନ୍ତି । ଆଉ କହୁଚନ୍ତି ସଙ୍ଗରେ ଯିବି ମୁଁ । କହୁଚନ୍ତି ନାମ୍ନିଙ୍କି କହି ରାଜି କରେଇ ନେ ।

ସୁବର୍ଣ୍ଣଙ୍କ ପାଦ ତଳକୁ ହାତ ବଢ଼ାଇ ଦେଖାଇ ମେନା କହିଲା— ଏଇ ଚରଣ ତଳେ ମେନକା ତା ଜୀବନଟାକୁ ଦୋରିବସ୍ତ ସମର୍ପି ଦେଇଚି ବୋଲି ଜାଣିବେ ନାମ୍ନି ଆଜ୍ଞା । ଏ ଦେହ, ଏ ମନ, ଆଉ ଏ ପ୍ରାଣଟାକୁ ଠିକ ସାଆନ୍ତାଣୀଙ୍କ ମଙ୍ଗଳ ପାଇଁ ଉତ୍ସର୍ଗ କରି ଦେଇଚି ବୋଲି ଜାଣିବେ । ମୋ ନାମ୍ନି ଆଜ୍ଞାଙ୍କ ଅଗ ଗୋଡ଼ରେ କଣ୍ଟାଟିଏ ଫୁଟିଯିବ, ଆଉ ମୁଁ ଦେଖିବି ? ଏ କଥା କଦାଚ ହୋଇପାରିବ ନାହିଁ । ବରଂ ତା ପୂର୍ବରୁ ମେନା ଆଉ ଜୀବନ ଧରି ବଞ୍ଚି ନ ଥିବ ବୋଲି ଜାଣିବେ ।

ସୁବର୍ଣ୍ଣ କହିଲେ—ଭୂମିକା ବନ୍ଦକର ମେନା । ଠିକେ ଠିକେ କହି ଯା, କଅଣ କଲୁ ଆଉ କଅଣ ହେଲା ।

ମେନକା—ସବୁ କଥା ତ କହିଲି ଆଜ୍ଞା । ମତେ ପରା ବଳପୁର ଯାକେ ସାଙ୍ଗରେ ନେବାକୁ କହୁଚନ୍ତି ?

ମେନା ହସୁଛି ।

ସୁବର୍ଣ୍ଣ ଈଷତ୍ ହସି କହିଲେ—ହଉ ଯାଆ ।

ମେନା ଅନୁଚ୍ଚ ସ୍ୱରରେ କହିଲା—ବାବୁଙ୍କୁ ତ ମୁଁ ବଳପୁର ନେଇ ଯାଉଛି । ଆଉ ଭୟ କଅଣ ? ବଡ଼ ସାଆନ୍ତେ ଆସି ଏଠି ରହିବେ । ଏ ଜୀବନଟାକୁ ଗୋଟିପଣେ ମୁଁ ଉତ୍ସର୍ଗ କରିଦେଇଛି ତ, ଆପଣଙ୍କ ସୁଖ ଶରଧା ପାଇଁ । ମନଇଚ୍ଛା ସୁଖ କରି ଯାଆନ୍ତୁ । ବଳ, ବୟସ, ଆଉ ବପୁ, ପାଣି ଫୋଟକା ସଙ୍ଗେ ସରି । ଏ ବସନ୍ତ ଥରେ ଆସିଛି, ଥରକ ପାଇଁ । ଫେରିଲେ ଆଉ ଏବର୍ଷ ଆସିବ ନାହିଁ । ଯେତକ ଭୋଗ କରିପିବେ କରି ଯାଆନ୍ତୁ । ବଡ଼ ବାବୁ ଆସି ପହୁଞ୍ଚିବା ଆଗରୁ ସାନବାବୁଙ୍କୁ ମୁଁ ବଳପୁର ଖମାରକୁ ଅଡ଼େଇ ନେଇ ଯାଉଚି ଜାଣିବେ । ଆପଣଙ୍କଠଉଁ ବାରତା ନ ପାଇଲେ ଯାକେ ମୁଁ ଫେରୁଚି ନା ବାବୁ ଫେରୁଚନ୍ତି ! କାଉଁରୀ ବିଦ୍ୟା ବଳରେ ଖୋଦ ବ୍ରହ୍ମାଙ୍କ ପୁଅକୁ ବି ମେଣ୍ଢା କରିନେଇ ବାନ୍ଧି ରଖିପାରେ ବୋଲି ଜାଣିବେ । ଆପଣଙ୍କ ସୁଖ ପାଇଁ ଆଜ୍ଞା, ଆପଣଙ୍କ ଭୋଗ ପାଇଁ ।

ସୁବର୍ଣ୍ଣ— ତା ଆଡ଼କୁ ମୁହୂର୍ତ୍ତେ ଏକ ଲୟରେ ଅନାଇ ରହି କଣ୍ଠ କଥା ଭଳି କହିଲ—ତୁ ବି ଯିବୁ ?

ମେନା—ନ ଗଲେ ଅନ୍ୟ ଉପାୟ ନାହିଁ ଯେ !

ସୁବର୍ଣ୍ଣ ଜାଣୁଛନ୍ତି—ଅନ୍ୟ ଉପାୟ ନାହିଁ ସତ, ମାତ୍ର ମନଟା କାହିଁକି କେମିତି କେମିତି ଲାଗୁଚି । ଯେତେ ଯାହା ହଉ ପଛକେ,—ବିବାହିତ ସ୍ୱାମୀ ଅନ୍ୟ ସଙ୍ଗରେ କାଳ କାଟିବ ଏ କଥା କୌଣସି ନାରୀ ସହିପାରେ ନାହିଁ ।

ପୁଣି ସେ ଭାବଲା—ଗୋରୁ ମୁଣ୍ଡ ଥାପି କପା ତୋଳିବା ସ୍ତ୍ରୀ ଗୋରୁ ମୁଣ୍ଡ ବିଷୟରେ ଏତେ ସଜାଗ ହୁଏ ନାହିଁ ତ !

ତଥାପି ମନଟା କିନ୍ତୁ କିନ୍ତୁ ହେଉଚି ତ !

କଇଁ ଫୁଲରୁ ମଧୁ ଚୂମ୍ବିଥିବା ଭଅଁର ଦେହରେ କଇଁ ଫୁଲ ରେଣୁ ବୋଳି ହୋଇଥାଏ । ସକାଳୁ ସେ ଆସି ଯେତେବେଳେ ସଜ-ଫୁଟା ପଦ୍ମଫୁଲ ଉପରେ ବସିଯାଏ, ତେତେବେଳେ ପଦ୍ମଫୁଲ ପବନରେ ଦୋହଲି ମୁଣ୍ଡ ହଲାଇ ବିରକ୍ତି ପ୍ରକାଶ କରିଥାଏ ବୋଲି କୌଣସି କବି ମଧ୍ୟ କହି ଯାଇଚନ୍ତି ।

ପାଖକେ ଦିଗମ୍ବର, ପାଖକେ ରାୟ ସାହେବ । ରାୟ ସାହେବଙ୍କ ଓଜନ ବେଶୀ । ଶନ୍ତାର ସମାପ୍ତି ଆଡ଼କୁ ସୁବର୍ଣ୍ଣ ଭାବିନେଲେ—ଯାଉ ମେନା ତାଙ୍କ ସାଙ୍ଗରେ । ନୋହିଲେ ମଝିରେ ସେ ପଳାଇ ଆସି-ପାରନ୍ତି ।

ପ୍ରକାଶ୍ୟରେ କହିଲ—ତୁ ଯାଆ ମେନା ତାଙ୍କ ସାଙ୍ଗରେ ।

× × ×

ରାତିକି ଦାଣ୍ଡ ଆଡ଼ ମେଲା ଘର ଖଟ ଉପରେ ବିଛିଲ ବିଛଣା ଉପରେ ଦିଗମ୍ବରବାବୁଙ୍କ କୋଳ ଭିତରକୁ ମୁହ ଗୁଞ୍ଜି, ମେନକା ସୁବର୍ଣ୍ଣଙ୍କ ସମ୍ମତି ବାଣୀ ଜଣାଇଦେଲା ।

ଦିଗମ୍ବର ତୃପ୍ତିରେ ଦୀର୍ଘ ନିଶ୍ୱାସଟିଏ ଟାଣିନେଲେ ।



ନିଜର ସ୍ୱାମୀ ମେନା ଗୃହଗୃହିଣୀକୁ ସାଙ୍ଗରେ ଧରି ବଙ୍କପୁର ଖମାରକୁ ଯିବେ ଏ କଥାଟା ସହ୍ୟ କରି ହେଉନାହିଁ । ହେଲେ ରାୟ-ସାହେବଙ୍କ ରହଣିକାଳ ଭିତରେ ଅନ୍ୟ କୌଣସି ସହଜ ପନ୍ଥା ଅବଲମ୍ବନ କରାଯାଇ ପାରିବ ନାହିଁ ବୋଲି ଜାଣି ସୁବର୍ଣ୍ଣ ନୀରବ ହେଲେ ।

ସାଆନ୍ତ ଘରେ କୌଣସି ସାଆନ୍ତ ପିଲାଙ୍କ ଔରସରୁ ଜନ୍ମ ହୋଇଚି ମେନକା । ବୁଦ୍ଧି, କୌଶଳ, ଗୃହଭୂମିରେ ସେ ଧୁରନ୍ଧର । ପାଣି ନ ଛୁଇଁ ମାଛ ଧରିବ, ମାଛ ତେଲରେ ମାଛକୁ ଭାଜି ଖାଇବ, ବଙ୍କପୁର ବ୍ୟବସ୍ଥାକୁ କଳାବେଲକୁ ତାକୁ କେହି ଦୋଷ ଦେବେ ନାହିଁ ।

କାଲି ଆସି ପହଞ୍ଚିବେ ରାୟସାହେବ । ଆଜି ସଞ୍ଜକୁ ମେନା ବରାଦ କରି ଦେଇଚି—ଦୁଇ ଖଣ୍ଡ ଡାଚ ଶଗଡ଼—ବଙ୍କପୁର ଯିବାପାଇଁ । ଖଣ୍ଡିକରେ ଯିବେ ଦିଗମ୍ବରବାବୁ । ଅନ୍ୟ ଖଣ୍ଡିକରେ ମେନା ଓ କୋଡ଼ିଏ ପଚିଶ ଦିନର ରସଦ୍ ଓ ବିଛଣା ପତ୍ର ।

ଏକୁଟିଆ ଦେଖି ମେନକା ଦିଗମ୍ବରଙ୍କୁ ଶୁଣାଇ ଦେଲା—ବାବୁ, ଆଜ୍ଞା, ସଜ ହୋଇ ଯାଆନ୍ତୁ, ସଞ୍ଜକୁ ଗାଡ଼ି ଛୁଟିବ । ମୁଁ ଉତ ସାଙ୍ଗରେ ଯାଉଚି, ଅସୁବିଧା ବା ଅଭାବ କଅଣ ?

ତାକୁ ଉପରକୁ ଓଢ଼ଣାଟା ଟାଣିଦେଇ ଡୋଳା ଦୁଇଟାକୁ ଘୁରାଇ ନେଇ ଦିଗମ୍ବର ପ୍ରତି ଏଭଳି କଟାକ୍ଷ ନିକ୍ଷେପ କଲା ଯେ ତଦ୍ୱାରା ଦିଗମ୍ବରଙ୍କର ଆପାଦ ମସ୍ତକ ରୋମାଞ୍ଚିତ ହୋଇ ଉଠିଲା । ସତେ କି ମେନକା ସୁନ୍ଦରୀ ଆଦେଶ କରି ଯାଉଚି ଏବଂ ସଙ୍ଗେ ସଙ୍ଗେ ଦିଗମ୍ବର ଶରୀରର ସମସ୍ତ ଶକ୍ତି ଲୋପ ପାଇଯାଉଚି ।

ମେନକା ତେଣେ ସୁବର୍ଣ୍ଣଙ୍କ ନିକଟକୁ ଯାଇ ଡାକିଲା—ଆସନ୍ତୁ ନାନୀ ସାଆନ୍ତାଣୀ, ମୁଁ ନିଜେ ରାମୁସାହେବଙ୍କ ପାଇଁ ଶେଯ ସଜାଡ଼ି ଦେଇ ଯିବି । ସେ ଖଞ୍ଜାକୁ ଗୃହର ବାହାର କେହି ଆସିବେ ନାହିଁ । ସେଇ ଖଞ୍ଜା ଭିତରେ ରାମୁସାହେବଙ୍କ ରହିବା, ଶୋଇବା ଘର ସଜଡ଼ା ଯିବ । ପଲଙ୍କ ଉପରେ ବିଛଣା ଶେଯ । ମାଳି ପିଲାକୁ ବରାଦ ଦେଇଯିବି ସେ ପ୍ରତିଦିନ ସଞ୍ଜକୁ ସେ ଚାଙ୍ଗୁଡ଼ିଏ ଲେଖା ବାସନ୍ଧୁଲ ଆଣି ଦେଇଯାଉଥିବ । ସେଥିରେ ବଡ଼ ସାଆନ୍ତେ ଦିଅଁ ପୂଜା କରନ୍ତୁ କି ନାନୀ ସାଆନ୍ତାଣୀଙ୍କି ପୂଜା କରୁଥାଆନ୍ତୁ । ଆଲମାରି ଭିତରେ ବଡ଼ କାଚ ବୋତଲରେ କାମେଶ୍ୱର ମୋଦକ ରହିଲା । ନିତିଆ ମାଆକୁ ବରାଦ ଦେଇଯାଉଛି ଉପରବେଳା ଆସି ନିତି ଆପଣଙ୍କ ଜୁଡ଼ାଟିକି ନିକ କରି ବାନ୍ଧି ଦେଇ ଯାଉଥିବ ଯେ ପଦ୍ମ ଫୁଲିଆ ମୁହଁଟି ସୁନ୍ଦର ଦିଶୁଥିବ ।

ଶେଷ କଥାତକ କହି ମେନକା ହସିପକାଇ ମୁହଁଟିକି ମୋଡ଼ି-ଦେଲା । ଅତି ଯତ୍ନରେ ନିଜ ମୁଣ୍ଡଟିକି ସେ ବାନ୍ଧି ଦେଇଛି । କପାଳରେ କଣ ଟୋପାଟିଏ ନାହିଁ ଛି । ଦି ଆଖିରେ କଜଳଗାର । ଗୋଲ ଗୋଲ ଗାଲ ଉପରେ ରକ୍ତ ଚହ ଚହ ହେଉଛି । ସୁବର୍ଣ୍ଣ ତାପାଖକୁ ଦୌଡ଼ି ଆସି ଅତି ଶରଧାରେ ଥରେ ଗୃହପୂଡ଼ା ଦିଇଟା ବସେଇ ଦେଇ ହସିଲେ । କାଲି ଆସି ରାମୁସାହେବଙ୍କ ବଗିଗାଡ଼ି ଦାଣ୍ଡ ଦୁଆରେ ଠିଆ ହୋଇ ଯିବ । ସୁବର୍ଣ୍ଣଙ୍କର ମନ କୁରୁଳି ଖାଉଛି । ଆଜି ସଞ୍ଜକୁ ତାର ସର୍ବସ୍ୱ ସମ୍ପତ୍ତିକୁ ଚୋରିକରି ନେଇ ପଳାଇବାକୁ ବସିଛି ମେନକା—ସେଥିପ୍ରତି ସୁବର୍ଣ୍ଣଙ୍କର ଖିଆଲ ବି ରହୁନାହିଁ ।

ଅତି ଆଦରରେ ମେନକା ତାଙ୍କୁ କୁଣ୍ଢାଇ ପକାଇ ତଳକୁ ଲଇଁ ପଡ଼ିଲେ ଏବଂ ସୁବର୍ଣ୍ଣର ପାଦ ଉପରେ ମୁଣ୍ଡ ଲଗାଇ ଦେଲା । ସୁବର୍ଣ୍ଣ ତା ହାତଟାକୁ ଧରି ଉଠାଇ ନେଇ କହିଲେ—ଛି ଛି ଉଠ । ଯେତିକ ଥାଉ । ନିଜ ଗୁଡି ଉପରକୁ ଆଉଜାଇ ନେଇ ତା ରଙ୍ଗାଗାଲ ଉପରେ ଚୁମାଟାଏ ବସାଇ ଦେଇ କହିଲେ—କି ସୁନ୍ଦର ଦିଶୁଚୁ ଲୋ ମେନା, ମତେ ଯେବେ ଭଗବାନ ପୁଅଟାଏ କରି ଜନ୍ମ ଦେଇ ଥାଆନ୍ତେ !

ଆଉ ଗୋଟାଏ ଚୁମ୍ବା ଖାଇଲେ ସୁବର୍ଣ୍ଣ ।

ରାତି ପହ୍ନଡ଼ିକ ସତରକି ଦିଇଟା ବଡ ବଡ଼ ଚାଟ ଶଗଡ଼ରେ ଶେଜ ତକିଆ ଓ ଜିନିଷପତ୍ର ଲଦାହେଲା । ଚାରିଟା ହୃଷ୍ଟ ପୁଷ୍ଟ ବଳଦ ବେକରେ ଘଣ୍ଟି ଘାଗୁଡ଼ି ଶଗଡ ତଳେ ଲଣ୍ଠନ ଦିଇଟା ଜଳୁଥାଏ । ଦିଇ ଦିଇ ଜଣ ଶଗଡ଼ିଆ ଖାଇ ପିଇ ପ୍ରସ୍ତୁତ ହୋଇଗଲେ । ଦିଗମ୍ବର ବାବୁ ଗୋଟାକରେ, ମେନକା ଆଉଟାରେ ଉଠିଲେ । ଘିଡ଼ଘିଡ଼ ହୋଇ ଗାଡ଼ି ଦିଇଟା ରାସ୍ତା ମୋଡ଼ ପାରି ହୋଇ ଅଦୃଶ୍ୟ ହୋଇଗଲେ । ବିଦାୟ ନେଲାବେଳକୁ ମେନକା ସୁବର୍ଣ୍ଣ ଦେବୀଙ୍କ ପାଦତଳେ ମୁଣ୍ଡିଆ ମାରି କହିଗଲା—ନାନୀ ଆଜ୍ଞା, ଯେଉଁ ଦିନ ଫେରିବାକୁ ଆପଣଙ୍କ ହୁକୁମ ନାମାଟି ପାଇବି, ଠିକ ସେଇ ଦିନ ବାବୁଙ୍କୁ ଧରି ଲେଉଟି ଆସିବି । ମୁଁ ଯାଉଛି ଖାସ ଆପଣ ସୁଖ ଶରଧା ପାଇଁ ଜାଣିବେ । ଆପଣଙ୍କ ମଙ୍ଗଳ ପାଇଁ ।

ଭିତରକୁ ଫେରିପଡ଼ି ସୁବର୍ଣ୍ଣ ଦେଇ ନିଜ ପଲଙ୍କ ଉପରେ ମୁହଁ ମାଡ଼ି ଶୋଇ ପଡ଼ିଲେ, ଘଡ଼ିଏକାଳ । ତାଙ୍କର ଆଖି ଆଗରେ ଡକାଏତଟାଏ ତାଙ୍କ ସ୍ୱାମୀଙ୍କୁ ନେଇ ପଳାଉଛି । ତାପରେ ପାଖ ଘରକୁ ଯାଇ ରାୟ ସାହେବଙ୍କ ପାଇଁ ସଜା ହୋଇଥିବା ପଲଙ୍କଟି ଉପରେ ଗଡ଼ି ପଡ଼ିଲେ । ସେଇଠି ତାଙ୍କୁ ନିଦ ହୋଇଗଲା । କାଲି ଦିନ ଦଶଟା ବେଳକୁ ବଗି ଗାଡ଼ିଟା ଆସି ପହଞ୍ଚିବ । ଓହ୍ଲେଇ ଆସିବେ ରାୟ ସାହେବ ।

ଠିକ୍ ତହିଁ ଆରଦିନ ଯଥାବେଳକୁ ବଗିଗାଡ଼ି ଲାଗିଲା ଏବଂ ରାୟସାହେବ ନକୁଳବାବୁ ଧୀରେ ଧୀରେ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ସୁବର୍ଣ୍ଣ ଆଗେଇ ଆସି ପାଦରେ ହାତମାରି ନମସ୍କାର କଲା ଏବଂ ଭିତର ମହଲକୁ ପାଛୋଟି ନେଇଗଲା । କୋଠିଆ ଖିମାରେଇ ଏବଂ ପୂଜକ ଆସି ନମସ୍କାର କଲେ । ଗୁମାସ୍ତା ଓଳଗି ହେବାରୁ କହିଲେ—କାଗଜପତ୍ର ଠିକ୍ ଅଛିତ ? କାଲି ମୁଁ ସାଲତମାମୀ ହିସାବ ଦେଖିବି ।

ଖମାରକୁ କହିଦିଅ, କାଲି ଭୋରୁ ଧାନ ବେଙ୍ଗଳା ଆରମ୍ଭ ହେବ । ପାଞ୍ଚଦିନ ଭିତରେ ଅମଳ ଦମଳ ଯେମିତି ସରିବ ।

ଘରେ ମେନକା ନ ଥିବାରୁ ଠିକା ଚାକରାଣୀ ନଡ଼ିଆ ମାଆ ପାଣିଢ଼ାଳେ ଆଣି ଅପେକ୍ଷା କରିଛି । ନିଜେ ସୁବର୍ଣ୍ଣଦେଈ ରାଘୁସାହେବଙ୍କ ପାଦରୁ ଫିତା ଫିଟାଇ ଜୋତା କାଢ଼ିନେଲେ । ମୋଜା କାଢ଼ିଦେଲାରୁ ନଡ଼ିଆ ମାଆ ପାଦ ଧୋଇ ଗାମୁଛରେ ପୋଛିଦେଲା । ପୂଜାରୀ ଆସି ଚଉଡ଼ା ବାରଣ୍ଡା ଉପର ଟେବୁଲରେ ଥୋଇଦେଲା—ଗୁଡ଼ା ଓ ଜଳଖିଆ । ଗୋଟିଏ ଚୌକି ଉପରେ ରାଘୁ ସାହେବ ବସିଲେ ଏବଂ ଆଉ ଖଣ୍ଡେ ଚଉକିରେ ବସି ପଡ଼ିଲେ ସୁବର୍ଣ୍ଣଦେଈ । ପୂଜାରୀ ସୁବର୍ଣ୍ଣଙ୍କ ପାଇଁ ଚା ଓ ଜଳଖିଆ ଆଣି ଥୋଇଲା । ରାଘୁ ସାହେବ ହସି ହସି କହିଲେ—ଆଗ ହୋଇ ଖାଇବା ।

ମୃଦୁହସି ସୁବର୍ଣ୍ଣ ଟେବୁଲ ଉପରକୁ ହାତ ବଢ଼ାଇ ଚା କପ ଉଠାଇ ନେଲା ।

× × ×

ମେନକା ଚକି ପର ଘୂରୁଚି । ହରିମୋହନ ଶୋଇବସି ସମସ୍ତ କଟାଉଛନ୍ତି । ଖମାର ଘରର ଦାଣ୍ଡ ପଟକୁ ରହୁଛନ୍ତି ଗୁମାସ୍ତା ଜଣେ, ମୋହରିର ଜଣେ, ଏବଂ ଖମାରେଇ ଜଣେ । ମେନକା ବରାଦରେ ଏବଂ ଖମାରେଇର ଯୋଗାଡ଼ରେ ରାତି ଶେଷ ପହରକୁ ଦୁଇ ଦୁଇଟା ଖଳାରେ ଦୁଇ ଦୁଇଟା ବେଙ୍ଗଳା ଯୋଚା ଯାଉଛି । ବଡ଼ ବଡ଼ ବେଙ୍ଗଳା । ଉଠୁ ଉଠୁ ଦିନ ଦୁଇଟା କି ତିନିଟା । ଧାନସିଂଘା ଉଡ଼ା ସରୁ ସରୁ ରାତି ଘଡ଼ିଏ ହି ଘଡ଼ି । ମେନକା ନିଜେ ଠିଆହୋଇ ଧାନ ମପଉଛି । ଗୋଟାଏ ବଡ଼ଘରେ ଅମଳ ଧାନ ଗଦା ହେଉଛି । ମେନକା ଗୋଟାଏ ଛିପା ଖାତାରେ ଧାନର ପରିମାଣ ଟିପି ରଖୁଛି । ଦେଢ଼ୀଧାନ ବି ଆଦାୟ ହେଉଛି । ତାର ହିସାବ ରଖୁଚି ମେନକା । ହରିମୋହନ ବାବୁ ପୂରା ନିଶ୍ଚିନ୍ତ । ମେନକାର ଘର ପ୍ରଶଂସା—

ତୁ ତ ସବୁ ବୁଝୁଚୁ ମେନକା । ସବୁ ହିସାବ ରଖୁଚୁ । ମୁଁ କଅଁ ଆସିଲି ?

ମେନା—ହସିଦେଇ କହୁଥାଏ—ଆପଣ ଆସିଚନ୍ତି ମୋ ଉପରେ ହାକମ ହୋଇ । ମୁଁ ହେଲି ଆପଣଙ୍କ ଗୃହକର୍ତ୍ତୀ ମାତ୍ର ।

ସାଆନ୍ତ ଘରେ ବଡ଼ିଲାବେଳେ ମେନକା କିଛି ପାଠ ପଢ଼ି-ଥିଲା । ହିସାବ କିତାପ ରଖି ଜାଣିଥିଲା । ଆଜି ସେତକ କାମରେ ଲାଗୁଚି । ଗୁମାସ୍ତାଏ ବାବୁଙ୍କୁ କିଛି କଥା ପଚାରିଲେ ସେ କହୁଚନ୍ତି— "ମେନାକୁ ପଚାର, ।" ଆସିଲା ହିନୁ ସମସ୍ତ ଦେଖୁଚନ୍ତି ମେନକା ହିଁ ସବୁ । ବାବୁ ନାମକୁ ମାତ୍ର ଆସିଚନ୍ତି । ବାହାର ବରାଦ ସାଙ୍ଗକୁ ଘରର ବରାଦ ବି ବୁଝୁଚି ସେ ନିଜେ—କଅଣ କଅଣ ରନ୍ଧା ହେବ, କଅଣ କଅଣ ଜଳଖିଆ ତିଆରି ହେବ । ପନି, ପରିବା, ଘିଅ, ଦୁଧ କେଉଁଠୁ କେତେ ଆସିବ । କେଉଁ ପୋଖରୀରୁ କେତେ ମାଛ ଧରାଯିବ । କେତେବେଳେ ବାବୁ କଅଣ ଖାଇବେ । କେତେବେଳେ ବୁଲିଯିବେ । କେତେବେଳେ ଖାଇ ପିଇ ଶୋଇବେ । ସବୁ କଥାର ବରାଦ କରି-ଯାଉଚି ମେନା । ହାଣ୍ଡି ହାଣ୍ଡି ଘିଅ, ଦୁଧ, ଦହି, ଛେନା ଓ ବଡ଼ ବଡ଼ ରୋହି ଭାକୁର ମାଛର ଭାର ମୂଲିଆ ଚାକରଆଙ୍କ ଦ୍ୱାରା ସହରକୁ ପଠେଇ ଦେଉଚି ମେନା । ତେଣେ ନକୁଳବାବୁ ଏବଂ ସୁବର୍ଣ୍ଣ ମହା ଖୁସିରେ କହୁଚନ୍ତି—"ଭାଗ୍ୟରେ ଥିଲେ ମେନକା ପରି ଗୃହକର୍ତ୍ତୀଟିଏ ମିଳିଥାଏ ।" ଏଣେ କିଏ ସବୁ ଆସି ହିଗମ୍ବରବାବୁଙ୍କୁ ଦେଖା କରୁଚନ୍ତି, ଗାଁ ସ୍କୁଲ ପାଇଁ ଚାନ୍ଦା ମାଗୁଚନ୍ତି, ରାସ୍ତାଘାଟ ପାଇଁ ଚାନ୍ଦା ଚାହୁଁଚନ୍ତି । ବାବୁ ପଠେଇଦେଉଚନ୍ତି ମେନକା ପାଖକୁ । ମେନକା କହୁଚି—ମୁଁ ତ ଆଜ୍ଞା ଦାସୀ ଚାକରାଣୀ ଲୋକ । ଆପଣ ସଦର ଅଫିସକୁ ଦରଖାସ୍ତ ପଠାନ୍ତୁ ।

ଗରିବ ଗୁରୁବା ଆସିଲେ ମେନା ଧାନ ଚାଉଳ କିଛି କିଛି ଦେଇ ବିଦାୟ କରୁଚି । ବଜପୁର ଖମାରରେ ହୋ ହା ଘୋ ଘା ଲାଗିରହିଚି । ସମସ୍ତଙ୍କ ତୁଣ୍ଡରେ ମେନାର ପ୍ରଶଂସା । ଯିଏ ଆସୁଚି ସିଏ ମେନାକୁ ଆଗ ସାକ୍ଷାତ କରୁଚି ।

ଗାଧୁଆ ଭୁଠରେ ମାଇପୀ ସଭାରେ ମେନକା କଥା ହିଁ ଏକମାତ୍ର ଆଲୋଚନାର ବିଷୟବସ୍ତୁ । ନାକ ବସଣୀକୁ ଦାନ୍ତ କାଠିରେ ମାଜି ସଫା କରୁ କରୁ ରାଧୀ ପଚାରୁଛି ରତମାକୁ—ହଇଲେ ଅପା, ଇଏ କେମିତିଆ ଦାସୀ ମ ! ବାବୁଙ୍କୁ ତ କାବୁ କରି ରଖିଛି । ଇଏ ତ ସବୁ, ବାବୁ କିଏଣ ?

ହାହାଘସା କନା ଖଣ୍ଡିକରେ ହଳଦୀ-ମଖା ମୁହଁଟାକୁ ଘସି ସଫା କରସାରି ଲବଣୀ କହୁଛି—ଭିତିରିକଥା କିଏ କାହୁଁ ଜାଣିବ ଲୋ ମାଆ—ବଡ଼ ଘରେ ବଡ଼ କଥା । ମେନକା ତ ସାଆନ୍ତାଣୀଠଉଁ ବଳି ପଡ଼ୁଛି । ଚମ୍ପା-ମା ବାଡ଼ିକାଣୀ ଯାଇଥିଲା ଯେ—କହୁଥିଲା—ବାବୁ ଶୋଉଛନ୍ତି ଏ ଘରେ ତ, ମେନା ଶୋଉଛି ସେ ଘରେ । ଭିତରେ ଭିତରେ ବାଟ । ବାବୁଙ୍କ ପଲଙ୍କ ଉପରେ ଲଗ ଲଗ ଯୋଡ଼ିଏ ତକିଆ ପଡ଼ୁଛି । ଚାକରାଣୀ କିଆଁ ସେ ହେବ ଗୋ ? ସେ ତ ଖୋଦ ସାଆନ୍ତାଣୀ ।

ରତମା ହୁସିଆର କରାଇ ଦେଇ କହିଲା—ଚୁନପଡ଼ ଲୋ, କିଏ କାଲେ ଶୁଣିବ । ସେ ଚାକରାଣୀ ହଉ କି ସାଆନ୍ତାଣୀ ହଉ, ସମ୍ପତ୍ତିର ମାଲିକଆଣୀ ଆଉ ଜଣେ । ଅଖ ତିଲୁ କୁ ଚକ ତିଲା ।

ବଡ଼ ଘରେ ବଡ଼ ଗୁମର କଥା ।
ଗରିବ ଲୋକକୁ ଲାଗଇ ବ୍ୟଥା ।

ଚୁନପଡ଼, ଚୁନପଡ଼ । ଜୋଇଁ ବାବୁ ତ ତାକୁ ସଙ୍ଗରେ ଧରି ଆସିଛନ୍ତି । ମଉଜ କରୁଛନ୍ତି । ତେଣେ ମାଲିକଆଣୀ ପାଖରେ ଭିଡ଼ାଣାଇ ସାଆନ୍ତେ ।

ଲବଣୀ ହଠାତ ତା ମୁହଁରେ ହାତ ଦେଇ କହିଲା—ଚୁନ ହ କହୁଛି ।

ବଡ଼ ଲୋକଙ୍କୁ ଉତ୍ତର ନାହିଁ,
ସରଗକୁ ନିଶୁଣୀ ନାହିଁ ।

× × ×

ପାଣ୍ଡବନ ପାଇଁ ଆସି ପୂଗ ପନ୍ଦର ଦିନ ରହି ସାରିବା ପରେ ବି ଗପୁ ସାହେବଙ୍କ ମନ ଉଠୁ ନାହିଁ । ସୁବର୍ଣ୍ଣ ଧରି ବସିଛନ୍ତି —ଏଥର ମୁଁ ଯାଇନା, ତୁମରି ସଙ୍ଗରେ ଯିବି । ଏଠି ମୁଁ ଏକୁଟିଆ ରହିପାରିବି ନାହିଁ ।

ଗପୁସାହେବ—ଏକୁଟିଆ କଅଣ ? ଦିଗମ୍ବର ତ ଆସିଯିବ । ଯାହା ଯେମିତି ହଉ—ସବୁ ଚାଲିଛି ଲୁଚା ଛପାରେ । ପରକୀୟାକୁ ପ୍ରକଟ କରିଦେଲେ ଲୋକେ କଅଣ କହିବେ ? ଦିଗମ୍ବର ବି କଅଣ ଭାବିବ ?

ସୁବର୍ଣ୍ଣ—ମୋର ମନ ଉପରେ ମୁଁ ରଜା । କିଏ କଅଣ କହିବ, କିଏ କଅଣ ଭାବିବ, ସେ କଥାକୁ ଅପେଇବାକୁ ମୋର ବେଳ ନାହିଁ ।

ଗପୁସାହେବ—ନାମିର ମନର ଅବସ୍ଥା କଅଣ ହେବ ?

ସୁବର୍ଣ୍ଣ—ମୁଁ ନାମି ଫାମି ଜାଣେନା । ତୁମକୁ ଛାଡ଼ିଦେଲେ ମୁଁ ତ ବଞ୍ଚି ରହି ପାରିବି ନାହିଁ । କହିବ ତ କାଲି ଭୋର ନଈ ପୋଖରୀକି ଡେଇଁ ପଡ଼ିବି ।

ଗପୁସାହେବ ଗୁମ ହୋଇ ଦିନେ ଖଣ୍ଡେ କଟାଇଲେ । ତା ପରେ କହିଲେ—ହଉ, ତୁ ଯାହା ଭଲ ମନେ କରୁଛୁ, ତାର ଉପାୟ କର । ଆମର ଗାଁରେ ପକ୍‌କା ଘରଟାଏ ତୋଳା ହେବାର ଅଛି । ନାମିକି ସେହିଠାରେ ରଖାଇବି ଯେ ସେ ତାର ବରାଦ କରିବେ ଏବଂ ତଦାରଖ ନେବେ । କିନ୍ତୁ ଏଠା ଜଞ୍ଜାଳ ଗୁଡ଼ା ତୁ ଯିବୁ କେମିତି ?

ସୁବର୍ଣ୍ଣ—ଯିବି ତ ଚାଲି, ଯିବି କେମିତି କଅଣ ହେ ? କଟକରେ ଥାଇ ତୁମେ କଅଣ ଏତକର କିଛି ଗୋଟାଏ ବ୍ୟବସ୍ଥା କରି ପାରିବ ନାହିଁ ? ସାନ ଜୋଇଁ ଉପରେ ଏଠାକାର ଜଞ୍ଜାଳ ଗୁଡ଼ା ଦେଉନା । ମୁଁ କଟକରେ ରହିଲେ ସେ କଅଣ ମଝିରେ ମଝିରେ କଟକ ଆସି ପାରିବେ ନାହିଁ ?

ରାୟସାହେବ ଗୁମ୍ ଖାଇଲେ । ମନେ ମନେ ଭାବିଲେ— ସମ୍ପତ୍ତି ବାଡ଼ ରକ୍ଷଣା ବେକ୍ଷଣ ବିଷୟରେ ଚାକରାଣୀ ମେନକା ଦିଗମ୍ବର ଠାରୁ ଭଲ । ପ୍ରକାଶ୍ୟରେ କହିଲେ—ତୁ ଯାଇ କଟକରେ ରହିଲେ ତାର ମନର ଅବସ୍ଥା କଅଣ ହେବ ଅନୁମାନ କରି ପାରୁଛୁ ତ ?

ସୁବର୍ଣ୍ଣ କହିଲେ—"ଗୁଡ଼ଲା ଗାଆଁକୁ ବାଠ କଏ ?" ତାଙ୍କ ମନର ଅବସ୍ଥା କଅଣ ହେବ ସେ କଥା ଭାବିବାକୁ ମୋର ଅବକାଶ ନାହିଁ । ବୋଇଲା--

ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କ କାରଣେ ?

ସବୁ ଛାଡ଼ି ତୁମକୁ ଯେତେବେଳେ ଆଶ୍ରା କରିନେଲି, ମୁଁ ଅଉ ମୋର ସବୁ ତକ ଧନ ସମ୍ପତ୍ତି ସବୁ ତ ତୁମର ।

ଘଡ଼ିଏ ଚୁପ ରହି ରାୟସାହେବ କହିଲେ— ତେବେ ମେନାକୁ ସଙ୍ଗେ ସଙ୍ଗେ ଚିଠି ଦେ, ଫେରି ଆସିବାକୁ । ଦିଗମ୍ବର ବରଂ ସେଠା କାମ ସାରି ପଚରେ ଫେରିବ । ଗହଣାଗାଣ୍ଠି, ଟଙ୍କା କଉଡ଼ି ଏବଂ ଦଲିଲ ଦସ୍ତାବିଜ ସାଙ୍ଗରେ ଧରି ।

"ହଉ" ବୋଲି କହି ସୁବର୍ଣ୍ଣ ଉଠିଗଲେ । ଚିଠି ଖଣ୍ଡିଏ ଲେଖିଲେ—

ମେନା ଜାଣିବୁ,

କଟକରେ ନାନାଙ୍କ ଦେହ ଅତିଶୟ ଖରାପ ଥିବାର ଜରୁରି ଖବର ଆସିଛି । ବିକଳ ହୋଇ ରାୟସାହେବ କଟକ ଫେରି ଯିବାକୁ ବସିଛନ୍ତି । ମୁଁ ବାପା ବୋଉଙ୍କୁ ହରାଇଛି । ଏକା ଅଛନ୍ତି ନାନା । ତାଙ୍କ ଦେହ କଥା ଜାଣି ମୋ ମନ ଅତିଶୟ ଖରାପ । ଭାଇନାଙ୍କ ସଙ୍ଗରେ ମୁଁ କଟକ ଯିବି । ତୁ ସଙ୍ଗେ ସଙ୍ଗେ ଆସିବୁ । ବାବୁଙ୍କୁ କହିବୁ ମୋ ଲାଗି

ବ୍ୟସ୍ତ ହେବେ ନାହିଁ । ସେଠା କାମ ଧୀରେ ସୁସ୍ଥ ସାରି ଫେରି ଆସିବେ । ଇତି ।

ଜଣେ ବାହକ ହାତରେ ଚିଠିଟି ଗଲା । ତହିଁ ଆରଦିନ ସଞ୍ଜକୁ ମେନକା ଫେରିଆସି ଘର ଗୁଡ଼ାକର କୁଞ୍ଚିକାଠି ତାଙ୍କ କାନରେ ବାନ୍ଧି ଦେଇଗଲା । ତହିଁ ଆରଦିନ ଘେରର ଘେରର ରାୟସାହେବଙ୍କ ସଙ୍ଗରେ ଘୋଡ଼ାଗାଡ଼ିରେ ବସି ସୁବର୍ଣ୍ଣ କଟକ ଗଲେ । ମେନକା ଭାଗ୍ୟରେ ପଞ୍ଚମ ବୃହସ୍ପତି । ଏତେବଡ଼ ସଂସାରରେ ସେ ହେଲା ସର୍ବମୟୀ କର୍ତ୍ତ୍ରୀ ।

ଚିଠି ଖଣ୍ଡିକ ପାଇ ମେନକା ବଳଭୁର ଖମାର ଗୁଡ଼ ଉଠିଲା । ଭଲୁଆଙ୍କ ଭଳି ବସି ବସି ଦିଗମ୍ବର ଭାବିଲେ—ଚିଠି ଆସିଲା ମେନକା ପାଖକୁ । ମୁଁ ତେବେ କଅଣ ମେନକା ଠାରୁ ଅଧମ ! ଗୁମାସ୍ତା, ମୋହରିର ଚାକର, କୋଠିଆ ଠାରୁ ହୀନ ! ବସି ବସି ଦିଗମ୍ବର କେବଳ ଭାବିବାକୁ ଲାଗିଲେ—ବଡ଼ ଘରର ଝିଅକୁ ବିଭା ହେବା ଭୁଲ ଏବଂ ବଡ଼ ଘରେ ଘର-ଜୋଇଁଆ ହୋଇ ରହିବା ତହୁଁ ବଳି ଭୁଲ । କିନ୍ତୁ ସବୁ କଥା ତ ସରି ଯାଇଛି ! ଏବେ ଉପାୟ କଅଣ ? ଘର ପୁଅ ଘରକୁ ଲେଉଟି ଯିବାପାଇଁ ଉପାୟ ମଧ୍ୟ ନାହିଁ । ଅଳ୍ପ ହେଉ ପଛକେ ସେଠାରେ ଥିବା ଘରଦ୍ୱାର ଓ ଜମିବାଡ଼ି ତାଙ୍କ ଆଉ ଭାଇ ଦି ଜଣଙ୍କ ମଧ୍ୟରେ ବଣ୍ଟାକୁଣ୍ଟା ସରିଲାଣି । ବାପା ବୋଉ ନାହାନ୍ତି ଯେ କିଛି ବ୍ୟବସ୍ଥା କରିଦେବେ । ବାକି ରହିଲା ଏକମାତ୍ର ବାଟ ଚାକିରି । କିନ୍ତୁ ମେନକାଟା ତାକୁ ଅଠାକାଣ୍ଡିଆରେ ଧରି ପକାଇ ପୂରାପୂରି କାବୁ କରି ଦେଇ ସାରିଲାଣି । ଏତେବେଳେ କାହିଁକୁ ଆଉ ସେ ପଳାଇ ଯିବ ?

ଅନେକ ଦିନ ହେଲା ଦିଗମ୍ବର ଭିତରେ ଭିତରେ ଅତିବଡ଼ ଅଭାବଟିଏ ଅନୁଭବ କରି ଆସୁଛନ୍ତି । ସୁବର୍ଣ୍ଣର ଗୁଡ଼ ଗୁଡ଼ ଭାବ ସାଙ୍ଗକୁ ବନ୍ଧୁବାନ୍ଧବ ଓ ଚାକରବାକରଙ୍କ ଅବଜ୍ଞା । ମଣିଷ ଜୀବନରେ ଖାଇବା ପିଇବାଟା ବଡ଼ କଥାଟାଏ ନୁହେଁ । ଅନ୍ତର ଭିତରଟା ତାର ସର୍ବଦା ଖାଁ ଖାଁ ହୋଉଛି । ଠିକ୍ ଏଇ ଅବସ୍ଥାରେ ପଡ଼ି ଅନେକେ ନିଶା ପାଣି ଅଭ୍ୟାସ

କରି ଥାଆନ୍ତି । ଠିକ ସେଇ ନିଶାପାଣି ପରି ଦିଗମ୍ବର ମେନକାର ଆଶ୍ରୟ ନେଉଛନ୍ତି । ମାତ୍ର ଦେଖୁଛନ୍ତି ସେ ବି ହାତ ମୁଠା ଭିତରେ ପୂରା-ପୂରି ଧରା ପଡ଼ୁ ନାହିଁ । ନିଜର ସ୍ତ୍ରୀ ହୋଇ ସୁବର୍ଣ୍ଣ ତା ପାଖକୁ ଚିଠି ଦେଉନାହିଁ । ମେନକା ବି ତାର ହିଁ ନାହିଁ, ସୁବିଧା ଅସୁବିଧାକୁ ଅପେକ୍ଷା ନ କରି ଏକା ଏକା ଠୁଂ ଠୁଂ ଚାଲିଯାଉଛି । ଗୃହକର୍ତ୍ତ୍ରୀ ସୁବର୍ଣ୍ଣର ସ୍ୱାମୀ ହୋଇ ସୁଦ୍ଧା ସେ ଏ ଘରେ କର୍ତ୍ତା, କର୍ମ, କରଣ କିଛି ନୁହେଁ ତେବେ ?

ଦିଗମ୍ବର ଗୁମ ଖାଇ ବସି ରହି କେବଳ ଭାବି ହେଉଛନ୍ତି—ମୁଁ ତେବେ କିଏ ଏ ଘରେ ?



ସବୁ ପ୍ରକାରରେ ଅବହେଳିତ, ଲାଞ୍ଛିତ ଦିଗମ୍ବର ସାତ ଆଠଦିନ ପରେ ସୁଭଦ୍ରାଦେଇ ପୁରକୁ ଫେରିଆସି ଦେଖିଲେ—ଗୃହ-କାଠି ପୁଳାକ କାନରେ ବାନ୍ଧି ପିଠି ଉପରକୁ ପକାଇ ଦେଇଛି ମେନକା । ଗୃହର ବାହାର ସମସ୍ତଙ୍କ ଉପରେ ହୁକୁମ ଜାରି କରି ଚାଲିଛି । ସାମାନ୍ୟ କେଇଟା ଦିନ ଭିତରେ ସେ ଆଉ ପ୍ରକାରରେ ହୋଇ ଗଲାଣି । ରାୟସାହେବଙ୍କ ସଙ୍ଗରେ ସୁବର୍ଣ୍ଣଦେବୀ କଟକ ଚାଲି ଯାଇଛନ୍ତି । ମକଦ୍ଦମ ସୁଦର୍ଶନ ଚଇନ ଥରକୁ ଥର ଆସି ତତ୍ତ୍ୱ ନେଉଛନ୍ତି—କିଛି ଚିନ୍ତା ନାହିଁ ମେନକା, ମୁଁ ଅଛି । ତୁ ହେଲୁ ମାଇପି ଲୋକ । ଆଉ ମୁଁ ହେଲି ଏ ଗାଁର ମୁରବୀ । ତୁ ତ ଜାଣୁ ମୁଁ କେଡ଼େ ଆପଣାର । ସୁବର୍ଣ୍ଣର ସମ୍ପତ୍ତିବାଡ଼ି ଉପରେ ମୁଁ ନିଶ୍ଚେ ନଜର ଦେବି, ଯେମିତି କି ଏଠୁ କଡ଼ାଏ କଉଡ଼ି ନଷ୍ଟ ନ ହୁଏ ।

ବାସ ପାଇଁ ମହୁମାଛି ଧାଇଁ ଆସେ । ଏ ଘରେ ଧାନ ଅଛି, ଧନ ସମ୍ପତ୍ତି ବି ଅଛି । ସୁବର୍ଣ୍ଣ ନ ଥିଲେ ମେନକା ବି ଅଛି । ଦିଗମ୍ବର ଥାଇ ନ ଥିଲା ସଙ୍ଗେ ସରି । ମେନକା ଦେଖୁଛି ମଧୁପୂର୍ଣ୍ଣ ଫୁଲ ପାଖକୁ ଭଅଁରମାନେ ଧାଉଁଛନ୍ତି । ଆସନ୍ତୁ କିଏ କେତେ ଆସୁଛନ୍ତି । କେହି ଆପଣାର ନୁହଁ କି କେହି ପର ନୁହଁ । ନିଆଁ ଜଳୁଛି । ଆସନ୍ତୁ କିଏ କେତେ ପତଙ୍ଗ ଆସୁଛନ୍ତି ।

ଚିନ୍ତିତ ଦିଗମ୍ବର ମେଲାଘରେ ଏକୁଟିଆ ଏକୁଟିଆ ଚାଲୁଛି । ଭଣ୍ଡାର ଘରକୁ ନଜର ଦେବା ବାହାନାରେ ମେନକା ଶୋଉଛି ଶେଷ ଖଞ୍ଜାରେ । ହୁଏ ତ ଏବେ ସେ ବାଡ଼ି ଦ୍ୱାର ବାଟେ ଅପେକ୍ଷା କରି ରହିଛି—ମକଦ୍ଦମ ଚଇନବାବୁଙ୍କ ପାଇଁ । ବେଶି ରାତିପାକେ ଦିଗମ୍ବର

ବାହାରେ ବାହାରେ ସମସ୍ତ କଟାଇ ଦେଉଛନ୍ତି । ଆଜ ଆଖଡ଼ା ଘରେ ନାଟ ପିଲାଏ ନାଟ କରୁଛନ୍ତି ତ କାଲି ଚଉପାଢ଼ୀ ଉପରେ ତାସ ପଶା ଓ ଖଞ୍ଜାପା ଖେଳ ଚାଲିଛି । ପଅରଦିନ ହୁଏ ତ ଭଙ୍ଗ ଘୋଟାର ମାଝା ବଢ଼ିବା ସଙ୍ଗେ ସଙ୍ଗେ ଧୁତୁରା ବାଜର ବ୍ୟବସ୍ଥା ହୋଇଛି । ଜେଗା ଘରେ ଗୋଟାଏ ଗୋଟାଏ ରାତି କଟିଯାଉଛି । ହାତ ଖରଚ ପାଇଁ ଟଙ୍କା କଉଡ଼ି ଦରକାର ପଡ଼ିଲେ ଗୁମାସ୍ତା କହୁଛି—ମେନାକୁ ମାଗନ୍ତୁ । ଶେଷକୁ ମେନକା ପାଖରେ ହାତ ପତାଇବାକୁ ପଡ଼ୁଛି । ମାଲିକଆଣୀର ସ୍ୱାମୀ ହୋଇ ଦିଗମ୍ବର କଳ୍ପନାରେ ସୁଦ୍ଧା ଏ କଥା ଭାବି ନ ଥିଲେ । ଦୁର୍ଗବନାର ଭଉଁର ଭିତରେ ପଡ଼ି ତାଙ୍କର ମସ୍ତିଷ୍କବିକୃତି ଘଟିଲାଣି । ବସିଛନ୍ତି ତ ବସିଛନ୍ତି, ବୁଲୁଛନ୍ତି ତ ବୁଲୁଛନ୍ତି, ଶୋଉଛନ୍ତି ତ ଶୋଉଛନ୍ତି । ଏବେ ଖୋଜିଲେ ମେନକାର ବି ସାକ୍ଷାତ ମିଳିବା ଦୁଷ୍କର ହୋଇ ପଡ଼ୁଛି । ପେଟର କ୍ଷୁଧା ସାଙ୍ଗକୁ ପ୍ରାଣୀମାନେ ସମସ୍ତଙ୍କର ମନ ଓ କାମନା ବାଞ୍ଛନାର କ୍ଷୁଧା ମଧ୍ୟ ଥାଏ । ସୁବର୍ଣ୍ଣ ସ୍ୱପ୍ନ ହେଲା ଏବଂ ମେନକା ଦୂରେଇ ଗଲା । ଦାଣ୍ଡଘରେ ଏକୁଟିଆ ଏକୁଟିଆ ପଡ଼ି ରହୁଛନ୍ତି ସେ ଏବଂ ଦାଣ୍ଡ ବରଣ୍ଡା ଉପରେ ମଶିଣା ପାରି ଶୋଉଛନ୍ତି, ଚାକର ପିଲା—ସନ୍ତପିଏ ସାମଲ । ଭଙ୍ଗର ମାତ୍ରା ଯେତେ ବଢ଼ାଇ ଦେଲେ ସୁଦ୍ଧା ସାରା ରାତି ଆଖି କସା ହେଉନାହିଁ । ଏହିଭଳି ଭାବେ ତିନି ଚାରିଟି ମାସ କଟିଲା ।

ସେଦିନ ଭୋର ହୋଇ ନାହିଁ କି ଅନ୍ଧାର ଛାଡ଼ିନାହିଁ । ଖଟଟି ଉପରେ ବସିରହି ଦିଗମ୍ବର ଏଣୁ ତେଣୁ ଭାବୁଛନ୍ତି । କବାଟଟା ଦରଆଉଜା ହୋଇଛି । ଦେଖିଲେ ଭିତର ଅଗଣାରୁ ଦି ଜଣ କିଏ ଛୁଇ ଛାଇ ହୋଇ ବାହାରି ଆସିଲେ । ଦାଣ୍ଡଘର କବାଟଟି ଧୀରେ ଫିଟିଲା । ଜଣେ ବାହାରିଗଲା ପରେ କବାଟଟି ଭିତର ପଟୁ ବନ୍ଦ ହେଲା । ତା ପରେ ଭିତର ଆଡ଼କୁ ଚାଲି ଚାଲି ଫେରିଗଲା କିଏ ଜଣେ । ଧୀରେ ଉଠିଆସି ତା ପିଛା ଧରି ଅଦୃଶ୍ୟ ଭାବେ ଚାଲିଲେ ଦିଗମ୍ବର । ଗୋଟାଏ ଅଗଣା ଟପି ଆର ଅଗଣାର ପିଣ୍ଡା ଉପରକୁ ଉଠି ହାତଟାକୁ ପଛଆଡ଼ୁ ଧରି ପକାଇ ପଚାରି ଦେଲେ—କିଏ ? ମେନା ?

ଜବାବ ନାହିଁ । ମେନାର ହାତ ଥରୁଛି କିନ୍ତୁ ।

—ସେ କିଏ ଗଲା । ଚିହ୍ନନା ନା ?

ଉତ୍ତର ଦେଇପାରୁ ନାହିଁ ମେନକା ।

—ଏଇଥିପାଇଁ ତୁ ମୋ ପାଦଛୁଇଁ ଦିନେ କହିଥିଲୁ ପରା—?

ଆଉ କିଛି ଦିଗମ୍ବର କହିପାରିଲେ ନାହିଁ । ଜୋର କରି ନିଜ ହାତଟାକୁ ଛଡ଼ାଇ ନେଇ ମେନକା ଘର ଭିତରକୁ ପଶିଯାଇ ଭିତରୁ କବାଟ କିଳିଦେଲା ।

କାଠ ଖଣ୍ଡେ ପରି ସେଇଠି ସେମିତି କିଛି ସମୟ ଠିଆହୋଇ ରହିଗଲେ—ଦିଗମ୍ବର । ତା ପରେ ଦାଣ୍ଡ ଘରକୁ ଲେଉଟି ଆସିଲେ । ଭାବିଲେ—ବୋଧହୁଏ ସଂସାରଟା ଏଇଆ । ପୁଣି ବଡ଼ଘର କଥା ! ଏ ଘରେ ବାଭାହୋଇ ମୁଁ ମୋର ସର୍ବନାଶ କରିଛି । ଏ ଘରର ଗୃହିଣୀଟାକୁ ମଧ୍ୟ ବିଶ୍ୱାସ ନାହିଁ । ମୁଁ ଥିଲି ଗରିବ ପିଲା—ପାରମ୍ପରିକ ସଞ୍ଜମ ଓ ନୈତିକତା ଥିଲା ମୋର ବଂଶଗତ ସମ୍ବଳ । ଏଠିକି ଆସି କୁହୁଡ଼ି ପଡ଼ିଗଲା । ଆଣ୍ଠୁଗଣ୍ଠି ଛିଡ଼ିଗଲା । ଏଥର ଆଉ କାହିଁକି ଏ ଖେଳ ?

ଦିନ ପହିଲେ ଛଅଘଡ଼ି ବେଳକୁ ତେଲ ଲଗାଇ ଗାମୁଛା ଖଣ୍ଡେ କାନ୍ଧରେ ପକାଇ ଧୀରେ ଧୀରେ ଚାଲିଗଲେ—ନଈ କୂଳକୁ । ସେତେବେଳେ ସାପୁଆ ନଈରେ ଅଥଳ ପାଣି ଓ ପ୍ରଖର ସୁଅ । ଗାଁ ତୁଠରେ କିଏ କେତେ ଗାଧୋଉଛନ୍ତି । ଦିଗମ୍ବର ଭିତରକୁ ପହଁରିଗଲେ । ଦେଖୁ ଦେଖୁ ଗଣ୍ଡ ଭିତରକୁ ଚାଲିଗଲେ । ଚାଲିଗଲେ ଏବଂ ବୁଡ଼ିଗଲେ । ଗାଧୋଉଥିବା ଲୋକେ ହାଁ ହାଁ କରି ପାଟି କରି ଉଠିଲେ । ଘାଟରେ ବନ୍ଧା ହୋଇଥିବା ଘାଟ ଡଙ୍ଗା ଛଡ଼ାଗଲା । ଦି କୂଳର ଲୋକେ ତଳ ମୁହାଁ ଧାଇଁଲେ । ଅଧ ଘଣ୍ଟାକ ପରେ ଦି ତିନି ମାଇଲ ତଳକୁ ନଈ ଚଡ଼ା ତଣ୍ଡି ବଣରେ ଲାଗିଲା ଦିଗମ୍ବରଙ୍କ ମୃତ ଶରୀରଟା । ଦିନ ବାରଟା ବେଳକୁ ଶବଟାକୁ ଆଣି ଲୋକେ ଦାଣ୍ଡ ଅଗଣାରେ ପହଞ୍ଚାଇ ଦେଲା-ବେଳକୁ ଗାଁଟା ଯାକର ଲୋକେ ରୁଣ୍ଡ ହୋଇ ସାଇଛନ୍ତି । ଗାଁ ଡାକ୍ତରଖାନା ଡାକ୍ତରବାବୁ ଆସି ପରୀକ୍ଷା କରି କହିଲେ—ଶେଷ ହୋଇ

ଯାଇଛି । ତାର ଖବର ପାଇ ରାୟସାହେବ ଓ ସୁବର୍ଣ୍ଣଦେବୀ ମଟରଗାଡ଼ିରେ ଆସି ସଞ୍ଜ ସରିକି ପହଞ୍ଚିଗଲେ । ଥାନା ଅଫିସର ଖବର ପାଇ ଆସି ଲୋକଙ୍କଠାରୁ ଜମାନବନ୍ଦି ନେଲେ ଏବଂ ଏ ଅପମୃତ୍ୟୁରେ କାହାରି କିଛି ହାତ ନାହିଁ ବୋଲି ଜାଣି ଲାସଟିକୁ ସତ୍କାର କରିବାକୁ କହିଗଲେ ।

ରାୟସାହେବ ଆଦେଶ ଦେଲେ—ପୋଡ଼ିଦିଅ ।

ସୁବର୍ଣ୍ଣ କାନ୍ଦିକାଟି ତାଙ୍କର ଉପରେ କଡ଼ୁଡ଼ି ହୋଇ ପଡ଼ି କହିଲା—ସମସ୍ତେ ମୋର ଗଲେ ଭାଇନା, ତୁମେ ମୋର ସବୁ ।

ରାୟସାହେବ ତୁନି ତୁନି କହିଲେ—ତୁନି ହ, ଜଞ୍ଜାଳ ଗଲା, ଭଲ ହେଲା । ସତେ କଅଣ ଦିଗମ୍ବର ସହିତ ତୋର କିଛି ସମ୍ପର୍କ ଥିଲା ?

ରାୟସାହେବ ନିଜ ତତ୍ତ୍ୱାବଧାନରେ ଶୁଦ୍ଧକ୍ରିୟା ସମାପନ କଲେ । ଦିଗମ୍ବରର ସାନ ଭାଇଟିଏ ଆସି କ୍ରିୟା ଧରିଲା । ଅପମୃତ୍ୟୁକୁ ଅବଲମ୍ବନ କରି ଦିଗମ୍ବର ଶେଷ ହେଲା । ଭିତରେ ଭିତରେ କୁହୁଳୁଥିବା ଅସହ୍ୟ ବେଦନା ଚିରଦିନ ପାଇଁ ଅପ୍ରକାଶିତ ରହିଗଲା । ବଡ଼ ଘରର ଏତେବଡ଼ ଗୁମର କଥାଟାର ଲେଶ ମାତ୍ର କେହି ଜାଣିପାରିଲେ ନାହିଁ । ଚଇନି ମଜନ୍ଦମ ରାୟସାହେବଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ବାରମ୍ବାର ଯିବା ଆସିବା କରି ମେନକା ସହିତ ଅବାଧ ମିଳାମିଶାର ସୁଯୋଗ ପାଇଲେ । କିନ୍ତୁ ରାୟସାହେବଙ୍କ ତୀକ୍ଷ୍ଣ ଦୃଷ୍ଟି ତାଙ୍କ ଗତି-ବିଧିର ଭିତରି ରହସ୍ୟ ବୁଝିବାକୁ ଅସମର୍ଥ ହେଲାନାହିଁ । ଧାନ ଅମାର ଓ ଜିନିଷପତ୍ର ଥିବା ଘର ଗୁଡ଼ିକରେ ତାଲା ପକାଇ ଜମିମୁଦ ଓ ମୋହର ଦେଇ ଚାବିକାଠି ତକ ନିଜ ବାକ୍ସରେ ସେ ବନ୍ଦ କଲେ । ବିଜୟପୁର ଗମାସ୍ତାକୁ ଡକାଇ ଆଣି ଜଗାରଖାର ଭାର ତାହାରି ଉପରେ ଦେଲେ । ଠାକୁରାଣୀଙ୍କ ପୂଜା ପାର୍ବଣ ଓ ନିତି ବିଧିର ଖର୍ଚ୍ଚା ବାବଦ ବରାଦ ଦେଇଗଲେ ଦେଉଳ ପୂଜକଙ୍କ ହାତରେ । ସଦର ଗୁମାସ୍ତା

ହାତରେ ଗୃହବାସ ଓ ଗୋରୁ ଗାଈର ଘର ଦେଲେ । କହିଗଲେ ଅମଳ ଦମଳ ବେଳକୁ କଟକରୁ କେହି ଜଣେ ଆସିବ । ମେନକାକୁ ପଚାରିଲେ—ତୋର କ ବର୍ତ୍ତବ୍ୟ ?

ହାତଯୋଡ଼ ଉତ୍ତର ଦେଲା ମେନା—ହଜୁରଙ୍କ ହୁକୁମ ଯାହା ହେବ ସିନା ?

ମେନା ହାତଯୋଡ଼ି ଠିଆ ହୋଇ ମୁରୁକ ମୁରୁକ ହସୁଛି । ଏ ହସ ଭିତରେ କେତେ ରହସ୍ୟ ଓ କେତେ ଉଦ୍ଦେଶ୍ୟର ଇଙ୍ଗିତ । ରାୟସାହେବ ଦେଖିଲେ ତାକୁ ଏଠି ଛାଡ଼ିଗଲେ ଚଇନ ହେଉ କି ଆଉ କେହି ହେଉ, କାହାରିକି ସେ ଧରିନେବ ଏବଂ ଏ ସମ୍ପତ୍ତି ବାଡ଼ି ନଷ୍ଟ କରାଇ ଦେବ । ତା ଛଡ଼ା ସୁବର୍ଣ୍ଣ କଟକ ଯିବାର ଭିତର କଥାଟାକୁ ବ ଚାରିଆଡ଼େ ଡଙ୍କା ପିଟି ବୁଲିବ । ବରଂ ତାକୁ କଟକ ନେଇଗଲେ ତା ଦ୍ୱାରା ଅନେକ କାମ ହୋଇ ପାରିବ ।

କହିଲେ—ତୁ ଆମ ସାଙ୍ଗରେ କଟକ ଚାଲ । ଏଠି ତୁ କାହାର କଅଣ କରିବୁ ? ତୋ ଖାମିଦାଣୀ ତ ସେଇଠି ରହିବେ ।

ଅନଚ୍ଛାସତ୍ତ୍ୱେ ମେନକା ଉତ୍ତର ଦେଲା—ହଜୁର୍ ଯାହା ଆଜ୍ଞା ଦେବେ; ମୋତେ ପଚାରୁଛନ୍ତି କଅଣ ?

ସେ କିନ୍ତୁ ଭିତରେ ଭିତରେ ଅସନ୍ତୁଷ୍ଟ । ଏଠା ହାକମୀ ସୁଖ ଶରଧା ସେଠି କାହିଁ ମିଳିବ ? ଚାହିଁ ଦେଲାକ୍ଷଣି ଦି'ଜଣ ଧାଇଁ ଆସୁ-ଛନ୍ତି । ଆଖିଠାର ଦେଲେ ରଜାପୁଅବି ପାଖରେ ଆସି ବସି ପଡ଼ୁଛି । ମନେ ମନେ ଭାବିଲା— ଦିଗମ୍ବରବାବୁ ବଞ୍ଚି ଥାଆନ୍ତେ କି ? ମୁଇଁ ଚଣ୍ଡାଳୁଣୀ ତ ଭୁଲ କଲାରୁ ସେ ମଲେ । ବେଶୀ ଖାଇବାକୁ ଆଶା କଲାରୁ ମୂଳରୁ ଗଲା ସିନା !

ସେଦିନ ସଞ୍ଜ-ଆଳତି ସରିଥାଏ । ଲୋକ ଗହଳି ଶୂନଶାନ୍ ହୋଇ ଯାଇଥାଏ । ଠାକୁରାଣୀଙ୍କ ଆଗରେ ମୁଣ୍ଡିଆ ମାରି ନିଜ ମନର

ଦୁଃଖପାକ ଜଣାକର ଠିଆହେଲା ମେନକା । ଚମ୍ପାଗଛର ଗ୍ରୂଳଗଳେ ପକ୍କା ପିଣ୍ଡି ଉପରକୁ ବସିଥାଏ ରାମଦାସ ପୂଜାରୀ । ବୟସ ଷାଠିଏ ହେବ । ଧୀଇରେ ଡାକିଲା—କିଏ ମେନା କି ?

ପଛକୁ ଫେର ଉତ୍ତର ଦେଲା ମେନକା—ହଁ ମୁଇଁ ନନା ।

—ଏଣିକି ଆଆତ ।

ଭିତରେ ଦୁଃଖର ନଆଁ କୁହୁଳୁଛି । ଚଉତରା ପାଖକୁ ଆସି ଛିଡ଼ାହେଲା ମେନକା । ପଚାରିଲା—କଅଣ କହୁଛ ନନା ?

ରାମଦାଶ— ମୁଁ ଆଉ କୋଉ କଥା କହିବ ? ତୁ ତ ବଡ ବଡ଼ଆଙ୍କୁ ଧରଛୁ । ମୁଁ କବା ଗ୍ରର । କଅଣ କଟକ ଯାଉଛୁ ?

ମେନା—ଆଉ ଉପାୟ କଅଣ ?

ରାମଦାଶ—କାହିଁକି ଦୁଃଖ କରୁଛୁ । ସାଆନ୍ତାଣୀ ତ ସେଇଠି ରହିବେ ।

ମେନା—ଯେଉଁଠି ରହିଲେ ସେ ସାଆନ୍ତାଣୀ । ଆମ ଭାଗ୍ୟ ସେଇ ଦାସୀ ପଣିଆ ।

ରାମଦାଶ—ଅଡ଼େଇ ଦନଆ ଯମ ହୋଇଗଲୁ, ଗୃହକାଠି ପୂଜାକ ପାଇଗଲାରୁ ? ଆମେ ହେଲୁ ପୂଜାରୀ ଚାକର ଲୋକ । ଆମ ଓଜ ଭିତରେ ଆମେ ରହିବା ଦରକାର ! ଧାପରୁଖା ଉପରକୁ ଉଠି ଗଲାରୁ ତୋର ପତନ ହେଲା ସିନା ! ଏବେ ତୁ ଚଇନ ବାବୁଙ୍କୁ ପଚାରୁନାହୁଁ କଅଣ କରିବୁ ?

ମେନା—ଚଇନ ସାଥିରେ ମୋର କି ସମ୍ପର୍କ ?

ରାମଦାଶ—ସମ୍ପର୍କଟା କଅଣ, ସେ କଥା ମୁଁ ଏକା ଜାଣେ-ନାହିଁ । ଗାଁଯାକ ସମସ୍ତେ ଜାଣନ୍ତି । ମୁଁ ଥାଉଁ ଥାଉଁ ତୁ କଆଁ ସେତେଦୂର ଯାଉଥିଲୁ ?

ମେନା ରାମଦାଶର ହାତଟାକୁ ଧରପକାଇ କହିଲା—ମାଫ୍ କର

ଦିନା । ବିପଦବେଳେ ସାହାଯ୍ୟ କର କି, ଦେଖିବ ମୁଁ ତୁମର କି ଉପକାର କରିବ ।

ମେନାକୁ ନିଜ ଆଡ଼କୁ ଭିଡ଼ିନେଇ ରାମଦାଶ କହିଲା—ଉପାୟ ମୁଁ ଇ କରିବ । ତୁ ଯେବେ ମୋ ଛଡ଼ା ଆଉ କାହାରି ଆଡ଼କୁ ନ ଚାହିଁବୁ । ଏଥର ହୁକୁମ ହେଲାଣି, ତୁ ଚାଲିଯାଅ । ମାସେ କି ପନ୍ଦର ଦିନ ପରେ ମୁଁ ଇ କଟକ ଯିବି, ସାଆନ୍ତାଣୀ ନାମାଙ୍କି ବୁଝାଇ ତୋତେ ଫେରାଇ ଅଣିବାର ବାଟ କରିବ ।

ଚମ୍ପାଗଛ ତଳ ଅନ୍ଧକାର ଭିତରେ ମେନକା ରାମଦାଶ ଉପରକୁ ଢ଼ଳି ପଡ଼ିଲା ।

× + ×

କଟକ ଆସି ଦେଖିଲା ମସ୍ତବଡ଼ ଗୋଟାଏ ପକ୍‌କା ପାଚେରୀ ଭିତରେ ଅନେକ ଗୁଡ଼ାଏ ପକ୍‌କା ଘର । ଆଗରେ ଜାତି ଜାତିକା ଫୁଲଗଛ ଲାଗିଛି । ଗୋଟାଏ କଡ଼କୁ ଘୋଡ଼ା ଗାଡ଼ି, ଘୋଡ଼ା ଦୁଇଟା ଓ ସଇସ ଦି ଜଣଙ୍କ ପାଇଁ ଧାଡ଼ିଏ ଲମ୍ବ ଚାଳଘର । କଚିରି ଘରେ ଅନେକ ଗୁଡ଼ିଏ ଆଲମାରିରେ ଆଇନ ବହି ଭର୍ତ୍ତି ହୋଇ ରହିଛି । ବାହାରେ ଭିତରେ ଚୌକି ଟେବୁଲ ଭର୍ତ୍ତି । ବାରଣ୍ଡାଯାକ ମହକିଲ ଓ ମୋହରିରରେ ପୂର୍ଣ୍ଣ । ଭିତରକୁ ବୈଠକଖାନା ଓ ପଢ଼ାଘର । ତା ପରେ ଦୀର୍ଘ ପକ୍‌କା ଅଗଣା ପାରିହେଲେ ଶୋଇଲା ଘର ଓ ଭଣ୍ଡାର ଘର ଆଦି । ସୁବର୍ଣ୍ଣଙ୍କ ପଛେ ପଛେ ମେନକା ଶୋଇଲା ଘର ଭିତରକୁ ପଶିଯାଇ ଦେଖିଲା ଶିଶୁକାଠର ବଡ଼ ପଲଙ୍କ ଉପରେ ବହଳ ବିଛଣା ପଡ଼ିଛି ଓ ଦି ଜଣ ଶୋଇବା ପାଇଁ ବଡ଼ ବଡ଼ ତକିଆ ରହିଛି । ଅଳ୍ପ କଥାରେ ମେନକା ପଚାରିଦେଲା—ନାମା ଆଜ୍ଞା । ଆପଣ ଏଇ ଘରେ ଶୋଉଛନ୍ତି ନା ?

ମୁଣ୍ଡ ହଲାଇ ହଁ ବୋଲି ଜଣାଇଦେଲେ ସୁବର୍ଣ୍ଣ ।

ମେନା ପଚାରିଲା—ରାୟ ସାହେବ ?

'ହଁ, ଏଇଠି' ବୋଲି ଉତ୍ତର ଦେଇ ସୁବର୍ଣ୍ଣ ମୁଣ୍ଡ ହଲାଇ ଦେଲେ, ପୁଣି ଥରେ। ସଙ୍ଗେ ସଙ୍ଗେ ମେନକା ତାଙ୍କ ମୁହଁ ଆଡକୁ ଚାହିଁ ଦେଖିଲା---ତାଙ୍କ ଅଧରରେ ସ୍ମିତମଧୁର ହାସ୍ୟ ଛଟାର ଇଙ୍ଗିତ ଖେଳି ବୁଲୁଛି।

ପାଖକୁ ଲାଗିଯାଇ ମେନକା ହସିଦେଇ କହି ପକାଇଲା— ତେବେ ଆଉ ଦୁଃଖ କୋଉ କଥାକୁ?

ଏ ମନ ଭାବୁଥାଇ ଯାହା
କାଳେ ପ୍ରାପତ ହୁଏ ତାହା।

ମେନା ପିଠି ଉପରକୁ ସୁବର୍ଣ୍ଣ ଟେଲରେ ହାଧାଥାଏ ବସାଇ ଦେଲେ।

ସ୍ୱଧବା ବେଶରେ ସୁବର୍ଣ୍ଣଦେବୀ ସରୁ ଧଡ଼ିଆ ଧୋବ ଲୁଗା ପିନ୍ଧିଛନ୍ତି। ହାତରେ ସୁନାର କଙ୍କଣ, ବାହୁରେ ସୁବର୍ଣ୍ଣର ବାଜୁବନ୍ଧ, କାନରେ ସୁବର୍ଣ୍ଣ ଅଳଙ୍କାର। ଛାଡ଼ିବା ଭିତରେ ସେ ଛାଡ଼ିଛନ୍ତି କେବଳ ମୁଣ୍ଡର ସିନ୍ଦୂର ବିନ୍ଦୁ। ତା ବଦଳରେ ଶୋଭା ପାଉଛି ଚନ୍ଦନ ଟୋପା। ଆଗ ଅପେକ୍ଷା ଅଧିକ ସୁନ୍ଦର ଦିଶୁଛନ୍ତି। ଦିଗମ୍ବର—ଜଞ୍ଜାଳ ଦୂର ହୋଇଛି। ଏଥିରେ ମନର ପୂର୍ଣ୍ଣ ସନ୍ତୋଷ ପ୍ରକଟି ଉଠୁଛି।

ପାଦତଳେ ଅତି-ଭକ୍ତିର ନିଦର୍ଶନ ସ୍ୱରୂପ ମୁଣ୍ଡିଆଟାଏ ମାରିଦେଇ ମେନକା ପଚାରିଦେଲା—ଆଜ୍ଞା ତେବେ ବଡ଼ ନାମ୍ନୀ ମଣିମା?

ସୁବର୍ଣ୍ଣ ଉତ୍ତର ଦେଲେ—ସେ ଗାଁରେ ରହୁଛନ୍ତି। ଘରଦୁଆର ଗୁଳୁଛି।

—ତେବେ ତ ଆପଣଙ୍କର ପଞ୍ଚମ ବୃହସ୍ପତି ପଡ଼ୁଛି!



ପ୍ରଖ୍ୟାତ ସାହିତ୍ୟିକ ରାୟ ସାହେବ ନକୁଳ ଚଉଧୁରୀଙ୍କ ନାମ ପ୍ରଦେଶ ବାହାରେ ମଧ୍ୟ ସୁପରିଚିତ । ପତ୍ର ପତ୍ରିକାରେ ତାଙ୍କ ରମ୍ୟ ରଚନାବଳି ପ୍ରକାଶିତ ହୁଏ । ସଭା ସମିତି ଓ ସମ୍ମିଳନୀମାନଙ୍କରେ ସଭାପତିତ୍ୱ କରିବା ପାଇଁ ତାଙ୍କୁ ନିମନ୍ତ୍ରଣ ଆସେ । ସେ ନିଜେ ଯାଆନ୍ତି ଏବଂ ସଙ୍ଗରେ ଧରି ଯାଆନ୍ତି ସୁବର୍ଣ୍ଣ ଦେବୀଙ୍କୁ । ଏହି ସୂତ୍ରରେ ବହୁ ବିଶିଷ୍ଟ ଧନୀ ମାନୀ ଲୋକଙ୍କ ସହିତ ପରିଚିତ ହେବାର ସୁଯୋଗ ଲଭ କଲେ ସୁବର୍ଣ୍ଣ । ସାହିତ୍ୟିକ ଚଉଧୁରୀ, ସୁନ୍ଦରୀ ସୁବର୍ଣ୍ଣଙ୍କୁ ସଙ୍ଗରେ ଧରି ରାଜାମହାରାଜାମାନଙ୍କ ଠାରୁ ସାହିତ୍ୟ ନାମରେ ମୋଟା ଚାନ୍ଦା ସଂଗ୍ରହ କରିବାକୁ ଗଲା ବେଳକୁ କୌଣସିଠାରେ ନିରାଶ ହୋଇ ଫେରନ୍ତି ନାହିଁ । ଅନେକ ଟଙ୍କା ଆଦାୟ ହେଲା ଏବଂ ନକୁଳବାବୁ ବିରାଟ ଅଭିଧାନଟିଏ ସଙ୍କଳନ କରାଇବାର ବ୍ୟବସ୍ଥା କଲେ । ନିଜ ଘରର ଗୋଟିଏ ପ୍ରସ୍ଥ ଏହି "ଶବ୍ଦ ରତ୍ନାକର" ନାମକ ବିରାଟ ଅଭିଧାନର କାର୍ଯ୍ୟାଳୟ ରୂପେ ବ୍ୟବହୃତ ହେଲା । କେତେକ ପଣ୍ଡିତ ଏ କାର୍ଯ୍ୟରେ ଯୋଗଦାନ କଲେ ଏବଂ ସୁବର୍ଣ୍ଣମୟୀ ଏହାର ପରିଚାଳିକା ସମ୍ପାଦିକା ରୂପେ ଅଧିଷ୍ଠିତା ହେଲେ । ଅଳ୍ପକାଳ ମଧ୍ୟରେ "ଶବ୍ଦ ରତ୍ନାକର"ର ପ୍ରଥମ ତରଙ୍ଗ ପ୍ରକାଶ ପାଇଲା । ପ୍ରଚ୍ଛଦପଟର ତଳ ପୃଷ୍ଠାରେ ସୁବର୍ଣ୍ଣମୟୀଙ୍କ ଶିର ପ୍ରକାଶିତ ହେଲା—ପରିଚାଳନା ସମ୍ପାଦିକା ସୁବର୍ଣ୍ଣମୟୀ ଦେବୀ ।

'ଦେବୀ' 'ବିଧବା' ନୁହେଁ । ଅର୍ଥାତ ବିଧବା ନୁହେଁ । ତାଙ୍କୁ ଦେଖିବା ପାଇଁ ଏବଂ ତାଙ୍କ ତୁଣ୍ଡରୁ ବକ୍ତୃତା ଶୁଣିବା ପାଇଁ ସଭା ସମିତି-ମାନଙ୍କରେ ଭାରି ଭିଡ଼ ହୁଏ । ଏଇ ସମୟଟା ଥିଲା ନାରୀଜାଗରଣର ପ୍ରଥମ ପର୍ଯ୍ୟାୟ । ଭଲ କୁହନ୍ତୁ ବା ମନ୍ଦ କୁହନ୍ତୁ, କହି ପାରନ୍ତୁ ବା ନ ପାରନ୍ତୁ, ସୁବର୍ଣ୍ଣମୟୀଙ୍କ ବାଗ୍ମିତାର ସୁଖ୍ୟାତି ଚାରିଆଡ଼େ ବ୍ୟାପିଗଲା ।

ତେଣେ ମଧୁସୂଦନ ପୁର ଗ୍ରାମରେ ଲବଣ୍ୟମୟୀଙ୍କ ତତ୍ତ୍ୱାବଧାନରେ ରାୟସାହେବଙ୍କ ନିର୍ଦେଶ ଅନୁସାରେ କୋଡ଼ିଏ ବଖରା କୋଠାଘର ତୋଳା ହେବାକୁ ଲାଗିଲା । ନକୁଳବାବୁ ପ୍ରତି ଶନିବାର ଗାଁକୁ ଯାଆନ୍ତି ଏବଂ ସୋମବାର ସକାଳୁ କଟକ ଫେରି ଆସନ୍ତି । ଏହିଭଳି ଭାବରେ ଘରତୋଳା କାମ ପୂରାପୂରି ଦୁଇଟିବର୍ଷ ଲାଗିଲା ।

ସୁଭଦ୍ରାଦେଇପୁରରୁ ପୂଜାରୀ ରାମଦାଶ ଦୁଇଥର ଆସିଚି ଏବଂ ନିଭୃତରେ ମେନକାକୁ ଦେଖାକରି ପଚାରିଛି—ବାବୁଙ୍କୁ କଅଣ ତୋ ଯିବା କଥା ପଚାରିବ ? ତୁ ନ ଗଲେ ଠାକୁରାଣୀଙ୍କ ସେବାରେ ବହୁତ ଅସୁବିଧା ହେଉଛି । ଏଣେ ଘରଗୁଡ଼ାକ ତାଲା ପଡ଼ିରହିଲାରୁ ହୁଏତ ଭିତରେ ଦାମିକା ଜିନିସପତ୍ରଗୁଡ଼ାକ ମୂଷାକାଟି ନଷ୍ଟ କରି ପକାଉଥିବେ । ଉଇଲାଗି ଯାଉଥିବେ ତ ସବୁଶେଷ କରି ଦେଉଥିବେ । ଚାଲ ତୁ ସେଇଠି ରହିବୁକି, ସବୁ କଥାକୁ ଭଲ ହେବ ।

ମେନକା କିନ୍ତୁ ହସି ହସି ମନା କରିଦେଇ କହିଲା—ଏଠି ମୋର କିଛି ଅଭାବ ନାହିଁ କି ଅସୁବିଧା ନାହିଁ । କଟକରେ ସୁନ୍ଦରିଆ ସୁନ୍ଦରିଆ ଠାକୁର ପୂଜାରୀର ଅଭାବ ନାହିଁ ।

ନିରାଶ ହୋଇ ରାମଦାଶ ଦୁଇଥର ଯାଇ ଫେରିଛି । ଏଠା ଚାକରଙ୍କୁ ପଠାଇ ସୁଭଦ୍ରାଦେଇପୁରର ଘରଗୁଡ଼ିକୁ ଫିଟାଇ ସଫାସୁତୁରା କରାଇଛନ୍ତି ନକୁଳବାବୁ ନିଜେ ।

× × ×

କିଛିଦିନ ପରେ ଲବଣ୍ୟଦେବୀ ଖବର ପଠାଇଲେ—ସେ କଟକ ଆସିବେ ବୋଲି । ସଞ୍ଜପରେ ଫୁଲ ବଗିଚା ଭିତରେ ବସି ଥାଆନ୍ତି, ଗୋଟିଏ ଚୌକିରେ ନକୁଳବାବୁ ଓ ଆଉ ଗୋଟିକରେ ସୁବର୍ଣ୍ଣଦେବୀ । ନିର୍ମଳ ଚନ୍ଦ୍ରର ସୁଶୀତଳ ଜ୍ୟୋତ୍ସ୍ନା ନୀଳଆକାଶରୁ ଝରିପଡ଼ି ଚତୁର୍ଦ୍ଦିଗ ସ୍ନିଗ୍ଧ ଶୀତଳ କରିଦେଇ ଥାଏ । ଜାଈ ଜାଈକା ଫୁଲ ଫୁଟି ସୁବାସ ଚହଟି ଆସୁଥାଏ । ଫାଟକ ପାଖରେ ଲଣ୍ଠନ ଖୁଣ୍ଟି ଉପରେ ଉଜ୍ଜ୍ୱଳ

ମାପଦୁଇଟା ଜଳୁଥାଏ । ପାଖକୁ ଘୁଞ୍ଚିଆସି ସୁଖସ୍ୱପ୍ନବିଭୋଳା ସୁବର୍ଣ୍ଣ ଦେବୀ ଧୀର ସ୍ୱରରେ କହିଲେ—ହେ, ଶୁଣୁଚ ? ନାନୀତ ଆସିବାକୁ ଲେଖିଲେଣି । ମୋତେ ଦେଖିଦେଲେ ସବୁ କଥା ଜାଣି ପାରିବେ । ଉପାୟ କଅଣ ? ଏ ଅବସ୍ଥାରେ ଆମ ଗାଁକୁ ବା ମୁଁ ଯିବି କେମିତି ?

କିଛି ସମୟ ନୀରବ ରହି ନକୁଳ ବାବୁ ନିଃଶ୍ୱାସ ଟାଣିଲେ । ଆନନ୍ଦର ପରିଣାମ ନିରାନନ୍ଦ ଓ ଦୁଃଖ । ସୁଖ ସମ୍ଭୋଗର ପଛେ ପଛେ ଧାଇଁଥାଏ ଦୁର୍ନାମ ଓ ଦୁର୍ଦ୍ଦଶା ।

ସୁବର୍ଣ୍ଣ କହିଲେ—କଥାଟାକୁ ଏତେ ଲଘୁଭାବେ ଗ୍ରହଣ କର ନାହିଁ କହୁଛି । କିଛି ଗୋଟାଏ ଉପାୟ କର ବୋଲି ଅନେକ ଦିନରୁ ମୁଁ କହିଆସୁଛି । ମୁହଁ ମୁହଁ ପାଞ୍ଚମାସ ପଶିଲା । ମେନକା କହୁଥି କୋଉ ଗାଁରେ କିଏ ଗୋଟାଏ ବୁଢ଼ୀ ଅଛି ତା ପାଖାନ୍ତ ଘରେ କେତେ ଝିଅ ପିଲଙ୍କୁ ସେ ଖଲାସ କରାଇ ଦେଉଥିଲା । କହିବତ ସେ ମୁକର ସଙ୍ଗରେ ଯାଇ ତାକୁ ଡାକି ଆଣିବ ।

ଚୁପ୍ ମାରି ବସି ରହିଲେ ରାୟ ସାହେବ । ଭଲ ହେବ ଆଶା କରି କଅଣ କରୁ କରୁ କଅଣ ଗୋଟାଏ ହୋଇ ଯିବ ତ ଏ ବିପଦରୁ ସେ ବିପଦ ବଡ଼ି ଯିବ । କିଛି ସମୟ ପରେ କହିଲେ—ସେ ସବୁ କିଛି ନୁହେଁ । ଥୟ୍ୟ-ଧର । କାଲିକି କିଛି ଗୋଟାଏ ବ୍ୟବସ୍ଥା କରାଯିବ । ନାନୀ ଲେଖିଛନ୍ତି ଗାଡ଼ି ପଠାଇବାକୁ । ଗାଡ଼ିଗଲେ ତ ସେ ଆସିବେ ?

ତହିଁ ଆରଦିନ ସକାଳୁ ସୁବର୍ଣ୍ଣଙ୍କୁ ଡ଼ାକି କହିଲେ—ଆଜି ରାତି ମେଲଗାଡ଼ିରେ ଆମେ ବିଶାଖାପାଟଣା ଯାତ୍ରା କରିବା । ସେଠି ଆମେ ଅନ୍ତତଃ ଛଅ ସାତ ମାସ ରହିବା । ସବୁ ପ୍ରକାରେ ପ୍ରସ୍ତୁତ ହୁଅ । ମେନକା ସଙ୍ଗରେ ଯିବ । କେହି ଯେମିତି ନ ଜାଣନ୍ତି, ଆମେ କେଉଁଠାକୁ ଯାଉଛୁ ।

ବିଶାଖାପାଟନା ସେତେବେଳେ ମାନ୍ଦ୍ରାଜ ପ୍ରଦେଶ ମଧ୍ୟରେ ଥିଲା । ଓଡ଼ିଆ ରଜା ବେଜୱାଡ଼ା ପର୍ଯ୍ୟନ୍ତ ବିଜୟ କରି ବାହୁଡ଼ିଥିଲେ ।

ରାଜମହେନ୍ଦ୍ରୀ, ବିଶାଖାପାଟଣା, କଳିଙ୍ଗ ପଟ୍ଟନମ୍ ଏବଂ ଜୟପୁର ବାଟରେ ଥିବା ଗଜପତି ନଗର ଇତିହାସର ଏ ପ୍ରମାଣ ସ୍ୱରୂପ ଏବେବି ବିଦ୍ୟମାନ ଅଛି । ଜଣେ ମହାରାଜାଙ୍କର ବିଶାଖାପାଟଣାଠାରେ ଅବସର ବିନୋଦନ ବଙ୍ଗଳାଟିଏ ଥିଲା । ସେ ରାଜା ଜଣେ ସାହିତ୍ୟିକ । ନକୁଳବାବୁ ତାଙ୍କୁ ଖଣ୍ଡିଏ ଚିଠି ଲେଖିଲେ—

ମହାରାଜା ଶ୍ରୀଶ୍ରୀ ଅମୁକ ଦେବ ······ମହୋଦୟ ଉଦାର ହୃଦୟେଷୁ ।

ଶ୍ରୀମନ୍ ମହାରାଜ,

ଅଧୀନ ଶ୍ରୀମୁଖଙ୍କ ନିକଟରେ ବହୁ ପୂର୍ବରୁ ପରିଚିତ । ଅଧୀନଦ୍ୱାରା ସଙ୍କଳିତ 'ଶବ୍ଦ ରତ୍ନାକର'ର ପ୍ରଥମ ତରଙ୍ଗ ମଣିମାଙ୍କ କର କମଳରେ ଅର୍ପିତ ହୋଇ ଅଛି । ପ୍ରାକୃତିକ ଉତ୍କଳର ଉପାନ୍ତ ଅଞ୍ଚଳରେ ଭ୍ରମଣ କରି ଶବ୍ଦ ରତ୍ନାକରର ଶବ୍ଦଭଣ୍ଡାରକୁ ପରିବର୍ଦ୍ଧିତ କରିବା ଉଦ୍ଦେଶ୍ୟରେ ନୂତନ ଶବ୍ଦାବଳି ସଂଗ୍ରହ କରିବା ଲାଗି ଅଧୀନ ଆପାତତଃ କିଛିଦିନ ପାଇଁ ବିଶାଖାପାଟଣାରେ ଥିବା ଶ୍ରୀମୁଖଙ୍କ ବଙ୍ଗଳାରେ ଆଶ୍ରୟ ନେବାର ଆଶା କରି ଆଜି ରାତି ମେଲରେ ଯାତ୍ରା କରୁଅଛି । ପରିଚାଳନା ସମ୍ପାଦକ ଏବଂ ଲେଖନକାର ଜଣେ ଅଧେ ସଙ୍ଗରେ ଯିବାର ସ୍ଥିର ହୋଇଛି । କରୁଣାନିଧି ଶ୍ରୀମୁଖ ସୁଦୟା ପରବଶ ହୋଇ ଅଧୀନର ଏ ବିନୀତ ଅନୁରୋଧ ରକ୍ଷା ପୂର୍ବକ ଅନୁମତି ପ୍ରଦାନ କରିବା ହେବେ ।

। ଇତି ।

ବିନୟାବନତ ସାହିତ୍ୟିକ
ଶ୍ରୀ ନକୁଳଚନ୍ଦ୍ର ଚୌଧୁରୀ ।
(ରାୟସାହେବ)

ଚିଠିଖଣ୍ଡିକ ଡାକଦ୍ୱାରା ପଠାଇ ସେହିଦିନ ରାତିରେ ନକୁଳ ବାବୁ ବିଶାଖାପାଟଣା ଯାତ୍ରାକଲେ । ତହିଁ ଆରଦିନ ବିଶାଖାପାଟଣାରେ ପହଞ୍ଚିଲେ । ଉକ୍ତ ବଙ୍ଗଳାରେ ଜଣେ ମେନେଜର ଥାଆନ୍ତି । ରାୟସାହେବ

ପଦବୀ ଇଂରେଜ ସରକାରଙ୍କ ପଦବୀ । ପରିଚୟ ପାଇ ମେନେଜର ଗାରୁ (ବାବୁ)ବଙ୍ଗଳାର ଗୋଟିଏ ଅଂଶ ଛାଡ଼ିଦେଲେ । ମହାରାଜା ଏ ବଙ୍ଗଳାଟିକୁ ଗେଷ୍ଟ୍‌ହାଉସ୍ ବା ଅତିଥିଶାଳା ରୂପେ ବ୍ୟବହାର କରନ୍ତି । ତେଣୁ ନକୁଳବାବୁ, ସୁବର୍ଣ୍ଣମୟୀ ଏବଂ ମେନକା ମହାରାଜାଙ୍କ ଅତିଥିରୂପେ ସ୍ଥାନ ପାଇଲେ । ଏ ଅଂଶଟିରେ ବଡ଼ ବଡ଼ ତିନୋଟି ବଖରା ଘର, ବାରଣ୍ଡା, ରୋଷଘର, ପାଇଖାନା ଓ ଗାଧୁଆଘର ଆଦି ଥାଏ । ବିଶାଖାପାଟନା ଗୋଟିଏ ପ୍ରାକୃତିକ ପୋତାଶ୍ରୟ । ବଙ୍ଗଳା ସମ୍ମୁଖରେ ସମୁଦ୍ର । ଚାରିଆଡ଼କୁ ଚାହିଁ ସୁବର୍ଣ୍ଣଦେବୀ ସ୍ତମ୍ଭୀଭୂତ ହୋଇ ମନେ ମନେ ଭାବିହେଲେ —କାହିଁ ବିଶାଖାପାଟଣାର ଏ ଅତିଥିଶାଳା, କାହିଁ ସେ ସୁଭଦ୍ରାଦେଇ ପୁରର କ୍ଷୁଦ୍ରାକୃତି ବାସଗୃହ । କାହିଁ କେତେ ଉଚ୍ଚରେ ଅଛନ୍ତି ରାଜା ସାହେବ, ଆଉ କାହିଁ କେତେ ତଳେ ପଡ଼ିଥିଲେ ହରମ୍ବର ?

ଦରଓ୍ୱାନ ଆସି ସ୍ପ୍ରିଙ୍ଗଲଗା ଦୁଇଟା ଖଟ ଉପରେ ବହଳ ଶୁଭ୍ର ଶଯ୍ୟା ସଜାଡ଼ି ଦେଇଗଲା ଏବଂ ଟେବୁଲ୍ ଚଉକି ଆଦି ସୁସଜ୍ଜିତ ଭାବେ ବାଗେଇ ଦେଇଗଲା । ଅନ୍ୟ ଘରେ ପଡ଼ିଥିବା ଖଣ୍ଡେ ଖଟ ଉପରକୁ ଗଡ଼ପଡ଼ ଆନନ୍ଦରେ ଏଣେତେଣେ ଚାହିଁ ରହୁଛି ମେନକା । ଏସବୁ ଆଡ଼ମ୍ବର ଦେଖି ଗୋଟିପଣେ ତାଟକା ହୋଇଯାଉଛି । ଭାବୁଛି—କାହିଁ ଏ ସ୍ୱର୍ଗପୁରି, ଆଉ କାହିଁ ସେ ଯାଆନ୍ତ ସାହି ? ପୂଜାରୀ ରାମଦାଶ କଥାରେ ସୁଭଦ୍ରାଦେଇପୁରକୁ ଲେଉଟି ଯାଇଥିଲେ ଜୀବନରେ ଏ ସବୁ କେବେ ସେ ଦେଖିପାରି ଥାଆନ୍ତା କି ?

ମେନେଜରଙ୍କ ବରାଦ ଅନୁସାରେ ଏକ ସପ୍ତାହ ପାଇଁ ଅତିଥି ଶାଳା ତରଫରୁ ରାଜଆତିଥ୍ୟର ସବୁ ପ୍ରକାର ବ୍ୟବସ୍ଥା କରାଗଲା । ଏହି ସମୟ ଭିତରେ ମହାରାଜାଙ୍କ ଠାରୁ ଅନୁମତି ପତ୍ର ସଙ୍ଗେ ଅଭିନନ୍ଦନ ପତ୍ର ଆସିଗଲା—

ଶ୍ରୀମନ୍ ରାଯ଼ସାହେବ ମହୋଦଯ଼······କର କମଳେଷୁ ।

ବରେଣ୍ୟ ସାହିତ୍ୟିକ ମହାଶଯ଼,

ଆପଣଙ୍କ ପତ୍ର ଖଣ୍ଡିକ ପାଇ ସାତିଶଯ଼ ଆନନ୍ଦ ଲାଭ କଲି । ଆପଣଙ୍କ ପଦରେଣୁ ସ୍ପର୍ଶରେ ଆମ୍ଭର ସେ କ୍ଷୁଦ୍ର ଅତିଥିନିଳଯ଼ ଖଣ୍ଡିକ ନିଶ୍ଚଯ଼ ପବିତ୍ର ହେବ । ନିଶ୍ଚିନ୍ତ ମନରେ ଆପଣ ସେଠାରେ ସକୁଟୁମ୍ବେ ଯେତେଦିନ ଇଚ୍ଛା ରହିପାରନ୍ତି । ସେଥିରେ ଆମେ ଆନନ୍ଦିତ ହେବୁ । ସେଠା ମେନେଜର ବାବୁଙ୍କୁ ମୁଁ ସ୍ୱତନ୍ତ୍ର ପତ୍ର ଦେଇ ଆଦେଶ ଦେଉଅଛି କି ଆପଣ ସେଠାରେ ଯେତେଦିନ ଇଚ୍ଛା ଥିବା ଯାଏ ସେ ଆପଣଙ୍କୁ ସବୁ ପ୍ରକାରେ ବିଶିଷ୍ଟ ଅତିଥି ରୂପେ ସମ୍ମାନ୍ ପ୍ରଦର୍ଶନ କରିବେ । ବରେଣ୍ୟ ସାହିତ୍ୟିକ ମହୋଦଯ଼, ଅକିଞ୍ଚନର ପ୍ରଣତି ଗ୍ରହଣ କରିବା-ହେବେ । ଇତି ।

ଭବଦୀଯ଼ ଦର୍ଶନାଭିଳାଷୀ
ଶ୍ରୀ·········ଅମୁକ

ସ୍ୱତନ୍ତ୍ର ଆଦେଶନାମା ପାଇଁ ମେନେଜର୍ ଗାରୁ (ବାବୁ) ଆସି ଅଭିନନ୍ଦନ ସହକାରେ ନମସ୍କାର କରିଗଲେ । ତାପରେ ରାଯ଼ସାହେବ ନିଜେ ପାଇଥିବା ପତ୍ର ଖଣ୍ଡିକୁ ସୁବର୍ଣ୍ଣଦେବୀଙ୍କୁ ଦେଖାଇ କହିଲେ— ଦେଖୁଚ,ମହାରାଜା କଅଣ ଲେଖିଛନ୍ତି ? ଲେଖିଛନ୍ତି—ସକୁଟୁମ୍ବେ । ତାଙ୍କର ଧାରଣା ପରିବ୍ରଜନା ସମ୍ପାଦିକା ମୋର—

ସୁବର୍ଣ୍ଣ ସେତିକିଦୂର ଶୁଣି କହି ଉଠିଲି—ପତ୍ନୀ ? ଏଇତ ? ନୁହଁକି ? କଅଣ ଆଉ ବାକିଅଛି ?

ନକୁଲବାବୁ କହି ଉଠିଲେ—ବାକି କିଛିନାହିଁ । ପୁଣି ଅଛି । ସଧବା ସ୍ତ୍ରୀ ମୁଣ୍ଡରେ ସିନ୍ଦୂର ପିନ୍ଧେ । ସାରା ଭାରତରେ ଏଇକଥା ଏବଂ ଏଇ ପ୍ରଥା ସମସ୍ତ ହିନ୍ଦୁଙ୍କରେ ପ୍ରଚଳିତ ଅଛି ।—ଅନ୍ତତଃ ଏଠି ଯେତେଦିନ ଅଛୁ, ସେତେ ଦିନ ସେଇଆ କର । କେତେବେଳେ କେଜାଣି ମହାରାଜା ନିଜେ ଆସି ହଜିର ହୋଇ ଯିବେ ତ !

ସୁବର୍ଣ୍ଣ କହିଲେ—କାଲି ଅଣେଇ ଦିଅ ।

ରାଘୁ ସାହେବ—ସଙ୍ଗରେ ଅଣାଯାଇଛି । ଗୋଟିଏ ଟ୍ରଙ୍କରେ ଅଛି । ମେନକାକୁ ପଚାର ।

ସଙ୍ଗରେ ଅନେକ ଗୁଡ଼ିଏ ଟ୍ରଙ୍କ ସୁଟକେଶ ଆସିଛି । ସେଗୁଡ଼ିକ ମେନକା ଜିମା । ସବୁ ସେ ଆଣିଚି । ସେ ଠିକ୍ ଜାଣିଛି—କେମିତି ଭାବରେ ସଧବାକୁ ବିଧବା କରାଯାଏ ଏବଂ କେମିତି ବିଧବାକୁ ସଧବା ସଜାଯାଏ । ତାକୁ ପାଖକୁ ଡାକି ସୁବର୍ଣ୍ଣ ନିଜ କପାଳରେ ଟିପମାରି ହସି ଦେଇ ପଚାରିଲି—ଆଣିଚୁ ସାଙ୍ଗରେ ?

ହସିପକାଇ ମେନକା ଉତ୍ତର ଦେଲା—ଆଣିଛି ଆଜ୍ଞା, ପାଟ-ପୀତାମ୍ବରୀ ଶାଢ଼ୀ କେତୁଟାବି ଆଣିଚି ।



ନକୁଳବାବୁ ସୁବର୍ଣ୍ଣ ଓ ମେନକାକୁ ସଙ୍ଗରେ ନେଇ ବିଶାଖା ପାଟଣା ଚାଲିଯିବାକଥା କଟକ ଘରେ କେହି ଜାଣନ୍ତି ନାହିଁ । କଟକରୁ ବଗିଗାଡ଼ି ପଠା ନଗଲେ ସୁଦ୍ଧା ମାସେ ଖଣ୍ଡେ ଅପେକ୍ଷା କରିସାରି ଲାବଣ୍ୟଦେବୀ ଶଗଡ଼ ଗାଡ଼ିରେ କଟକ ଆସିଲେ । ଦେଖିଲେ ତାଙ୍କ ବିଧବା ଭଉଣୀ ଭଣୋଇଙ୍କ ସଙ୍ଗରେ କୁଆଡ଼େ ଚାଲିଯାଇଛି । ସଙ୍ଗରେ ଯାଇଛି ମେନକା ଦାସୀ । ସାନ ଭଉଣୀକୁ ସେ ଅନେକ ଦିନ ହେଲା ଦେଖି ନାହାନ୍ତି । ଭାବିଲେ ହୁଏ ତ ସୁବର୍ଣ୍ଣ ତା ଗାଁକୁ ଚାଲି ଯାଇଥିବ । ପୁଣି ଜାଣିଲେ ଶବ୍ଦରତ୍ନାକରର ପରିଚାଳନା ସମ୍ପାଦିକା ହେଉଛି ସୁବର୍ଣ୍ଣ । ଇଏ ପୁଣି କି ରହସ୍ୟ ! ନକୁଳବାବୁ ଏବଂ ସୁବର୍ଣ୍ଣର ଗଣ୍ଠିବନ୍ଧ ସମ୍ବନ୍ଧରେ ସମ୍ପୂର୍ଣ୍ଣଭାବେ ସନ୍ଦିହାନ ହୋଇ ଲାବଣ୍ୟଦେବୀ ବିଭିନ୍ନ କୁତ୍ସିତ କଥା ଭାବିବାକୁ ଲାଗିଲେ । ତାଙ୍କର ମାନସିକ ଅବସ୍ଥା ଧୀରେ ଧୀରେ ଖରାପ ହେବାକୁ ଲାଗିଲା । ତେଣୁ ସେ ଏଠି ଏକୁଟିଆ ରହି ମନ ଖରାପ କରିବା ଅପେକ୍ଷା ସମ୍ପତ୍ତିବାଡ଼ିର ବୁଝାସୁଝାରେ ସମୟ କଟାଇବା ଭଲହେବଭାବି ପୁଣି ଥରେ ଗାଁକୁ ଲେଉଟି ଗଲେ; ଏବଂ ଚାକର ବାକରଙ୍କୁ କହିଗଲେ ବାବୁ ଫେରିଆସିବା ସଙ୍ଗେ ସଙ୍ଗେ ମୋତେ ଖବର ଦେବ । ଚିଠିପତ୍ର ଆସିଲେ ମୋ ପାଖକୁ ପଠାଇ ଦେବ ।

ପୁଣି ଥରେ ଭାବିଲେ—ବିଧବା ଶାଳୀଟିକୁ ସଙ୍ଗରେ ଧରି ଏଣେ ତେଣେ ବୁଲୁଛନ୍ତି କାହିଁକି ? ବିଧବା ହେଲେ ବି ସୁବର୍ଣ୍ଣ ଯୁବତୀ । ଭଣୋଇ ସଙ୍ଗରେ ବୁଲୁଛି, ସେ କଅଣ ଦେବତା ନା ଇଏ କଅଣ ଦେବତା । ରକ୍ତ ମାଂସର ଦେହ ଧରି ପତିଙ୍କ ମନ ତ ଠିକ ରହି ପାରୁ ନାହିଁ । ଇଏ କଅଣ ଜିତେନ୍ଦ୍ରିୟ ହୋଇଛନ୍ତି ନା ନପୁଂସକ ହୋଇଛନ୍ତି ! ଶେଷକୁ ସୁବର୍ଣ୍ଣ ମୋର ଭଉଣୀ ହୋଇ ମୋର ସର୍ବନାଶ କଲା !

ଭାବିଲା ବେଳକୁ ମୁଣ୍ଡ ଝାଇଁ ଝାଇଁ ହୋଇ ଯାଉଛି । ଦ୍ୱନ୍ଦ ମନ ବାଇ ବାତୁଳ ପରି ଲାଗୁଛି । ଅତି କ୍ରୋଧରେ ଆପଣାକୁ ଆପେ କହି ଉଠିଲେ—ଆସନ୍ତୁ ଫେରି, ଦି ଜଣଙ୍କୁ ମୁଁ ସାବାଡ଼ କରିଦେବି ।

ଦୀର୍ଘ ଦଶ ଏଗାର ମାସ ପରେ ଖବର ପାଇଲେ ଯେ ସେମାନେ ଫେରି ଆସିଛନ୍ତି । ଯାଇଥିଲେ ତିନିଜଣ—ଆସିଛନ୍ତି ଚାରିଜଣ । ସୁବର୍ଣ୍ଣ କୁଆଡ଼େ କାହାର ଗୋଟିଏ ଉଷୁଣି ଛୁଆକୁ ପୁଅ କରି ଆଣିଛି । ଖବର ପାଇ ଲାବଣ୍ୟଙ୍କ ମନଟା ଓଲଟ ପାଲଟ ହେବାକୁ ଲାଗିଲା । ଆଗେ ପାପ, ପଛେ ପୁଣ୍ୟ । ମନଟା ଠିକ କରି ବୁଝିନେଲା ଯେ, ସୁବର୍ଣ୍ଣ ଯେତେ ଯାହା କହୁ ପଛକେ, ଇଏ ନିଶ୍ଚେ ତାଆରି ଛୁଆ । ପୋଷିବାକୁ ଆଣିଛି ବୋଲି କହୁ କି ପାଳିବା ଲାଗି ପୁଅକରି ଆଣିଛି ବୋଲି କହୁ, ପୁଅଟି ନିଶ୍ଚୟ ରାମ୍ବୁସାହେବଙ୍କର । ପାପଟାକୁ ଯେତେ ଯାହା କହି ଘୋଡ଼ାଇ ପକାଇଲେ କଅଣ ଲୋକେ ସତ ମଣିବେ ? ଆଖିବୁଜି ଦୁଧ ପିଇ ପିଇ ବିଲେଇ ଭାବୁଛି—ତାକୁ କେହି ଦେଖି ପାରୁନାହାନ୍ତି ।

ଲାବଣ୍ୟଦେବୀ କଟକରୁ ବଗି ଗାଡ଼ିକୁ ଅପେକ୍ଷା କଲେନାହିଁ । ଗାଁ ଶଗଡ଼ରେ ବସି କଟକ ଫେରି ଆସିଲେ । ଭିତରେ ଭିତରେ ଜଳି-ପୋଡ଼ି ଯାଉଛନ୍ତି, ମାତ୍ର ବାହାରକୁ କିଛି ଜଣା ପଡୁନାହିଁ । ପୃଥିବୀର ଭିତରଟା ତୀବ୍ର ଉତ୍ତାପ ଓ ଅଗ୍ନିରେ ଆଉଟି ହେଉଥିଲେ ସୁଦ୍ଧା ବାହାରକୁ କିଛି ଜଣାପଡ଼ୁନାହିଁ । ଆଭ୍ୟନ୍ତରୀଣ ଉତ୍ତାପ ଅତି ଅସହ୍ୟ ହେଲେ ଆଗ୍ନେୟଗିରି ମୁଖବାଟେ ତରଳ ଲାଭାସ୍ରୋତ ଉଠିଆସି ଚତୁର୍ଦ୍ଦିଗକୁ ପୋଡ଼ି ଜାଳି ଭସ୍ମୀଭୂତ କରିଦିଏ ।

କଟକ ଘରେ ପହଞ୍ଚି ସିଧା ସଳଖ ସେ ସୁବର୍ଣ୍ଣ ପାଖକୁ ଚାଲି ଗଲେ । ଦେଖିଲେ ଛୁଆଟିକୁ ସେ କୋଳରେ ଧରି ବସିଛି । ରୁକ୍ଷ ଗଳାରେ ତାକୁ ପଚାରିଲେ—କାହାର ପିଲା ଇଏ ? ସତ କହ, ତୋର ନୁହଁ କି ?

ତଳକୁ ମୁହଁ ପୋତି ରଖି ସୁବର୍ଣ୍ଣ ଉତ୍ତର ଦେଲେ—'ନା' । କାହିଁ ଥିଲା ମେନକା, ଧାଇଁ ଆସି ପାଦତଳେ ମୁଣ୍ଡିଆଟାଏ ମାରି ହସି

ହସି କହିବାକୁ ଲାଗିଲା—ନାନୀ ଆଜ୍ଞା, ଡାକ୍ତରଖାନାରୁ ଏ ପୁଅ ପିଲାଟିକ ତା ବାପର ବିକଳ ସହି ନ ପାରି ପାଳିବା ପାଇଁ ନେଇ ଆସିଛନ୍ତି। ବ୍ରାହ୍ମଣ ଘରର ବୋହୂଟିଏ ଛୁଆ ଜନ୍ମ କରିବା ପାଇଁ ଡାକ୍ତରଖାନାରେ ଭର୍ତ୍ତି ହୋଇ ରହିଥିଲେ। ବଡ଼ କଷ୍ଟରେ ଏ ଛୁଆଟିକ ଜନ୍ମ କରି ସାରିଲା ପରେ ସେ ମରିଗଲେ। ଏ ଅବସ୍ଥାରେ ବାପଟି କାନ୍ଦିକାଟି ଉଚ୍ଛନ୍ନ ହୋଇ ପଡ଼ିଲେ। ଏକେତ ସ୍ତ୍ରୀ ମରିଗଲା। ତାର ଦୁଃଖ ଅତି ଅସହ୍ୟ। ତା ଉପରେ ପୁଣି ଜନ୍ମ ହୋଇ ସଂସାରକୁ ଆସି ଯାଇଥିବା ପୁଅ ପିଲାଟିକୁ ପାଳିବା ଚିନ୍ତା! କିଏ ପାଳିବ ଏବଂ କିଏ ତାକୁ ବଞ୍ଚାଇବ! ଏଇ ବିପଦରେ ପଡ଼ି ବାପା କାନ୍ଦି ବୁଲୁଛନ୍ତି। ଡାକ୍ତରଖାନାର ନର୍ସ ଓ ଡାକ୍ତରାଣୀମାନେ କହୁଛନ୍ତି—ଉଠାଅ ଏ ପିଲାକୁ ଚଞ୍ଚଳ। ଏ ଖବରପାଇ ଠିକନାନୀ ଆଜ୍ଞା ତା ଦୁଃଖକୁ ସହିପାରିଲେ ନାହିଁ। ଭଗବାନ ତ ତାଙ୍କ କୋଳକୁ ଛୁଆ ପିଲା କିଛି ଦେଇନାହାନ୍ତି। ବିପଦରେ ପଡ଼ିଥିବା ବାମ୍ଭର ଅନୁନୟ ବିନୟରେ ଦୟା ପ୍ରକାଶ କରି ସେଇ ଛୁଆଟିକ ଗୋଟାଇ ଆଣିଛନ୍ତି। ମଣିଷ ତ ବଲେଇ କୁକୁର ଓ ସୁଆ ସାରି ଛୁଆଙ୍କୁ ବି ପୋଷି ପାଳି ବଡ଼ କରିଉଛି! ଭଗବାନ ତ ଭିନ୍ନ ରୂପରେ ଦେଖା ଦିଅନ୍ତି ନାହିଁ। ଦୟା, ମାୟା, କ୍ଷମା ସବୁ-ଗୁଡ଼ିକ ଗୁଣ ତାଙ୍କର ଏଇ ମଣିଷ ଭିତରେ ହିଁ ଦେଖା ଦେଇଥାଏ। ଶ୍ରେଷ୍ଠ ନାନୀ ଆଜ୍ଞା ତ ଦୟା ଲକ୍ଷ୍ମୀର ଅବତାର!

ଗାଲୁରୁ ଗାଲୁରୁ ହୋଇ ମେନକା ବିରମିକା ଚଳେଇ ଥାଏ। ଲାବଣ୍ୟଦେବୀଙ୍କର ଏ କାନରେ ପଶି ସେ କାନରେ ସେ କଥା ସବୁ ବାହାରି ଯାଉଥାଏ। ନିର୍ବାକ ଭାବେ ସେ ବହୁତ କଥା ଭାବି ହେଉ ଥାଆନ୍ତି। ଅନେକ ସନ୍ଦେହ ଅନେକ ଦିନରୁ ହୃଦୟ ଭିତରେ ଜମାଟ ବାନ୍ଧି ଆସିଛି। ମେନକାର ଗୁଡ଼ୁ ଗୁଡ଼ୁରରେ ସେ ସବୁ କଅଣ ସଫା ହୋଇ ଯାଇ ପାରିବ? ରାଗ-ଲୋହିତ ଆଖି ଦୁଇଟାକୁ ମେନକା ଆଡ଼କୁ ବୁଲାଇ ଆଣି ମାରିବ ଭାବରେ ସେ କେବଳ ଅଗ୍ନି-ବର୍ଷଣ କରିବାକୁ ଲାଗିଲେ। ମେନକା ମୁହାଁମୁହିଁ ତାଙ୍କ ଆଡ଼କୁ ଚାହିଁ ପାରୁ ନାହିଁ। ବାଗେଇ ବାଗେଇ ଯେତେ ଚିକଣେଇ ମିଛ କଥାକୁ ଫେଣେଇ

ବସିଲେ ମିଛଟା ସତ ହୁଏ ନାହିଁ । ମେନକାର ଆଖି ଦୁଇଟା ଘୁରି ଘୁରି ତଳକୁ ଚାଲିଗଲା ଏବଂ କଥା କହିଲା ବେଳକୁ ତାର ତଣ୍ଟି ଶୁଖି ଆସିଲା । ଧୀରେ ଧୀରେ ତାର ବଚନକାର ସ୍ରୋତ ବନ୍ଦ ହୋଇ ଆସିଲା । ଶେଷକୁ ଲାବଣ୍ୟଦେବୀ ଧୀର-ଗମ୍ଭୀର ସ୍ୱରରେ କହି ଉଠିଲେ—ତୋତେ ମୁଁ କିଛି ପଚାରୁ ନାହିଁ ମେନା, ତୋ ସୀମା ଭିତରେ ତୁ ରହିଥା । ମୋର ଭଉଣୀ ସୁବର୍ଣ୍ଣ । ମୁଁ ତାକୁ ପଚାରିବି କି ସେ ତାର ଜବାବ ଦେବ । ମୋର ଭାଗ୍ୟ ଦୋଷରୁହିଁ ତୋତେ ଏତେ କଥା କହିବାକୁ ମୋ ଭଉଣୀ ସାହାସ ଦେଇଛି । ତାର ଭଲ-ମନ୍ଦ ମୁଁ ବୁଝିବି । ତୁଉଠା କଏ ଲୋ ?

ନିଜ ପାଟିରେ ହାତ ଦେଇ ମେନକା ତୁନି ହୋଇ ପକ୍‌କା ଖୁଣ୍ଟର ଉଢ଼ୁଆଳକୁ ଘୁଞ୍ଚିଯାଇ ଛିଡ଼ା ହେଲା । ସୁବର୍ଣ୍ଣଦେବୀ ବଡ଼ ଭଉଣୀ ମୁହଁ ଆଡ଼କୁ ମୁଣ୍ଡ ଟେକି ଚାହିଁ ପାରୁ ନାହାନ୍ତି । ପୁଣି ଥରେ ଲାବଣ୍ୟ ପଚାରିଲେ—କହ ସୁବର୍ଣ୍ଣ, ଏ ପିଲା କାହାର ? ସାନ ଭଉଣୀ ହୋଇ ତୁ ମୋ ପ୍ରତି ବିଶ୍ୱାସଘାତକତା କରିନାହୁଁ କି ? ଅନା ମୋ ମୁହଁ ଆଡ଼କୁ । କହ, ଏ ପିଲାଟି ଜନ୍ମ କରିଛି କିଏ ?

ସୁବର୍ଣ୍ଣଦେବୀ ନାନୀ ଆଡକୁ ଅନାଇ ପାରିଲେ ନାହିଁ । ତଳକୁ ମୁହଁ ରଖି କେବଳ କହିଲେ—ତୁମର ନାନି, ସବୁ କଥାରେ ସନ୍ଦେହ । ମେନା ତ କହିଲା, ମୁଁ ଆଉ କଅଣ କହିବି ?

ଲାବଣ୍ୟଦେବୀ—ମେନା, ମେନା, ମେନାକା ! ସେଇ ଘୁର ଦାସୀ ପିଲାଟା ତୋର ଆଉ ମୋର ସର୍ବନାଶ କଲା । ଆଉ ତାଆରି ଯୋଗେ ଏ ଘରଟା ଘୁରଖାର ହୋଇଯିବ ଦେଖୁଛି ।

ଲାବଣ୍ୟ ମେନା ଆଡ଼କୁ ଆଖି ଫେରାଇ ଏକପ୍ରକାର ଗର୍ଜନ କରି ଉଠିଲେ—କାହିଁକି ତୁ ଏଠି ଠିଆ ହୋଇ ରହିଛୁ ? ପୁଣି, ମୋର ସାମନାରେ ?

ମେନକା ଉପରୁରେ ପଳାଇଗଲା । ଏବଂ ତାଆରି ପଛେ ପଛେ ସୁବର୍ଣ୍ଣଦେବୀ ଚାଲି ଚାଲି ଚାଲିଗଲେ । ନିଜକୁ ସେ ବର୍ତ୍ତମାନ ସବୁ

ପ୍ରକାରେ ଲୁଚାଇ ରଖିବାକୁ ଚାହାନ୍ତି । ଅପରାଧୀର ମନ ଭିତରେ ଭିତରେ ନିଜକୁହିଁ ଚାବୁକ ମାରି ଦେବେଇ ରଖେ । 'ଚୋରମନ ଗଣ୍ଠିରେ ।' ଲବଣ୍ୟଦେବୀ କିନ୍ତୁ ତା ପଛେ ପଛେ ଗୋଡ଼େଇଗଲେ ନାହିଁ ।

ଲବଣ୍ୟ ଦେବୀଙ୍କ ସାମନାରୁ ମେନକା ପ୍ରାଣ-ଭୟରେ ପଳାଇ ଗଲା ! ଗଲାବେଳକୁ ହଠାତ୍ ତା ମନେ ପଡ଼ିଗଲା—ଗୋଟାଏ ଗୁରୁତର କଥା । ଲୁଚି ଲୁଚି ପଳାଇ ଯାଇ ରାୟସାହେବଙ୍କ ପଲଙ୍କଉପରେ ପଡ଼ିଥିବା ସୁବର୍ଣ୍ଣଦେବୀଙ୍କ ମାଣ୍ଡି ରେଜେଇ ଆଦି ୪୫ଟପଟ ଆର୍‌ଘରେ ଥିବା ଗୋଟିଏ ଖଟ ଉପରକୁ ନେଇଗଲା ଏବଂ ସେଠି ଶେଜଖଣ୍ଡେ ପାରି ଠିକ୍ କରିଦେଲା । ଚୁଆର ଦୋଳଟାକୁ ଅଞ୍ଚ ଚଞ୍ଚଳ ସେଘରକୁ ଘୁଞ୍ଚାଇ ନେଲା ।

କିନ୍ତୁ ଯେତେ ଯାହା କଲେ ସୁଦ୍ଧା ସତ୍ୟଟା ମିଥ୍ୟା ହୁଏ ନାହିଁ କି ମିଥ୍ୟାଟା ସତ୍ୟ ହୁଏ ନାହିଁ । ଘଣ୍ଟାଏ ଦେଢ଼ଘଣ୍ଟା ପରେ ଲବଣ୍ୟଦେବୀ ସ୍ୱାମୀଙ୍କ ଶୋଇଲା-ଘର ଭିତରକୁ ପଶି ଆସିଲେ । ଦେଖିଲେ ସୁବର୍ଣ୍ଣଙ୍କର କେତେଖଣ୍ଡି ଶାଢ଼ି ସେ ଘର ଅଲଗୁଣିରେ ଏବେବି ଥୁଆହୋଇଛି । ଚୁଆର ମୁତୁରା କନା କେଇଖଣ୍ଡି ଏବଂ ଅଏଲକ୍ଲଥ ଖଣ୍ଡିକ ଏବେ ବି ସେଇଘର ଭିତରେ ପଡ଼ି ରହିଛି । ତରବରରେ ମେନକା ସୁବର୍ଣ୍ଣ ଦେବୀଙ୍କ ରେଜେଇ ମାଣ୍ଡି ଆଦି ହଟାଇନେବା ବେଳେ ଏକଥା ଆଡ଼କୁ ଧ୍ୟାନ ଦେଇ ପାରିନାହିଁ । ଚୋରଲୁଗା ଉପରେ ତାଳ ପକାଇଲେ ସୁଦ୍ଧା ଚୋରଟା ଧରାପଡ଼ିଯାଏ । ଭୁଲକୁ ଘୋଡ଼ାଇବାକୁ ଚେଷ୍ଟା କରୁଥିବା ଲୋକ ଭୁଲ ଉପରେ ଭୁଲ, ତା ଉପରେ ଭୁଲ୍ କରିଯାଉଥାଏ । ଗମ୍ଭୀର ଭାବେ ହୁଙ୍କାର ଛାଡ଼ି ଲବଣ୍ୟଦେବୀ ମନକୁ ମନ କହି ଉଠିଲେ —ନାଟ ଲଗିଛି ! ସିଂହଦ୍ୱାରେ ମିରିଗନାଟ ! ଅସହ୍ୟ ।

ତାପରେ ଡମ ଡମ ହୋଇ କିଛି ସମୟ ଘର ଭିତରେ ପଦ ଚାରଣ କରି ଆପେ ଆପେ କହିହେଲେ—ଛି,ଛି ; ଗୁହକୁ ଠେକା ମାରିଲେ ମୁହଁକୁ ପଡ଼େ । କହିଲେ କୁଳକୁଟୁମ୍ବଙ୍କୁ ଲାଜ । କିନ୍ତୁ—

ନ କହିଲେ କୁଳ ଭସିଯାଉଛି ଯେ !

ଲାବଣ୍ୟଦେବୀ ରାତିଟି ରହିଲେ । ନାଭୁନ୍ତରେ ରାତିଟି ସାରା ସ୍ୱାମୀଙ୍କ ସହ ଖାଲି ବୋଲାବୋଲି ହୋଇଗଲା । ବାହାରକୁ କିନ୍ତୁ କେହି କିଛି ଜାଣିପାରିଲେ ନାହିଁ । ସର୍ବସହଣୀ ବସୁନ୍ଧରା ଭିତରେ ଖାଲି ଉଷ୍ମ ତରଳ ଧାତବ ବହ୍ନି ପ୍ରଚଣ୍ଡ ଉତ୍ତାପ ଯେମିତି ଅହରହ ଜଳୁଛି ପୋଡ଼ୁଛି । ସବୁକୁ ସହିନିଏ ବସୁନ୍ଧରା । ଭୂମିକମ୍ପରେହିଁ ପ୍ରାଣୀଜଗତ୍ ତାର ଆଭାସ ପାଇଥାଆନ୍ତି ମାତ୍ର । ଭୋର ବେଳକୁ ଧୀର ସ୍ୱରରେ ସ୍ୱାମୀଙ୍କି ସେ ପଚାରିଲେ—ସତ କୁହ, ଏ ପିଲାକୁ କିଏ ଜନ୍ମ କରିଛି ଏବଂ ଏ ପିଲାର ବାପା ତୁମେ ନୁହଁ ? ତୁମରି ନାକ, ତୁମରି ଆଖି, ତୁମରି ଚେହେରା ଛାଉଇ ଆଣିଛି ଇଏ । କହିବ ନାହିଁ ? କହି ପାରିବ ତୁମରି ନୁହଁ ବୋଲି ? ଛିଛି, କିଛି ଗୋଟାଏ କହି ଦେବାକୁ ମୋ ତୁଣ୍ଡ ଲେଉଟୁ ନାହିଁ । ସାନ ଭଉଣୀଟା ସେ ମୋର । ପଚାରିବ କହିବ ?—ସତେ ତାକୁ ସୁବର୍ଣ୍ଣ ପାଳି ଆଣିଛ ? ତା ସ୍ତନରୁ ଏ ଛୁଆ ଖୀର ଖାଉ ନାହିଁ ? ଆଚ୍ଛା ହଉ ଗୁହକୁ ଠେଲା ଫିଙ୍ଗିଲେ ନିଜ ଉପରକୁ ଛିଟିକିବ । ମୋର ଏତେ ଘଣ୍ଟା ଚକଟା ଦରକାର ନାହିଁ । ମାନ୍ୟଗଣ୍ୟ ଲୋକ ହୋଇ ଏତେ କୁତ୍ସିତ କମଟା କରିବସିଲ ? ବଂଶ ମର୍ଯ୍ୟାଦାକୁ ପୂରାପୂରି ନଷ୍ଟ କରିଦେଲ ? କଥାରେ କହନ୍ତି—

ଆରେ ରାବଣ ।
ଅଳପ କଥାକୁ ହରାଇଲୁ ବଡ଼ପଣ ?

ଆଚ୍ଛା ହଉ, ତୁମେ ସେଇ ସୁବର୍ଣ୍ଣକୁ ନେଇ ରୁହ । ମୁଁ ଗାଁକୁ ଚାଲି ଯାଉଛି ।

ନକୁଳବାବୁ ଭିତରେ ଭିତରେ ପୂରାପୂରି ଲଜ୍ଜିତ ହୋଇ ପଡ଼ିଥିଲେ ସୁଦ୍ଧା ଲାବଣ୍ୟ ଦେବୀଙ୍କ ଭର୍ତ୍ସନା ସହ୍ୟ କରି ପାରିଲେ ନାହିଁ । ଉତ୍ତେଜିତ ହୋଇ ଉଠିଲେ ।

ବଡ଼ଲୋକଙ୍କୁ ଉତ୍ତର ନାହିଁ ।
ସ୍ୱର୍ଗକୁ ନିଶୁଣୀ ନାହିଁ ।

ସେମାନେ ଭାବନ୍ତି—ଯାହା ସେ କରନ୍ତି, ଠିକ୍ ହଉ କି, ଭୁଲ ହେଉ—ତାଙ୍କ ଦୃଷ୍ଟିରେ ସବୁ ଠିକ୍ । ତେଣୁ କେହି କିଛି ତାଙ୍କୁ କହି ପାରିବେ ନାହିଁ ।

ଏ ବଡ଼ ଲୋକଙ୍କର ମତ
ଅଳପ ଲୋକେ ବିପରୀତ ।

ବଡ଼ ଲୋକଙ୍କ ଭୁଲ କଥାକୁ—ଆର୍ଷ-ପ୍ରୟୋଗ ରୂପେ ସମସ୍ତେ ଗ୍ରହଣ କରିନେବା ଉଚିତ ବୋଲି ସେମାନେ ଭାବନ୍ତି ।

ନିଜର ଭୁଲଟା ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଅଥଚ ଲାବଣ୍ୟ ଦେବୀ ଭୁଲଟାକୁ ଦେଖାଇ ଦେବାରୁ ନକୁଳବାବୁ ତମ ତମ ହୋଇ ଉଠିଲେ । କହିଲେ—ତୁମ କଥା ଗୁଡ଼ାକ ସୀମା ଲଙ୍ଘନ କରି ଯାଉଛି— ଲାବଣ୍ୟଦେବୀ ! ଅତିରିକ୍ତ ହୋଇଯାଉଛି । ତୁମେ ଯଦି ଗାଁକୁ ଚାଲିଯିବାକୁ ଇଚ୍ଛା କରୁଛ, ଚାଲିଯାଅ ପଛକେ । ମୋତେ ଯାହା ଭଲ ଲାଗିଲା ମୁଁ ତା କରିବି ନିଶ୍ଚୟ । ସେଥିରେ ବାଧାଦେବାର ଅଧିକାର ତୁମର ନାହିଁ ବୋଲି ଜାଣିରଖ । ଭୁଲ୍ କରୁଛି କି ଠିକ୍ କରୁଛି—ସେକଥା ପାଇଁ ମୁଁ ଦାୟୀ । ତୁମେ ନୁହଁ ।

ଉତ୍ତେଜିତ ଭାବେ ଫେରିଚାହିଁ ଲାବଣ୍ୟଦେବୀ କହି ଉଠିଲେ —ସ୍ୱାମୀର ଉଚ୍ଛୃଙ୍ଖଳତାକୁ ସଂଯତ କରିବାର ଦାୟିତ୍ୱ ସ୍ତ୍ରୀର ନିଶ୍ଚୟ ଅଛି ବୋଧହୁଏ ? ନୋହିଲେ ତୁମର ଇଚ୍ଛା ଯାହା ତୁମେ କରିବ ତ, ମୋର ଇଚ୍ଛା ଅନୁସାରେ ମୁଁ ବି ଗତି କରି ପାରିବି । ସୁବର୍ଣ୍ଣକୁ ନେଇ ତୁମେ ଯେବେ ଘରସଂସାର କରି ରହିବାକୁ ଚାହଁ, ତେବେ ରହିଥାଅ । ମୁଁ ଦୂରେଇ ଯାଉଛି ।

ନକୁଳବାବୁ ତକିଆ ଉପରକୁ ମୁଣ୍ଡଟେକି ଲାବଣ୍ୟଦେବୀଙ୍କ ଆଡ଼କୁ ଚାହିଁ ରହିଲେ, ଏବଂ ଲାବଣ୍ୟ ଦେବୀ ଧୀରେ ଧୀରେ ଘର ଭିତରୁ ବାହାରି ଆସିଲେ । ତେବେବେଳକୁ ରାତି ଅନେକ ବାକିଥାଏ । ଆକାଶରେ ଜହ୍ନ ନ ଥାଏ । ମିଟି ମିଟିକା କେତେଗୁଡ଼ିଏ ତାରକା ଏବଂ ଅଗଣା ଭିତରେ ଅସ୍ପଷ୍ଟ ଅନ୍ଧକାର । ଅନ୍ଧାରିଆ ପକ୍କା ଖୁଣ୍ଟ ଉଡ଼ୁଆଳରେ ଲୁକ୍କାୟିତ ଭାବରେ ଠିଆ ହୋଇ ରହିଥିଲା—ମେନକା । ରାତିଟି ସାରା କବାଟ ବାହାରକୁ ଠିଆହୋଇ ରହି ସ୍ୱାମୀ-ସ୍ତ୍ରୀଙ୍କ କଥାବାର୍ତ୍ତାକୁ କାନେଇ ରହିଥିଲା । ସେତେ ଲୁଚିଗଲେ ବି ତା ଉପରେ ଲାବଣ୍ୟଦେବୀଙ୍କ

ନଜର ପଡ଼ିଗଲା । ଧୀର ସ୍ୱରରେ ତାକୁ ଲକ୍ଷ୍ୟ କରି ସେ କହି ଉଠିଲେ —

"ଲୁଚୁଛ ନା ଗୋଡ଼ ଦୋଉଟି ଦିଶୁଛ !"

"ରାତିସାରା ଜାଗି ରହି ଝିକି ନାମାଙ୍କ ହୁକୁମ୍ ତାଲିମ କରୁଛୁ ? ତୁଇଏକା ଏ ବଂଶର ସର୍ବନାଶ କରି ପାରିବୁ ଦେଖୁଛି । ହେଉ ତେବେ ଯାହା କରୁଛୁ କରୁଛୁ ଆକୁଳାକୁ ଡାକିଦେ । କହ ଗାଡ଼ି ସଜ କରି ଆଣି ଦାଣ୍ଡ ପାହାଚ ତଳେ ଠିଆ କରାଉ । ମୁଁ ଗାଁକୁ ଯିବି । ଭୋର ହେବା ଆଗରୁ ମୁଁ ଏ ଘର ଛାଡ଼ିବି । ଝିକି ନାମାଙ୍କି କହିଦେବୁ ମୋତେ ମାରି ସେ ବି ନିଜେ ମରିବ । ବଡ଼ବଡ଼ ଘରର ସର୍ବନାଶର କାରଣ ଏଇପରି ଭାବରେ ଜଣେ ବିଜଣ ହୋଇ ଥାଆନ୍ତି । ତୋପରିପର ସର୍ବନାଶୀ ଚାକରାଣୀମାନେ ହିଁ ସେ ସର୍ବନାଶର କାରଣ ହୋଇ ଥାଆନ୍ତି । ମନ୍ଥରା ଦାସୀ ହିଁ କୈକେୟୀଙ୍କି ମତାଇ ରାମ, ସୀତା ଓ ଲକ୍ଷ୍ମଣଙ୍କୁ ବନବାସ ପଠାଇଲା । ପୁତ୍ର ଶୋକରେ ଦଶରଥ ମଲେ, ଏବଂ ସୀତା-ହରଣ ଘଟିଲା ଓ ରାମ ରାବଣ ଯୁଦ୍ଧ ଉପୁଜିଲା । ଏପଟେ ଅଯୋଧ୍ୟାର ରାଜ ବଂଶରେ ଏତେ ବଡ଼ ବିପଦ ଘଟିବା ସଙ୍ଗେ ସଙ୍ଗେ ରାବଣ ବଂଶ ଲୋପ ହେଲା । ଏଠି ଆମ ଘରକୁ ତୁଇ ଏକା ମେନକା, ମନ୍ଥରା କଳାହେନି ଆସି ପଶୁଛୁ । ଏଠି ରହି ମୁଁ ତୋର ଏ ଲୀଳାଖେଳା ସହି ପାରିବି ନାହିଁଲୋ ମେନକା, ମୁଁ ଏଠୁ ପଳାଇ ଯାଉଛି । ଡାକ, ଆକୁଳାକୁ । ରାତି ଥାଉଁ ଥାଉଁ ମୁଁ ବିଦାୟ ନେଇଯାଏଁ ।"

ଭୟ଼ୁଖିତା ମେନକାର ଗୋଟିପଣେ ହିହ ଥରୁଥାଏ । ଆକୁଳାକୁ ଡାକଦେବା ଆଳରେ ଲବଣ୍ୟଦେବୀଙ୍କ ସାମନାରୁ ସେ ପଳାଇ ଗଲା । ଅଳ୍ପ ସମୟ ପରେ ଆକୁଳା କଚୁଆନ ଘୋଡ଼ାଗାଡ଼ି ସଜ କରିଆଣି ଦାଣ୍ଡ ଦୁଆର ପାହାଚ ତଳେ ଛିଡ଼ା କରାଇଦେଲା । ସାଆନ୍ତାଣୀଙ୍କୁ ସେ ଭାରି ଭୟ କରେ । ଏକବସ୍ତ୍ର ଅବସ୍ଥାରେ ଲବଣ୍ୟ ଦେବୀ ଅଧୂଆ ମୁହଁରେ ଗାଡ଼ି ଭିତରକୁ ଉଠି ବସିଲେ । ସାଆନ୍ତାଣୀଙ୍କ ଆଜ୍ଞା—ଗାଁକୁ ଯିବେ । ଘର ଗାଡ଼ି ନ ପାଇଲେ ଚୂଲ ଚୂଲ ବଜାରକୁ ପଳାଇ ଯାଇ ଭଡ଼ାଗାଡ଼ି ଠିକ୍ କରିନେବେ । ତାଙ୍କର ଗୋଟିଏ କଥା । କଥା ଯାହା—କାମ ତାହା ।

ଗଙ୍ଗା ବୋଲେ ଥିବ
ଗାଙ୍ଗୀ ବୋଲେ ଯିବ ।

ହାତରେ ଚାବୁକ ଧରି ଆକୁଳା କାଚୁଆନ ଲାବଣ୍ୟଦେବୀଙ୍କୁ ମୁଣ୍ଡିଆ ମାରି ଦଣ୍ଡବତ ହୋଇ ପରେ କୋଚବାକ୍ସ ଉପରକୁ ଉଠିଗଲା । ବାଁ ହାତରେ ଘୋଡ଼ା ଦୁଇଟାଙ୍କ ଲଗାମକୁ ଭିଡ଼ିଧରି ପାଏଁ ପାଏଁ ଚାବୁକ ପିଟିଦେଲା । ଲାବଣ୍ୟଦେବୀଙ୍କୁ ଘେନି ବଗିଗାଡ଼ି ଖଣ୍ଡିକ ମଞ୍ଜିମଞ୍ଜିଆ ଗୋଧୂଳିବେଳା ଖୁଣ୍ଟର କ୍ଷୀଣ ଆଲୁଅ ଭିତରେ ଆଗେଇ ଚାଲିଲା । ଆକାଶରେ ଅଧା ଆଲୁଅ ଅଧା ଅନ୍ଧାର । ବଗି ଗାଡ଼ିରେ ଜଳୁଥାଏ ଦୁଇଟା କିରାସିନ ବତୀ । ଲାବଣ୍ୟଦେବୀଙ୍କୁ ବିଦାୟ ଦେବା ପାଇଁ ଦାଣ୍ଡ ପାହାଚ ଯାଏ କେହି ଆସିଲେ ନାହିଁ । ସେତେବେଳେ ଏତେ ବଡ଼ ଘରଟା ଭିତରେ ତିନି ଜଣ ଜାଗିରହି ଥାଆନ୍ତି । ନକୁଳବାବୁ, ସୁବର୍ଣ୍ଣଦେବୀ ଓ ମେନକା ଦାସୀ । ଆଗକୁ ଆସିବାକୁ କାହାରି ଲେଶମାତ୍ର ସାହସ ନ ଥାଏ । ଅପରାଧୀର ମନ ଘେନି ତିନିହେଁ ଯାକ ଅନ୍ଧାରିଆ ଖଞ୍ଜା ଭିତରେ ଲୁଚି ରହିଥାଆନ୍ତି । ଘୃଣା ଓ କ୍ରୋଧରେ ଜର୍ଜରିତ ହୋଇ ଏକୁଟିଆ ଲାବଣ୍ୟଦେବୀ ଘର ଛାଡ଼ି ଗାଁକୁ ବାହାରିଛନ୍ତି । ବାଁହାତରେ ଘୋଡ଼ାର ଲଗାମ ଭିଡ଼ିଧରି କାଚୁଆନ ଆକୁଳା ଘୋଡ଼ାଙ୍କ ପିଠିରେ ପାଏଁ ପାଏଁ ଚାବୁକ ପିଟି ଚାଲିବାକୁ ନିର୍ଦ୍ଦେଶ ଦେଲା । ଭୂଇଁ ଉପରେ ଟାପୁ ଟପ ଟପ କରି ଘୋଡ଼ା ଦୋଓଟି ଦୌଡ଼ିଲେ । ରାତି ପାହିନାହିଁ—ସାଆନ୍ତାଣୀଙ୍କର ହଠାତ୍ ଆଦେଶ, ଏକୁଟିଆ ଗାଁକୁ ଯିବେ । ବଳେଇ ଦେବାକୁ କେହି ଆସୁ ନାହାନ୍ତି । ଏଇସବୁ କଥାକୁ ମନ ଭିତରେ ଓଜନ କରୁ କରୁ ଚିନ୍ତାର କିଛି କୂଳକିନାରା ନ ପାଇ ଆକୁଳା ମନେ ମନେ ସ୍ଥିର କରିନେଲା—

ବଡ଼ଲୋକ ଘରେ ବଡ଼ବଡ଼ କଥା ।
ଏସବୁ ଗହନରେ ଆମର ଚାଷ କାହିଁ ?

ଲାବଣ୍ୟଦେବୀ ଏକୁଟିଆ ଗାଁକୁ ଚାଲିଗଲେ । ତକିଆ ଉପରେ ମୁହଁଟାକୁ ମାଡ଼ି ରଖି ନକୁଳବାବୁ ଶେଜ ଉପରେ ପଡ଼ି ରହିଲେ । ଅନ୍ୟଘରେ ଛୁଆଟିକି କୋଳରେ ଧରି ସୁବର୍ଣ୍ଣଦେବୀ ବିଛଣା ଉପରେ

ଛଟପଟ ହେଉ ଥାଆନ୍ତି । ଆଖିକି ନିଦ ନାହିଁ କି ତୁଣ୍ଡରେ କଥା ନାହିଁ । ଧୀରେ ଧୀରେ ମେନକା ପାଖକୁ ଆସି ଅନୁଛ ଖଟକୁ ଲାଗି ମେଜିଆ ଉପରେ ବସିପଡ଼ିଲା । ମୁହଁକୁ ମୁହଁ ଲଗାଇଲା ପର ରହି ରାତର ଘଟନା ସବୁ ଟିକିନିଖି ବର୍ଣ୍ଣନା କରିଗଲା— ଧୀର ସ୍ୱରରେ ଆଦ୍ୟରୁ ପ୍ରାନ୍ତ ଯାକେ । ନିର୍ଜୀବ ପ୍ରାୟ ପଡ଼ି ରହି ସୁବର୍ଣ୍ଣଦେବୀ ଆଦ୍ୟରୁ ପ୍ରାନ୍ତଯାକେ ଗୋଟି ଗୋଟି ହୋଇ ସବୁକଥା ଶୁଣିଲେ । ଗୋଟିକ ପରେ ଆଉ ଗୋଟିଏ, ତାପରେ ଆଉ ଗୋଟିଏ ଦୀର୍ଘ ନିଃଶ୍ୱାସ ଟାଣିବାକୁ ଲାଗିଲେ । ଛାତି ଉପରେ ଶିଳାର ବୋଝ ହାଲୁକା ହେବ କଅଣ, ବଢ଼ିବାକୁ ଲାଗିଲା । କେତେବେଳକେ ନକୁଳବାବୁ ବାହାରୁ ଡାକିଲେ—ମେନା, ପାଣି ଆଣ, ମୁହଁ ଧୋଇବ । ଟିକି ନାନୀଙ୍କି କହ ଉଠିଯିବାକୁ । ଯାହା ହେବାର ହେଲାଣି । ଏଣିକି ଯାହା ଘଟିବ ତାକୁ ସହ୍ୟ କରିବାକୁ ହିଁ ପଡ଼ିବ ।



ଉଦୟବେଳେ ଅସ୍ତ ନାହିଁ କି, ଅସ୍ତବେଳେ ଉଦୟ ନାହିଁ । ଊଣେଇଶି ଶହ ବୟାଳିଶିରୁ ଊଣେଇଶି ଶହ ଅଡ଼ଚାଳିଶ ଯାକେ ଇଂରେଜମାନେ ଭାରତରେ ଅସ୍ଥିର ହୋଇ ପଡ଼ିଲେ । ରାୟ ସାହେବ ଓ ରାୟବାହାଦୂର ପଦବୀଭୂଷିତ କ୍ଷମତାପନ୍ନ ବ୍ୟକ୍ତିମାନଙ୍କୁ ସେମାନେ ଇଂରେଜ ରାଜତ୍ୱର ସ୍ତୁତିଗାନ କରିବା ନିମନ୍ତେ ବଳାବଳି କଲେ । ଏମାନଙ୍କ ଭିତରୁ ଅଧିକାଂଶ ବ୍ୟକ୍ତି ନିଜ ନିଜର ପଦବୀମାନ ଫେରାଇ ଦେଲେ ସିନା ଇଂରେଜମାନଙ୍କ କଥାରେ ଭୁଲିଗଲେ ନାହିଁ । ଜନସାଧାରଣଙ୍କ ମଧ୍ୟରେ ସେହିମାନଙ୍କର ଗୌରବ ବଢ଼ିଲା । କିନ୍ତୁ ରାୟସାହେବଙ୍କୁ ଦୁର୍ବୁଦ୍ଧି ଧରି ବସିଲା । ଇଂରେଜ ସରକାରଙ୍କ ଦପ୍ତରରୁ ତାଙ୍କୁ ରାୟ ବାହାଦୂର ପଦବୀ ମିଳିଗଲା । ଇଂରେଜମାନଙ୍କ ସ୍ତୁତିଗାନ କରିବାକୁ ସେ ଲାଗି ପଡିଲେ । ପ୍ରଚୁର ଅର୍ଥ ପାଇଗଲେ ମଧ୍ୟ । 'ଶବ୍ଦ ରତ୍ନାକର'ର ଅନ୍ୟାନ୍ୟ ତରଙ୍ଗ ଗୁଡ଼ିକର ସଂକଳନ ଶେଷ କରାଇ ପ୍ରକାଶ କରାଇବାକୁ ସେ ତଦ୍ୱାରା ସମର୍ଥ ହୋଇ ପାରିଲେ । ମାତ୍ର ଦେଶବାସୀ ଜନତାଙ୍କ ମଧ୍ୟରେ ସେ ନିଜର ଗୌରବ ଓ ସମ୍ମାନକୁ ଏକାବେଳକେ ହରାଇ ବସିଲେ । ଘରେ ବାହାରେ ସବୁଆଡ଼େ ସେ ଲୋକଙ୍କ ନିକଟରେ ଲଜ୍ଜିତ ହେବାକୁ ଲାଗିଲେ । ସର୍ବଗୁଣସମ୍ପନ୍ନ ବିଦ୍ୱାନ ପଣ୍ଡିତ ନକୁଳ ବାବୁ ସାମାନ୍ୟ କିଛି ଭୁଲ୍ ଲାଗି ନିଜର ସମସ୍ତ ଗୌରବ ପୂରାପୂରି ହରାଇ ବସିଲେ ।

ଏକୋହି ଦୋଷୋ ଗୁଣରାଶିନାଶୀ

ଦରିଦ୍ର ଦୋଷା ପହତା ଭବନ୍ତି ।

ସଭା ସମିତିରେ ଲୋକେ ତାଙ୍କୁ ଛି ଛାକର କରିବାକୁ ଲାଗିଲେ । ଦେଶ ସ୍ୱାଧୀନତା ପାଇଲା ଏବଂ ଇଂରେଜମାନେ ଭାରତ

ଛାଡ଼ି ପଳାଇ ଗଲେ । ନକୁଳବାବୁଙ୍କୁ ଲୋକେ ଏକ ପ୍ରକାର ମାରି ଗୋଡ଼ାଇଲେ । କିଛିଦିନ ସେ ଏକୁଟିଆ ହୋଇ ନିଜ ଘରେ ଚଳପ୍ରଚଳ ହେଲେ । ବାହାରକୁ ଆଦୌ ବାହାରି ପାରିଲେ ନାହିଁ । ତାଙ୍କ ଆକୁଳ ପଣିଆ ଦେଖି ସୁବର୍ଣ୍ଣ ଦେଖି ପରାମର୍ଶ ଦେଲେ—ଦେଖ, ତୁମେ କିଛିକ ସହରରେ ରହିବାକୁ ସୁସ୍ଥ ମନେ କରୁନାହଁ । ତେବେ କିଛିଦିନ ଗାଆଁକୁ ଯାଇ ବିଶ୍ରାମ ନିଅ ! ନୂଆ ଘରେ ରହିବ, ଲୋକବାକତ ଅଛନ୍ତି । କହିବ ତ ମୁଁ ସଙ୍ଗରେ ଯିବି ।

ନକୁଳବାବୁ—କିନ୍ତୁ ସେଠି ସେ ଦୁର୍ନାମ ! ତୁମେ ଏ ପିଲାଟିକି ଧରି ସେଠିକି ଗଲେ ଗାଁଲୋକେ ତୁମକୁ ଖାଁ ଖାଁ ଗୋଡ଼େଇବେ ଯେ !

ସୁବର୍ଣ୍ଣ ଲଜ୍ଜିତ ଭାବରେ ଜବାବ ଦେଲେ—ସେ କଥା ବି ସତ ।

ଅପରାଧୀର ମନ, କଥା କଥାକେ ଦବି ଯାଉଛି ଯେ ! ନକୁଳ ବାବୁଙ୍କୁ ସେ କହିଲେ—ତେବେ ଏଥର ତୁମେ ଏକା ଏକା ଯାଅ । ନାନା ପାଖକୁ କିନ୍ତୁ ଯିବ ନାହିଁ । ସେ ଯେବେ ଛାଏଁ ଛାଏଁ ଆସିବେ ତେବେ ଯାଇଁ ଯାହା । ଏତେ ଗର୍ବ ତାଙ୍କର ? ସେ ତୁମର ସୁଖ ଶରଧା ଦେଖି ପାରୁନାହାନ୍ତି ! ପୁରୁଷ ପିଲା ତୁମେ, ଯାହା ପାଖରେ ଇଚ୍ଛା ତା ପାଖରେ ବସ ଉଠ କଲ, ସେଥିରେ ତାଙ୍କର କଅଣ ଯାଏ ଆସେ ? ସେତ ତମର କି ମୋର, ଶିରି ଦେଖି ପାରୁ ନାହାନ୍ତି !

ନକୁଳବାବୁ ନୀରବରେ ଦୀର୍ଘ ନିଶ୍ୱାସଟିଏ ଟାଣି ନେଇ ମେଳଘର ଭିତରେ ଏପଟ ସେପଟ ପାଦ ପକାଇ ଚିନ୍ତିତ ମନରେ କିଛିକ୍ଷଣ ଟହଲ ମାରିଲେ । ତାପରେ କହିଲେ—ହଉ ତେବେ ସେଇ କଥା କରିବି । କିଛିଦିନ ପାଇଁ ଗାଁକୁ ଯାଇ ନୂଆକୋଠାରେ ବିଶ୍ରାମ କରିବି । କଚୁଆନକୁ ବରାଦ ଦିଅ , କାଲି ସକାଳୁ ମୋ ଜିନିସପତ୍ର ଗାଡ଼ିକି ଉଠାଉ । ଆଜି ଆଗତୁରା ଲୋକ ପଠାଇ ସେଠା ଖମାରିକି ହୁକୁମ ପଠାଅ । ଘର ସଫା କରି ରଖିବ । ମୁଁ କାଲି ଦିନ ଦଶଟାବେଳକୁ ପହଞ୍ଚିବି । ସେଇଠି ସେ ଖାଇବା ବରାଦ କରିଥିବ । ଏଠି ଛୁଆଟି ରହିଲା, ଆଉ ତୁମେ ରହିଲ ।

ସୁବର୍ଣ୍ଣ କହିଲେ—କିଛି ଚିନ୍ତା ନାହିଁ । ମେନକା ମୋ ପାଖରେ ଥିଲେ, ଅସୁବିଧା କିଛି ହେବନାହିଁ ।

ତହିଁ ଆରଦିନ ସକାଳୁ ବଗିଗାଡ଼ି ନକୁଳବାବୁଙ୍କୁ ଘେନି ସହର ଛାଡ଼ିଲା ଏବଂ ଦଶଟାବେଳକୁ ଗାଁରେ ପହଞ୍ଚିଲା । ନୂଆ କୋଠା ଫାଟକ ଭିତରକୁ ଗାଡ଼ି ପଶିଗଲା ବେଳକୁ ନକୁଳବାବୁ ଦେଖିଲେ ଚାକର, ଖମାର ଛଡ଼ା ଆଉ କେହି ତାଙ୍କୁ ପଛୋଟି ନେବାକୁ ଆସି ନାହାନ୍ତି । ଗାଁ ଲୋକଙ୍କ ଭିତରୁ କାହାର ଦେଖାନାହିଁ । ବାବୁଙ୍କ ମନ ଛାଏଁ ଛାଏଁ ଫିକା ପଡ଼ିଯାଉଛି । ପୂର୍ବ ଗୌରବ ତାଙ୍କର ଲୋପ ପାଇ ଯାଇଛି । ଗାଁ ଲୋକେ ତାଙ୍କୁ ପୂରାପୂରି ଘୃଣା କରି ବସିଛନ୍ତି । ମୁହଁ ଉପରେ କେହି କିଛି ନ କହି ପାରିଲେ ସୁଦ୍ଧା, ରାୟସାହେବ ନକୁଳବାବୁ ନିଜ ଦୋଷରୁ ପୂର୍ବଗୌରବ, ପୂର୍ବ ମାନସମ୍ମାନ ପୂରାପୂରି ହରାଇ ବସିଛନ୍ତି । ବିଷନ୍ନ ମନରେ ସେ ଗାଡ଼ିରୁ ଓହ୍ଲାଇ ପାହାଚ ଉପରକୁ ଉଠିଲେ ଏବଂ ନିଜକୁ ସେ ନିଜେ ଅତି ଛୋଟ ବୋଲି ଜାଣି ପାରିଲେ ।

ଚଉଡ଼ା ବରଣ୍ଡା ଉପରେ ପଡ଼ିଥିବା ଚଉକି ଖଣ୍ଡିକ ଉପରେ ବସିପଡ଼ିଲା ବେଳକୁ ଚାକର ବାକର ଆଗକୁ ଆସି ଭୂଇଁ ଉପରେ ମୁଣ୍ଡିଆ ମାରିଲେ ସତ, ମାତ୍ର ନକୁଳବାବୁ ଜାଣି ପାରିଲେ ସେମାନେ ବି ତାଙ୍କୁ ମନେ ମନେ ନିଶ୍ଚୟ ଘୃଣା କରୁଛନ୍ତି । ସେମାନଙ୍କ ମୁହଁରେ ସତେକି କର୍ତ୍ତବ୍ୟ ଅନୁରୋଧରେ କୃତ୍ରିମ ହସରେଖା ଫୁଟି ଉଠୁଚି !

ପ୍ରଥମଥର ପାଇଁ ନକୁଳବାବୁ ବୁଝିପାରିଲେ—ସତକୁ ସତ ଏ ଘରୁ ଲକ୍ଷ୍ମୀ ଛାଡ଼ି ଗଲାଣି । ଏଡ଼େ ବଡ଼ ଘରଟା ଖାଁ ଖାଁ ଗୋଡ଼ାଉଛି । ତାଙ୍କର ମନେ ହେଲା—ସତେକି ସେ ଶ୍ମଶାନଟାରେ ଆସି ପହଞ୍ଚି-ଯାଇଛନ୍ତି । କିଛି ସମୟ ନୀରବରେ ବସି ରହିଲେ ରାୟସାହେବ । ଚାକର ଜଣେ ପାଣି ବାଲଟିଏ ଏବଂ ଥାଳଟାଏ ଆଣି ପାଦଧୋଇ ଦେବା ପାଇଁ ଅପେକ୍ଷା କରି ଛିଡ଼ା ହୋଇ ରହିଲା । କାନ୍ଧ ଉପରେ ସଫା ଗାମୁଛାଟାଏ

ଧରି ସେ କେବଳ ହୁକୁମକୁ ଅପେକ୍ଷା କରି ରହିଲା । ପାଦରୁ ଫିତା ଫିଟାଇ ଜୋତା ଖୋଲିବା ପାଇଁ ପାଖେଇ ଆସୁଛି ସେ, ମାତ୍ର ରାୟସାହେବ ଏକଲୟରେ ସାମନାରେ ଠିଆ ହୋଇଥିବା ନାଗେଶ୍ୱର ଗଛଟିଆଡ଼କୁ ଚାହିଁରହି ଦୀର୍ଘ ନିଃଶ୍ୱାସଟିମାନ ଛାଡୁଛନ୍ତି । ମନେ ମନେ ଭାବୁଛନ୍ତି—କ୍ୱ ଗତା ମଥୁରା ପୁରୀ

କ୍ୱ ଗତୋତ୍ତର କୋଶଳ ।

ସେ ମଥୁରାପୁରୀ କାହିଁ, ଆଉ ସେ ଉତ୍ତର କୋଶଳ କାହିଁ ?

ଯାଇଛି ଓ ଯାଉଛି । ଗୋଟି ଗୋଟି ହୋଇ ସବୁ ଚାଲି ଯାଉଛି । ଇଂରେଜମାନେ ଏ ଦେଶକୁ ଛାଡ଼ି ପଳାଇବାକୁ ବାଧ୍ୟ ହେଲେ । ରାଜାଙ୍କ ହାତରୁ ଜବରଦସ୍ତ କ୍ଷମତା ଛଡ଼ାଇ ନିଆଗଲାଣି । ଏଥର ଆସୁଛି ଜମିଦାର ଓ ମକଦ୍ଦମମାନଙ୍କ ପାଳି । ତାପରେ ମାନ୍ୟଗଣ୍ୟ ବଡ଼ଲୋକମାନେ ଦାଣ୍ଡର ଭିଖାରୀ ପାଲଟିବେ । ଗଲା, ଗଲା ସବୁ ଗଲା । ସବୁ ଠିକ ଯିବ ଯିବ ହେଲାଣି ।

ଛାମୁକରଣ ବୁଢ଼ା ଭିତରପଟୁ ଆସି ଓଳଗି ହୋଇ କହି ଉଠିଲେ—ପାଦ ଧୋଇବା ହୁଅନ୍ତୁ । ଏତେ ବାଟ ଆସି ଭୋକ ଲାଗିବଣି ।

ବାବୁ ତାଙ୍କ ଆଡ଼କୁ ଅନାଇ ଧୀର ସ୍ୱରରେ ପଚାରିଲେ—ସାଆନ୍ତାଣୀ କେମିତି ଅଛନ୍ତି ? ଆସନ୍ତି ଏଣିକି ?

ମୁଣ୍ଡ ନୁଆଁଇ ତଳକୁ ଚାହିଁ ଦୀର୍ଘଶ୍ୱାସ ଟାଣି ଛାମୁକରଣେ କହିଲେ—ଭଲ ଅଛନ୍ତି । ପୁରୁଣା ଘରେ ।

ବାବୁ—ଏଠିକି ଆସନ୍ତି କେବେ ?

ଛାମୁକରଣ—ନାହିଁ ଆଜ୍ଞା ।

ବାବୁ—ଡାକିଥିଲ କେବେ ?

ଛାମୁକରଣେ—ହଜୁର ।

ବାବୁ—ଆସିବାକୁ ନାହିଁ କଲେ ?

ଛାମୁକରଣ—ମୁଣ୍ଡନୁଆଇଁ ନୀରବ ରହିଗଲେ ।

ନକୁଳବାବୁ ଛାମୁକରଣଙ୍କ ନୀରବ ଉତ୍ତର ବୁଝିପାରି କହିଲେ—ଆଉଥରେ ଯିବକି ଛାମୁ କରଣେ ?

ଛାମୁକରଣେ—ଆଜ୍ଞା ।

ବାବୁ—କହିବ ମୁଁ ଡାକୁଛି ବୋଲି ।

ଛାମୁକରଣ—ଆଜ୍ଞା ।

ବାବୁ—ଦୀର୍ଘଶ୍ୱାସ ଟାଣି ପଚାରିଲେ—ତେବେ ବି କଅଣ ସେ, ଆସିବେ ନାହିଁ ?

ଛାମୁକରଣ—ତଳକୁ ମୁହଁ କରି, ନୀରବ ରହିଗଲେ ।

ବାବୁ—ମୁଁ ଡାକିଛି ବୋଲି କହିଲେ ବି ଆସିବେ କି ନାହିଁ ତୁମର ସନ୍ଦେହ ହେଉଛି ?

ଛାମୁକରଣ ନୀରବ ରହିଗଲେ ।

ଗୃହର ପିଲାଟି ପାଦ ପାଖକୁ ବସିପଡ଼ି ଜୋତାର ଫିତା ଫିଟାଇ ଜୋତା କାଢ଼ିଦେଲା । ଛାମୁକରଣେ ତାକୁ ଆଦେଶ ଦେଲେ ପାଦ ଧୋଇ ପୋଛି ଦେ ।

ଭିତରକୁ ଚାଲିଗଲେ ଛାମୁକରଣେ ।

ବାବୁଙ୍କ ପାଦ ଧୂଆଗଲା । ପୋଛାଗଲା । ସେ ଧୀରେ ଧୀରେ ଭିତରକୁ ଉଠିଗଲେ । ବହଳ ବିଛଣା ପଡ଼ିଥିବା ଖଟଟି ଉପରେ ଲମ୍ବହୋଇ ଶୋଇପଡ଼ି ମନେ ମନେ ଭାବିବାକୁ ଲାଗିଲେ—ଆସିବେ ନାହିଁ ? ଡକାଇଲେ ବି ଆସିବେ ନାହିଁ ?

ଖିଆପିଆ ସରିଲା । ବାବୁ ବିଶ୍ରାମ ନେଲେ । ସଞ୍ଜ ବେଳକୁ ଛାମୁକରଣ ବୁଢ଼ାଙ୍କୁ ପଠାଇଲେ ବାବୁ—ଯାଅ, ସାଆନ୍ତାଣୀଙ୍କି ଡାକି ଆଣିବ ।

ସେ ବି ଗଲେ ଏବଂ ଫେରିଆସିଲେ । ନୂଆକୋଠା ଓ ପୁରୁଣା ଖଞ୍ଜା ଭିତରେ ବ୍ୟବଧାନ ମାତ୍ର ତିନି ଚାରିଶହ ଗଜ । ତଥାପି ବାବୁ ଓ ବାବୁଆଣୀଙ୍କ ମନର ଦୂରତ୍ୱ ଲକ୍ଷ ଲକ୍ଷ ମାଇଲଠାରୁ ବଳି ପଡ଼ୁଛି । ବାବୁଙ୍କ ଚରିତ୍ରହୀନତାର ଦୁର୍ଲଙ୍ଘ୍ୟ ପର୍ବତମାଳା ଲାବଣ୍ୟ ଦେବୀଙ୍କ ସାମନାରେ ଦୁର୍ଭେଦ୍ୟ ପ୍ରାଚୀର ପରି ଛିଡ଼ା ହୋଇଯାଇଛି । ସେ ପୁଣିପୁଣି ମନାକରି ପଠାଇଲେ । ଗ୍ରାମୁକରଣଙ୍କୁ ସେ ଛଳଛଳ ଆଖିରେ କହିଲେ—ଗ୍ରାମୁକରଣେ ତୁମେ ଏ ଘରେ ବୁଢ଼ାହେଲ । ଜାଣିପାରିଲ ନାହିଁ ମୋ ମନକୁ ? କେଉଁ ମୁହଁରେ ସେ ଡାକି ପଠାଇଛନ୍ତି ଏବଂ କେଉଁ ମୁହଁ ନେଇ ତୁମେ ଆସି ଡାକୁଚ ମୋତେ ? କୋଉକଥା ତୁମକୁ ଅଜଣା ?

ଗହୀରିଆ ଦୀର୍ଘ ନିଶ୍ୱାସ ଛାଡ଼ି ବୁଢ଼ା ଗ୍ରାମୁକରଣ ଆଖିପୋଛି ନିଜ ଆଖିର ଲୁହ ଧାରକୁ ସଫା କରୁ କରୁ କାନ୍ଦ କାନ୍ଦ ସ୍ୱରରେ କହିଲେ—ସବୁ ଖବର ମୁଁ ପାଇଛି ମା । ତେବେ ବି ତ ଆପଣ ଲୋକ ନିନ୍ଦାକୁ ଏଡ଼ିଦେବାର ଉପାୟ କରିବେ ?

ଲାବଣ୍ୟ—କଅଣ ଆଉ ବାକି ଅଛି ଗ୍ରାମୁକରଣେ ? ଲୋକ ନିନ୍ଦା ? ଲୋକେ କଅଣ ଆଉ ଜାଣି ନାହାନ୍ତି ? କଅଣ ସେ କରି ନାହାନ୍ତି ! ମୁଁ ତାଙ୍କ ପାଖକୁ ଆଉ କାହିଁକି ଯିବି ? କହିବ—କାହାର ଅଇଁଠାପତ୍ର ଚାଟିବାକୁ ସାଆନ୍ତାଣୀ ପ୍ରସ୍ତୁତ ନୁହନ୍ତି ।

ଗ୍ରାମୁକରଣେ ଲେଉଟି ଆସିଲେ । ବାବୁ ଯେତେ ଯାହା ପଚାରି-ହେଲେ ସେ ତାର କୌଣସି ଉତ୍ତର ନ ଦେଇ ନୀରବ ରହିଗଲେ ।

ବାବୁ ମନେ ମନେ ଭାବିଲେ—ଉଦ୍ଧତପଣିଆରେ ଲାବଣ୍ୟ ଦେବୀ ତାଙ୍କୁ ଅବଜ୍ଞା ପ୍ରଦର୍ଶନ କରୁଚନ୍ତି । ଡକାଇ ପଠାଇଲେବି ଆସିଲେ ନାହିଁ ।

କ୍ରୋଧରେ ଜର୍ଜରିତ ହୋଇ ଚାକର ବାକରଙ୍କୁ ବାବୁ ହୁକୁମ ଦେଇ ପୁରୁଣା ଘରୁ ସବୁ ଜିନିଷପତ୍ର ନୂଆକୋଠାକୁ ଉଠାଇ ଆଣିଲେ । କେବଳ ବାକି ରହିଗଲା—ଧାନ କୋଠି ଓ ଧାନଡିକ । ରାଗରେ

ଜର୍ଜରିତ ହୋଇ ସେ ହୁକୁମ ଦେଲେ—ସାଆନ୍ତାଣୀ ସେଇଘରେ ମରିବା-ଯାକେ ଏକୁଟିଆ ରହିବେ । ଖିମା ଚାକର ଏକା ସେ ଘରେ ରହି ତାଙ୍କର ତତ୍ତ୍ୱ ନେବ । ଆଉ କେହି ତାଙ୍କପାଖକୁ ଯିବାର ଯେବେ ଶୁଣିବ, ତେବେ ମୁଁ ତାକୁ ବିଦାୟ କରିଦେବ ।

ସେଇଦିନୁ ଲାବଣ୍ୟଦେବୀ ସେଆଡ଼େ ଏବଂ ଏମାନେ ଏଆଡ଼େ । ଗୃହର ଚାକରମାନଙ୍କୁ ଅଙ୍ଗୁଳି ଦେଖାଇଲେ ବାହାଯାକେ ଗିଳିଯିବା ପାଇଁ ସେମାନେ ପ୍ରସ୍ତୁତ ।

ବାବୁ ହୁକୁମ ଦେଲେ—ସାଆନ୍ତାଣୀ କେହିନୁହେଁ । ହାତଟେକି ଦେଲେ ସେ ଚଳିବେ । ଗୃହରମାନେ ନିଜ ନିଜ ହାତରେ ଚଉଦପା ପାଲଟି ଗଲେ । ଗୁମୁକରଣ ବୁଢ଼ାଙ୍କୁ ସେମାନେ ଏ ଘାଟରେ ବୁଡ଼ାଇ ସେ ଘାଟରେ ଉଠାଇଲେ ବି ତାଙ୍କ ପାଟିରୁ କଥା ବାହାରିବ ନାହିଁ । ଭୁଞ୍ଜାକୁ ତ ସେ ଲେଖିଲେକ । ମାଲିକ ନଥିଲି ବେଳେ ଯିଏ ଯାହା ପାଇଲା ସେ ତା ବୋହି ନେଲା ।

ମାଇଲି ମୁଷା ପରି ଲାବଣ୍ୟ ଦେବୀ ପୁରୁଣା ଖଞ୍ଜାରେ ଏକୁଟିଆ ପଡ଼ିରହିଲେ । ବୋଲହାକ, ଟହଲଟୁକୁରକୁ ଏକା ରହିଲା—ଖିମା ଗୃହର । ପୁରା ନା ଖିମସେନ ରାଉତ । ଜାତି ଖଣ୍ଡାଏତ । ବୟସ ତିରିଶ କି ପଇଁତିରିଶ ହେବ । ଗୋରା ଦେହ । ବଳିଲା ବଳିଲା ପରି ହାତ ଗୋଡ଼ । ଖାଇବେଳେ ବସି ବସି ସେ ଗୁନ୍ଦ ଚଉତିଶା ବୋଲୁଥାଏ କି ଲାବଣ୍ୟ ଦେବୀ ଏକୁଟିଆ ଶୋଇ ଶୋଇ ଶୁଣୁ ଥାଆନ୍ତି । ନିଃସଙ୍ଗ ଜୀବନ ଯେମିତି ଦିନରାତି ଏକୁଟିଆ ପଡ଼ି ରହି ଥାଆନ୍ତି ସେ । ପୁରୁଣା ଗୃହରାଣୀ ହାତ-ଟେକି ପଡ଼ି ଦେବାକୁ ଆସେ ଏବଂ ଖିମା ଆଣି ଥୋଇଦିଏ । କାଲିର ମାଲିକାଣୀ ସାଆନ୍ତାଣୀ ଲାବଣ୍ୟଦେବୀ ଆଜି ହାତ ପିଠିରେ ଲୁହ ପୋଛୁ ପୋଛୁ ଦିନ ସରୁଚି । ସବୁବେଳେ ସେ ଭାବି ହେଉଥାଆନ୍ତି—ଦୁନିଆରେ ନାରୀପ୍ରତି ସ୍ୱେଚ୍ଛାଚାରୀ ପୁରୁଷ ଏହି ଭଳି ଅତ୍ୟାଚାର କରି ଚାଲିଛି ଏବଂ ନିଃସହ ନାରୀ କିଛିମାତ୍ର ପ୍ରତିକାର କରିପାରୁ ନାହିଁ ।



କିଛିଦିନ ଗାଁରେ ବିଶ୍ରାମ ନେଇ ନକୁଳବାବୁ କଟକ ଲେଉଟି ଗଲେ । ଦେଖିଲେ ଗାଁରେ ଶାନ୍ତି ନାହିଁ କି କଟକରେ ଶାନ୍ତି ନାହିଁ । ଅଳ୍ପଦିନ କଟକରେ ରହି ଅସ୍ୱସ୍ତି ଅନୁଭବ କଲେ । ଭିତରେ ଭିତରେ ନିଜର କଳୁଷ-ବହ୍ନିରେ ନିଜେ ନିଜେ ଦଗ୍‌ଧିଭୂତ ହେଉଥାନ୍ତି । ଭିତରର ଯନ୍ତ୍ରଣା ଅସହ୍ୟ ହେବାରୁ ପୁଣି ଥରେ ଗାଁକୁ ବାହାରିଲେ । ଏଥର ସେ ପୂରାପୂରି ଉଲଗ୍ନ ହୋଇ ପଡ଼ିଥାନ୍ତି । ସଙ୍ଗରେ ଯାଉଥାନ୍ତି ସୁବର୍ଣ୍ଣଦେବୀ ଏବଂ ସାନ ଛୁଆଟି । ନୂଆ ରୂପରେ ନୂଆ କୋଠାରେ ଆସି ସେ ପହୁଞ୍ଚିଗଲେ । ଦିନ କେଇଟା ଖୁବ୍ ଜାକ ଜମକରେ କଟିଲା । ଲୋକେ ଦେଖନ୍ତି—ସୁବର୍ଣ୍ଣଦେବୀଙ୍କର ବିଧବା ବେଶ ନାହିଁ । ଗହଣା ଗାଣ୍ଠିରେ ସାରାଅଙ୍ଗ ତାଙ୍କର ଭରପୂର । ସାନ ପିଲାଟି ସାଜସଜ୍ଜା ହୋଇ ଘର ବାହାର ଖେଳି ବୁଲୁଥାଏ । ଏଥର ନକୁଳବାବୁଙ୍କର ଲୋକ ଲଜ୍ଜାକୁ ଲେଶମାତ୍ର ଭୟ ନାହିଁ । ସେ ଏକପ୍ରକାର ଲଙ୍ଗଳା ହୋଇ ପଡ଼ିଥାନ୍ତି । ଲୋକେ ଚୁପୁରୁ ଚାପର ହୋଇ ବୁଲନ୍ତି । ମାତ୍ର ମୁହଁ ଉପରେ କିଛି କହି ପାରନ୍ତି ନାହିଁ । ବିପ୍ଳୁ ସାହେବଙ୍କୁ ଏଥର ଲାଜସରମ ଟିକିଏ ହେଲେ ନାହିଁ ।

ଏ ବଡ଼ ଲୋକଙ୍କର ମତ
ଅଳପ ଲୋକେ ବିପରୀତ ।

ଲୋକଲଜ୍ଜା ଓ ଲୋକ ନିନ୍ଦାକୁ ସଂସାରରେ ସମସ୍ତେ ଡରନ୍ତି । ଯିଏ ନ ଡରିଲା, ସେଇଏକା ଦୁନିଆକୁ ଜିତିଲା । ଅସାମାଜିକ ନିର୍ଲ୍ଲଜ-ମାନଙ୍କ ଚମଡ଼ାଟା ଅତି ମୋଟା ହୋଇଯାଏ । ଯାହା ବଳରେ କି ସେମାନେ ସବୁପ୍ରକାର ନିନ୍ଦାଗିଲାକୁ ହସିହସି ମୁହଁରେ ହଜମ କରି ଦେଇପାରନ୍ତି ।

ସୁବର୍ଣ୍ଣ ଜାଣନ୍ତି ବଡ଼ ଲୋକଙ୍କୁ କେହି କିଛି କହି ପାରିବେ ନାହିଁ । ରାଜା ଲଙ୍ଗଳା ହୋଇ ନାଚିଲେ—ଲୋକେ କହିବେ ମହାରାଜ ଅଦୃଶ୍ୟ ପୋଷାକ ପରିଧାନ କରିଛନ୍ତି । ମୁନି ଋଷିମାନେ ଲଙ୍ଗଳା ହେଲେ—ଲଙ୍ଗଳା ବୋଲି କୁହାଯାଏ ନାହିଁ । କୁହାଯାଏ ଦିଗମ୍ବର ବାବା, ଲଙ୍ଗୁଳି ବାବା ।

ସୁବର୍ଣ୍ଣଙ୍କର ମୁହଁ ଉପରେ କେହିତ କିଛି କହି ପାରନ୍ତି ନାହିଁ । ବରଂ ପିଲାଟିକି କୋଳକୁ ଟେକିନେଇ ଗେହ୍ଲା କରି କହନ୍ତି—ସାନ ସାଆନ୍ତାଣୀ ଖାସା ପିଲାଟିଏ ପାଇ ଆଣିଛନ୍ତି ।

ପୋଖରୀ ତୁଠରେ ଗାଁ ମାଇପେ ଠଟ୍ଟା ହୁଅନ୍ତି—
ଖଡ଼ୁ ଭଲକରି ମାଜିଲୋ ମାଇପେ
ମୁହଁ ଭଲ କରି ମାଜ
ରଜାତ ଜାଣିଲେ ରାଇଜ ଜାଣିଲେ
ଆଉ କାହିଁ ପାଇଁ ଲଜ ?
"ଆଉ କାହିଁ ପାଇଁ ଲଜ ?"

ବେହିଆ ମୁହଁରେ ବହଲିଆ ବୋଲ ବସି ଗଲଣି । ବାହା-ଦୁରିଆ ବୋଲ । ପାନ ବୋଲରେ ଓଠ ଟେହ ଟେହ, କଥା କଥାକେ ରସ ଟେହ ଟେହ । ସାନ ସାଆନ୍ତାଣୀ ସୁବର୍ଣ୍ଣ ଦେବୀଙ୍କୁ କିଏ କଅଣ କହିବ ?

ସାଇତ ଜାଣିଲେ ଭାଇତ ଜାଣିଲେ
ଆଉ କାହିଁ ପାଇଁ ଲଜ ?

କିନ୍ତୁ ଏ ସବୁ କଥାକୁ ସହ୍ୟ କରି ପାରନ୍ତି ନାହିଁ ଲାବଣ୍ୟ ଦେବୀ । ନସହି କରିବେ ବା କଅଣ ! ସାଇ ପଡ଼ିଶାରୁ ସମବୟସୀ ମାଇପେ ଓ ବୁଢ଼ୀ ବୁଢ଼ୀମାନେ ଛାଏଁ ଛାଏଁ ପାଖକୁ ଆସି ବସନ୍ତି । ଲାବଣ୍ୟଙ୍କ ବଡ଼ଲୋକୀ ଗୌରବ ତ ଆଉ କିଛି ନାହିଁ । ଆଗେ ଯେଉଁମାନେ ପାଖକୁ ଆସି ସାମନାରେ ଠିଆ ହେବାକୁ ଭୟ କରି ସର୍କି ଯାଉଥିଲେ, ସେମାନେ ଆଜି ପାଖରେ ଆସି ବସି ପଡୁଛନ୍ତି, ହସି ହସି ଭଲେଇ ହୋଇ କଥା କହୁଚନ୍ତି । ସୁବର୍ଣ୍ଣ ଦେବୀଙ୍କ ଟିକିନିଖି

ଖବର ସବୁ ଦେଇଯାଉଚନ୍ତି । ସ୍ୱାମୀ ବିତାଡ଼ିତା ଲାବଣ୍ୟଦେବୀ ଆଜି ଗାଁର ସାଧାରଣ ସ୍ତ୍ରୀଲୋକଙ୍କ ଠାରୁ ହୀନ ହୋଇ ପଡ଼ିଚନ୍ତି ଯେ ! ତାଙ୍କ ପାଖକୁ ପଶିଆସି ଆଜି ଯେକେହି ବି ଉପଦେଶ ଦେଇ ଯାଉଚନ୍ତି । କହୁଚନ୍ତି—ତୁମେ କାହିଁକି ମା ହୀନମାନିଆ ହୋଇ ଏଠି ଏକୁଟିଆ ପଡ଼ି ରହିଚ ? ଆଉ ତୁମର ଆଗରେ ବାର ସଉତୁଣୀ ପରି ତୁମର ସାନ ଭଉଣୀ ବାରମଉଜ କରୁଚନ୍ତି । ଯାଉନ ସାହାସ କରି, ତାଙ୍କୁ ବାଡ଼େଇ ବାହାର କରିଦବ ?

ସବୁ ଶୁଣନ୍ତି ଲାବଣ୍ୟ ଦେବୀ । ସମସ୍ତଙ୍କ ମୁହଁ ଉପରେ ହସି ହସି ମଧୁର କଥା କହି ବିଦାୟ କରି ଦଅନ୍ତି । ସହାନୁଭୂତି ଦେଖାଇ ସମସ୍ତେ ବିଦାୟ ନଅନ୍ତି । କିନ୍ତୁ ସେ ସବୁ ସହାନୁଭୂତି ଓ ସମବେଦନା ଲାବଣ୍ୟ ଦେବୀଙ୍କ ହୃତପିଣ୍ଡରେ ବର୍ଛୀ ଭୁସିଦେଇ ଗଲାଭଳି ଲାଗେ । ତାଙ୍କ ମନଟା ଅତ୍ୟାଚାରୀ ବିପଥଗାମୀ ସ୍ୱାମୀ ବିରୁଦ୍ଧରେ ଭିତରେ ଭିତରେ ବିଦ୍ରୋହ କରି ଉଠେ । ମନକୁ ମନ ସେ କହି ହୁଅନ୍ତି— ତାର ତ ମୋପ୍ରତି ମମତା ନାହିଁ, ମୁଁ କିଆଁ ତାକୁ ଚକେଇ ବସିବି ! ମୋର ବି ତ ହାତମୁଣ୍ଡ, ବଳ, ବପୁ, ବୟସ ସବୁ ଅଛି । ମନରେ ମୋର ଆଶା ଆକାଂକ୍ଷା ତ ଅଛି । ସେ ତ ମୋ ପାଖକୁ ଅଇଲେ ନାହିଁ କି ମୋତେ ଚାହିଁଲେ ନାହିଁ । ମୁଁ କିଆଁ ତାଙ୍କୁ ଚାହିଁ ବସିବି ?

ତେଣେ କୋଠାରେ ବାବୁ ଅଛନ୍ତି, ସାନ ବାବୁଆଣୀ ଅଛନ୍ତି । ଛୁଆ ସାଆନ୍ତେବି ଅଛନ୍ତି । ବଗିଗାଡ଼ି ଓ କରୁଆନ ଅଛନ୍ତି । ବାବୁ ବାବୁଆଣୀ ସଞ୍ଜବେଳକୁ ଏଣେତେଣେ ହାଉଆଖାଇ ବୁଲିଯାଉଚନ୍ତି । ସେଦିନ ଉପର ଓଳି ସୁବର୍ଣ୍ଣଦେବୀ ସାନଛୁଆ ଓ ଚାକରାଣୀ ଗୋଟାକୁ ଧରି ବାହାରି ପଡ଼ିଲେ, ବୁଲି । ପକ୍କା ସଡ଼କ ଉପରେ ପୂର୍ବଦିଗକୁ କୋଡ଼ିଏ ବାଟ ଯାଇ ଦେଖିଲେ, ଡାହାଣ କଡ଼କୁ ନଈବନ୍ଧ । ଚାକରାଣୀ ଛୁଆଟିକୁ କାଖେଇଲା ଏବଂ ସୁବର୍ଣ୍ଣଦେବୀ ଗାଡ଼ିରୁ ଓହ୍ଲାଇ ଚାଲି ଚାଲି ଗଲେ । ନଈବନ୍ଧ ଉପରକୁ ଉଠି ସେପଟେ ନଈବାଲିକୁ ଗଡ଼ିଲେ । ଧୀର ପବନ ବହୁଚି । ସୂର୍ଯ୍ୟ ବୁଡ଼ିଯିବା ଉପରେ । ସେଇଦିନ ଥାଏ ହାଟପାଳି । ହାଟୁଆ ବାଟୁଆ ବହୁ ସଂଖ୍ୟାରେ ବାଲି ଉପରକୁ ଗଡ଼ୁ ଥାଆନ୍ତି ଏବଂ ବାଲି ଓ

ପାଣିଧାର ପାର ହୋଇ ଚାଲି ଚାଲି ନଈ ସେପାରକୁ ଚାଲି ଯାଉଥାଆନ୍ତି । କାହା ତୁଣ୍ଡରେ କେତେକଥା, କେତେ ଗୀତ, କେତେ ଠାହାଠାପରା । ଗାଉଁଲି ଲୋକଙ୍କ ମୁକୁଳା ତୁଣ୍ଡରେ ବାଡ଼ବତା ନାହିଁ । ଆଗେ ସେ ଅଞ୍ଚଳର ଲୋକେ ରାୟସାହେବଙ୍କୁ ଭକ୍ତି କରୁଥିଲେ, ଭୟ କରୁଥିଲେ, ସମ୍ମାନ ଦେଖାଉଥିଲେ । ଏବେ ତ ସେସବୁ ଦିନ ଗଡ଼ି ଗଲାଣି, ଏବଂ ରାୟସାହେବଙ୍କ ଗୌରବ ରବି ବୁଡ଼ି ଯିବାକୁ ବସିଲାଣି ! ସୁବର୍ଣ୍ଣ ଓ ତାଙ୍କ ଝିଅକୁ ଲକ୍ଷ୍ୟ କରି ଚାକରାଣୀଟିକି କେହି କେହି ପଚାରିଦେଲେ—ହଇକହେ, ତୁମଘର କେଉଁଠି ? ଏଣିକି କଅଣ ହାଉଆ ଖାଇ ଆସିଛ ? ସେ ସାଆନ୍ତାଣୀ ଜଣକ କିଏକି ? କାହାଘର ବୋହୂ ? ବଡ଼ଲୋକ ଘରର ହୋଇଥିବେ ପରା ! ଏଣିକି ଏ ମଶାଣିପଦାକୁ ଗଡ଼ଚଣ୍ଡି କିଆଁ ?

ଚାକରାଣୀ ସୁବର୍ଣ୍ଣଙ୍କ ପରିଚୟ ଦେବାକୁ ଭାଷା ପାଉନାହିଁ । କଅଣ କାହାକୁ କହିବ ? କହିବ—ରାୟ ସାହେବଙ୍କ ସାନ ସାଆନ୍ତାଣୀ, ନା କହିବ ବାବୁଙ୍କ ସାନ ଭଉଜା ? ସେ ହସି ଦେଉଛି । ଉତ୍ତର ଦେଇ ପାରୁ ନାହିଁ । ଲୋକେ କୁହାକୁହି ହେଉଚନ୍ତି—ଓହୋ ଜାଣିଲୁଁ । ଇଏ ହଉଚଣ୍ଡି ରାୟସାହେବଙ୍କ ଶାଳୀ । ରଜା ସାଆନ୍ତଙ୍କ ସାନରାଣୀ—ଓହୋ ସୁବର୍ଣ୍ଣ ଦେଈ ; ବାହା ବାହା ତାଙ୍କର ପୁଅ ସାଆନ୍ତ ହେଲେ ଇଏ ? ଏଇ ପିଲାଟି ।

ଆଉଜଣେ ତା ପାଖିରେ ହାତଦେଇ କହୁଛି—ତୁମପଡ଼ । ବଡ଼ ଘରର ବଡ଼ କଥା । ତୁ କଣ ଜାଣିବୁ ଟୋକା—ଏଇଟି ହେଲା ରାୟସାହେବଙ୍କ ପୋଷା ପୁଅ । ସାନ ସାଆନ୍ତାଣୀଏ ଡାକ୍ତରଖାନାରୁ ଗୋଟେଇ ଆଣିଚନ୍ତି ।

ଜଣେ ପୁରୁଖା ଯାଣୀ ଲଗି ଆସି ଦିହିଙ୍କ କାନ୍ଧରେ ହାତ ବାଡ଼େଇ ତାଗିଦ କରିଦେଲା—ତୁନିହ । ଟୋକି ମୁହଁରେ ବଡ଼ କଥା । ଆ ଯିବା । ଆମ ବାଟରେ ଆମେ ଯାଉଥାଇଁ । ତାଙ୍କ ବାଟରେ ସେ ଯାଉଚନ୍ତି । "ଯାହାର ମୁଖେ ନାହିଁ ଲଜ—ତାକୁ ଆମେ ଡର ।

ସୁବର୍ଣ୍ଣ ପଛରେ ପଡ଼ି ସେମାନଙ୍କ କଥାବାର୍ତ୍ତା ଶୁଣି କାଜ୍ୱସ୍ତ ପ୍ରାୟ ସ୍ତବ୍ଧ ହୋଇଗଲେ । ଚାକରାଣୀ—ପିଲାକୁ ଡାକି କହିଲେ—ଆ ଆଲୋ, ଆମର ଘରକୁ ଯିବା ।

ପଛକୁ ଫେରି ବନ୍ଧ ଡେଇଁ ରାସ୍ତା ଉପରେ ସେମାନେ ବଗିଗାଡ଼ି ଉପରକୁ ଉଠି ବସିଲେ । କଚୁଆନ ଗାଡ଼ି ଅଡ଼ାଇ ଘରକୁ ଆଣିଲା । ନକୁଳବାବୁ ଦେଖିଲେ ସୁବର୍ଣ୍ଣଙ୍କ ମୁହଁ ଶୁଖିଯାଇଛି । ତାଙ୍କୁ ପଚାରି ସବୁ କଥା ଶୁଣି କହିଲେ—ଛାଡ଼ ସେ ସବୁ ଲୋକାପବାଦକୁ । କହିଲେ —କେତେ କଏ କୁକୁର ଭୁକୁଥିବେ । ସେଥିରେ କଅଣ ଆମେ କାନ-ଦେଇ ବୁଲିବା ? ଖାଲି ପରି ଆମ ବାଟରେ ଆମେ ଚାଲିଯିବା ସିନା !

ରାତିରେ ସାଙ୍ଗହୋଇ ଖାଇ ବସିଲା ବେଳକୁ ସୁବର୍ଣ୍ଣ ଅନ୍ୟ-ମନସ୍କଭାବେ ପଚାରିଦେଲେ—"ଆମ ବାଟରେ ଆମେ ଚାଲୁଛୁ । ସେଥିରେ ଲୋକଙ୍କର ଯାଏ ଆସେ କଅଣ ? ସେମାନେ କାହିଁ ଆମ ବିଷୟରେ ଏତେ ଆଲୋଚନା କରୁଛନ୍ତି ? ଯାହାକୁହ ସହର ବଜାରରେ ଲୋକେ ଏସବୁ କଥାରେ ମୁଣ୍ଡ ଖେଳାନ୍ତି ନାହିଁ ।"

'ହୁଁ'ଟିଏ ମାରି ନକୁଳବାବୁ ଚିନ୍ତିତ ହୋଇ ଭାବିବାକୁ ଲାଗିଲେ —ଲୋକଙ୍କ ମୁହଁକୁ କେମିତି ବନ୍ଦ କରିଦେଇ ହେବ ? କେମିତି ସେ ଲୋକେ ପୁଣି ଆଜ୍ଞା ଆଜ୍ଞା ହୋଇ ବୁଲିବେ । ଭାବିଲେ—ଲୋକଙ୍କୁ ବଶିଭୂତ କରିଦେବାର ଉପାୟଟି କଅଣ ? ଏହାଙ୍କ ବ୍ୟଭିଚାରକୁ ଲୋକେ ପାସୋରି ପକାଇବେ ଏବଂ ଏଙ୍କୁ ପୂର୍ବପରି ସମ୍ମାନ ଦେବେ—ତାର ଉପାୟ କଅଣ ।

ଦିନେ ହଠାତ୍ ନକୁଳବାବୁ ଗୁମୁକରଣଙ୍କୁ ଡାକି ହୁକୁମ ଦେଲେ—ଆମ ଏ ଦାଣ୍ଡରେ ରାତିଏ ଦି ରାତି ନାଟ କରାଇବାର ବନ୍ଦୋବସ୍ତ କର । ନାଚୁଆ ଡ଼ାକ । ଦିନେ ଧ୍ରୁବ ଚରିତ ହେଉ ।

ବାବୁ ଭାବିଲେ ଧ୍ରୁବଚରିତ ଦେଖାଇ ଲୋକଙ୍କୁ ଜଣାଇ ଦେବେ ଯେ ଆଗେ ରଜା ଓ ବଡ଼ଲୋକମାନଙ୍କର ବହୁ ସଂଖ୍ୟାରେ ସ୍ତ୍ରୀ ଥିଲେ ।

ଏବେ ଯଦି କେହି ଏକରୁ ଅଧିକ ସ୍ତ୍ରୀ ଗ୍ରହଣ କରନ୍ତି, ତେବେ ଦୋଷ କିଛି ନାହିଁ ।

ଦିନେ ଦି'ଦିନ ପରେ ନାଟ ତାମସାର ଆୟୋଜନ ହୋଇଗଲା । ବଡ଼ ବଡ଼ ଶୁନ୍ଦିଆ ଦାଣ୍ଡ ଅଗଣାରେ ଟଙ୍ଗାହେଲା । ବଡ଼ ବଡ଼ ସତରଞ୍ଜି ଓ ବଡ଼ ବଡ଼ ହେଁସ ପକାଯାଇ ଦେଖଣାହାରି ଲୋକେ ବସିବାର ବ୍ୟବସ୍ଥା ହେଲା । ଦୂରରୁ ନାମଜାଦା ଯାତ୍ରାଦଳ ଆସି ପହଞ୍ଚିଗଲେ । ବୈଠକ ଘରେ ତାଙ୍କୁ ସ୍ଥାନ ଦିଆଗଲା । ବିଭିନ୍ନ ଚେହେରାର ନାଟ ପିଲାଏ ଏଣେତେଣେ ବୁଲାବୁଲି କରି ଲୋକଙ୍କ ମନରେ ଆଗ୍ରହ ଜନ୍ମାଇଲେ । ହାଟପାଳି ଦିନ ହାଟ ଚକଡ଼ାରେ ବାବୁଙ୍କ ତରଫରୁ ନାଗରା ପିଟାହେଲା ଏବଂ ଲୋକେ ଜାଣିଲେ ଯେ ରାୟସାହେବଙ୍କ ଦାଣ୍ଡରେ ଦି'ରାତି ନାଟ ହେବ । ନାଟ ଆରମ୍ଭ ଦିନ ସଞ୍ଜ ବେଳକୁ ବଡ଼ ବଡ଼ ତେଲ ଲାଇଟ କେଇଟା ଜଳଉଠି ଚାରିଆଡ଼ ଆଲୋକିତ କରିଦେଲା । ଆକାଶରେ ଅଷ୍ଟମୀ ଜହ୍ନ ହସି ଉଠିଲା । ପାଖଆଖ ଗାଁ ଗଣ୍ଡାର ଝିଅ ବୋହୂ, ବଡ଼ା ବୁଢ଼ୀ, ଛୁଆପିଲା ଧରି ବହୁ ସଂଖ୍ୟାରେ ଆସି ଶୁନ୍ଦିଆ ତଳେ ବସି ପଡ଼ିଲେ । ସମସ୍ତଙ୍କ ମନରେ ଏବେ ଆନନ୍ଦ । ବହୁଦିନ ପରେ ଆଜି ରାୟସାହେବଙ୍କ ଘରେ ନାଚ ହେଉଛି । ରାତି ନଅଟା ବେଳକୁ ଖିଆପିଆ ସାରି ନାଟୁଆଦଳ ନାଟ ସଭା କଡ଼କୁ ହାରମନିଆ ଓ ଗିତାବଳି, ପଖଉଜ ଆଦି ଧରି ବସିପଡ଼ିଲେ । ଶୁଭିଲା ଗୀତ ଆଉ ବାଦ୍ୟ । ନାଟ ଆରମ୍ଭ ହେବାକୁ ଡେରି ହବନାହିଁ । ଆଖଡ଼ା ଘରେ ନାଚିବା ପାଇଁ ପିଲାକେଇଟା ନାଟୁଆ ଝିଅ ବେଶରେ ସଜ ହେଉଛନ୍ତି । ଦୁଆର କବାଟ ବନ୍ଦ ଥିଲେ ବି ଖିଡ଼କିବାଟେ ଗାଁ ପିଲାଏ ଉଦ୍‌ବେଗରେ ସହିତ ଅନାଇ ରହିଛନ୍ତି । ସେଇଠି ବେଶି ଭିଡ଼ ଜମିଛି ।

କୋଠାର ଦାଣ୍ଡ ପିଣ୍ଡା ଉପରେ ଦି' ତିନିଟି ଆରାମ ଚଉକି ଗାଲିଚା ଉପରେ ପଡ଼ିଛି । ଶୁହୁଁ ଶୁହୁଁ ନାଟ ପିଲାଏ ସଭାକୁ ଆସି ଗୀତ ଆରମ୍ଭ କରିଦେଲେ । ବାବୁ ଓ ନୂଆ ବାବୁଆଣୀ ଛୁଆ ହାତଧରି ଦାଣ୍ଡ ବରଣ୍ଡା ଉପରକୁ ଆସିଗଲେ ଏବଂ ପାଖ ପାଖ ଦିଇଟା ଆରାମ ଚଉକି ଉପରେ ବସି ପଡ଼ିଲେ ।

ଲୋକେ ସେ ଆଡ଼କୁ ଚାହିଁଲେ ଏବଂ ଜାଣି ପାରିଲେ ଏ ସାଆନ୍ତାଣୀ ଲାବଣ୍ୟ ଦେବୀ ନୁହନ୍ତି । ଇଏ ତା ମୁହଁକୁ ଚାହିଁ, ସିଏ ଇଆ ମୁହଁକୁ ଚାହିଁ ନିଜ ନିଜ ଭିତରେ ଦର୍ଶକମାନେ ହସାହସି ହେଲେ ।

ବାବୁ ଭାବିଲେ—ଠିକ୍ ଏଇ ସବୁ ଆନନ୍ଦ କୋଳାହଳ ମଧ୍ୟରେ ଲୋକଙ୍କୁ ଭୁଲାଇଦେଇ ହେବ ।

ଲୋକେ ଏଇଭଳି ଭାବରେ ଭୁଲିଯାଆନ୍ତି । ଘୃଣା ଭାବ ପାସୋରି ପକାନ୍ତି । ଏଇସବୁ ବାଟ ଦେଇ ରାଜନୈତିକ ନେତାମାନେ ଲୋକଙ୍କ ଉପରେ ପ୍ରଭାବ ପକାନ୍ତି ଏବଂ ନିଜକୁ ଲୋକନିନ୍ଦାରୁ ବିମୁକ୍ତ କରି ନିଅନ୍ତି ।

ପୌରାଣିକ କଥା—ଧ୍ରୁବ ଚରିତ ଓ ପ୍ରହ୍ଲାଦ ଚରିତ । ଦୁଇଦିନ ନାଚ ସରିଲା ଏବଂ ଲୋକେ ଆମୋଦ ଆହ୍ଲାଦ ମଧ୍ୟରେ ନକୁଳବାବୁଙ୍କ କଳଙ୍କ ଗାଥା ଭୁଲିଗଲେ । ତା ପରେ ସେହି ଲୋକଙ୍କ ଅଡୁ ବିରୋଧ ଆସିଲା—ବାବୁ ଆଜ୍ଞାଙ୍କ ହୁକୁମ ହେଉ, ଆଉ ଦି'ଦିନ ନୂଆ କିଛି ଯାତ୍ରାର ବିରୋଧ ହୋଇଯାଉ ।

ସାନ ସାଆନ୍ତାଣୀ ସୁବର୍ଣ୍ଣଦେବୀ ଶେଷକୁ ଉଠି ଛିଡ଼ା ହୋଇ ଲୋକଙ୍କୁ ଶୁଣାଇଦେଲେ—ହଉ । ଆଉ ଦି'ଦିନ ଯାତ୍ରା କରାଯିବ ।

ରାତି ସରି ଆସିଲା ବେଳକୁ ଦ୍ୱିତୀୟ ଦିନର ଯାତ୍ରା ଶେଷ ହୋଇଥାଏ । ସାନ ସାଆନ୍ତାଣୀଙ୍କ ହୁକୁମ ଶୁଣି ଲୋକେ ହରିବୋଲ, ହୁଳହୁଳି ପକାଇ ତାଳି ମାରି ନିଜ ନିଜର ଆନନ୍ଦ ପ୍ରକାଶ ସଙ୍ଗେ ସମୂହ ଧନ୍ୟବାଦ ଅର୍ପଣ କଲେ ।

ଲୋକ-ମତ ଏମିତି ଏମିତି ବଦଳିଯାଏ ।

× × ×

କିନ୍ତୁ ମ୍ରିୟମାଣ ଘରରେ ପୁରୁଣା ଖଞ୍ଜାରେ ଏକୁଟିଆ ପଡ଼ିରହି ଲାବଣ୍ୟଦେବୀ ସବୁ କଥା ଶୁଣୁ ଥାଆନ୍ତି । ନାଚ ତାମସାର ବାଜା ଓ ସଙ୍ଗୀତ ତାଙ୍କ କାନରେ ଅଗ୍ନି ବର୍ଷଣ କରୁଥାଏ । ଚାରୋଟି ରାତି ବିଛଣା ଉପରେ ପଡ଼ି ପଡ଼ି ସେ କାନ୍ଦୁ ଥାଆନ୍ତି ଏବଂ ମନ ଭିତରଟା ତାଙ୍କର ପୁରାପୁରି ବିଦ୍ରୋହୀ ହୋଇ ପଡ଼ୁଥାଏ । ମନକୁ ମନ ସେ ପାଗଳ ପରି କହି ଉଠିଲେ—ହଉ ରହି ଥାଆରେ ଚଣ୍ଡାଳ । ତୁ ଯେବେ ଏମିତି ନିର୍ଲଜ ଭାବରେ ପାପ ପଙ୍କକୁ ଦହି ମୁହଁରେ ବୋଳି ଆନନ୍ଦ ପାଉଚୁ ତେବେ ପ୍ରତିଶୋଧ ନେବାପାଇଁ ମୁଁ ବି ସେସବୁ କରିପାରିବ ।



ଲାବଣ୍ୟଦେବୀଙ୍କ ମନ ଗୋଟିପଣେ ଓଲଟି ପଡ଼ୁଛି । ସ୍ଥିର କରିଚନ୍ତି ନିଜ ହାତରେ ସେ ଆଉ ରନ୍ଧାବଢ଼ା କରିବେ ନାହିଁ । ଗୁରୁଆଡ଼େ ଜାତିଭେଦକୁ ଉଠାଇଦେବା ପାଇଁ ଲୋକେ ହୋ-ହୋ ହୋଇ ଉଠିଲେଣି । ଛୁଆଁ ଅଛୁଆଁ ଉଠିଯାଉଛି । ସାନବଡ଼ କଥା ଉଭେଇ ଯାଉଛି । ଉଣେଇଶଶହ ଅଣ୍ଡିଗୁଳିଶରେ ଗଡ଼ଜାତ ମିଶ୍ରଣ ହୋଇଗଲା । ରାଜାମାନଙ୍କଠାରୁ ରାଜ୍ୟ ଛଡ଼ାଇ ନିଆଗଲା । ବ୍ରାହ୍ମଣ ଚଣ୍ଡାଳ ଏକା ପଙ୍‌କ୍ତିରେ ବସି ଖାଉଛନ୍ତି । ହରିଜନ ରାନ୍ଧୁଛି, ବ୍ରାହ୍ମଣ ଖାଉଛି । ଦେଶ ଓ ସମାଜରେ ମହାପ୍ଳାବନ ହୁ ହୁ ହୋଇ ମାଡ଼ି ଆସି ସମସ୍ତଙ୍କୁ ଏକ କରି ଦେଉଛି । ଶୁଣାଯାଉଛି ଜମିଦାରଙ୍କ ଜମିଦାରୀ ଚାଲିଯିବା ଉପରେ । ବଡ଼ଲୋକ ହେଇ କେହି ରହିବେ ନାହିଁ । ଲାବଣ୍ୟଙ୍କ ମନରେ ବିପ୍ଳବର ଝଡ଼ ଉଠିଲାଣି । ଦେହ ଆଉ ମନ ଧୀରେଧୀରେ ଅବଶ ବିବଶ ହୋଇଆସୁଛି । ସଞ୍ଜମର ଶୃଙ୍ଖଳା ଶିଥିଳ ହୋଇଯାଉଛି । ସ୍ୱାମୀଙ୍କ ଦୁରାଚାରପଣିଆ ଓ ଦୁର୍ବ୍ୟବହାର ଏବଂ ସାନ ଭଉଣୀର ଅନ୍ୟାୟ ଅତ୍ୟାଚାର ତାଙ୍କ ଏକାବେଳକେ ପଙ୍ଗୁ କରିଦେଲାଣି । ସବୁବେଳେ ସେ ଗୋଟିଏ ମାତ୍ର ଚିନ୍ତା କରୁଚନ୍ତି—

ଜୀବନଟାକୁ ରଖିବ କି ନା ? ରଖିବ ନାହିଁ ତ କାହିଁକି ରଖିବ ନାହିଁ ? ମରିବ ତ କେମିତି ମରିବ ଅତ୍ୟାଚାରୀ ସ୍ୱାମୀର ପ୍ରତିଶୋଧ ନେବ କେମିତି ? ଏଡ଼େ ସୁନ୍ଦର ନରଦେହ, ବଳ, ବୟସ, ବପୁ ! କାହିଁକି ବା ନଷ୍ଟ କରିଦେବ ? ନଷ୍ଟକରି ନ ଦେଇ କଅଣ ଚଳିପାରିବ ନାହିଁ ? ଗୋଟିଏ ପୁରୁଷ ଛାଡ଼ିଦେଲା ବୋଲି କଣ ଦୁନିଆରେ ଆଉ ପୁରୁଷ କେହି ନାହାନ୍ତି ଲୋକେ କହିବେ

ସ୍ୱାମୀ ଆଉ ସମାଜ ? କଏ କାହାର ହୋ ? ଦିଗମ୍ବର ମରିଗଲାରୁ ସୁବର୍ଣ୍ଣଠା ସ୍ୱାମୀଚିନ୍ତା ଛାଡ଼ିଦେଇ ଭିଣୋଇଙ୍କ ବଶ କରିନେଇ ବେଶ ଆନନ୍ଦରେ ତ କାଳ କାଟୁଛି ! ଦୁନିଆ ଲୋକେ କଣ ଶୁଣୁନାହାନ୍ତି ନା ନିନ୍ଦା କରୁନାହାନ୍ତି ? କରନ୍ତୁ··· । ଯିଏ ଯାହା କହିବାର କହୁଥାଉ । ସୁଖ, ଶାନ୍ତି ଓ ଆନନ୍ଦ, ସମ୍ଭୋଗ କଏ ଦେଇପାରିବ ? ଯାହାଠାରୁ ମୁଁ ଏତକ ପାଇପାରିବି, ସେଇ ମୋର ସବୁ । ଆପଣାର ହେଉ ବା ପର ହେଉ ! ବ୍ରାହ୍ମଣ ହେଉ କି ଚଣ୍ଡାଳ ହେଉ ବଡ଼ଲୋକ ହେଉ କି ଗରିବ ହେଉ । ମୋ ବାଟ ମୁଁ ନିଶ୍ଚେ କାଟିନେବି । ମୋ ସାଥି ମୁଁ ନିଶ୍ଚେ ଖୋଜିନେବି ।

ଲାବଣ୍ୟଙ୍କ ବିଦ୍ରୋହୀ ମନ ଧୀରେ ଧୀରେ ବାଇବାତୁଳ ହୋଇଗଲା । ସେହିଦିନ ସେ ଭୀମାକୁ ଡାକି କହିଦେଲେ—ମୁଁ ଆଉ ନିଜ ହାତରେ ରନ୍ଧାବଢ଼ା କରି ପାରିବି ନାହିଁ । ତୁ ରାନ୍ଧ ମୁଁ ଖାଇବି ।

ଏ କଥାକୁ ଭୀମା ହଠାତ୍ ଗ୍ରହଣ କରିପାରିଲା ନାହିଁ । ଜିଭଟାକୁ କାମୁଡ଼ି ପକାଇ କହିଲା—ସାଆନ୍ତାଣୀ, ମୁଁ ତେବେ ନାଥ ନନାଙ୍କୁ କହିବି ସେ ଆପଣଙ୍କ ପାଇଁ ରାନ୍ଧିଦେଇ ଯିବେ ।

ନାଥ ପୂଜାରୀ ଠାକୁରଙ୍କର ସେବେଇଆ । ବୟସ ପ୍ରାୟ ପଇଁତିରିଶ ଉପରେ ।

ଲାବଣ୍ୟ ଆଜ ଜୋରକରି ମନ ଭିତରୁ ଭେଦ ଭାବଟାକୁ ନିକାଲି ଦେବାକୁ ଚାହାଁନ୍ତି । ସେ କହିଲେ—ନା, ନା, ସେ କଥା ହେବ ନାହିଁ । ତା ଟେକା ପାଣିକି ମୁଁ ଚାହିଁ ରହିପାରିବିନି । ସେ ହେଲା ରାଯ଼ୁ-ସାହେବଙ୍କ ପୂଜାରୀ । ନାଥିଆର ଦିଇଟା ହାତ ଆଉ ତୋର କଣ ଗୋଟାଏ ? ନାଥିଆକୁ କାଟିଲେ ନାଳିଆ ରକତ ବାହାରିବ ଆଉ ତୋତେ କାଟିଲେ ନେଳିଆ ରକତ ? ସେ ତ ସେଇ ହାଣ୍ଡିରେ ସେଇ ପାଣି ଓଜାଡ଼ି ସେଇ ଧାନର ‘ଚାଉଳକୁ ଫୁଟେଇ ସିଝେଇବ; ଆଉ ତୁ କଣ ସେଇଆ କରିବୁ ନାହିଁ ? ତୁ ରାନ୍ଧିରେ, ମୁଁ ଭତ

ଖାଇବ କହୁଛୁ । ଦେଖାଯାଉ କିଏ କଣ କହୁଛି । କହିଲେ ମତେ କହିବ । ଆଉ ମୁଁ ତାକୁ ଜବାବ ଦେବି ।

ଭୀମା କହିଲା—ସାଆନ୍ତାଣୀଏ, ପାପ ହେବ ।

ଲାବଣ୍ୟ ଜବାବ ଦେଲେ—ପାପ କାହାର ହେବ ? ହେଲେ ତୋର ନୁହେଁ କି ମୋର ନୁହେଁ । ମୁଁ ତ ଯାହା ଦେଖୁଚି ଦୁନିଆରେ ପାପ ହୋଇ କିଛି ନାହିଁ କି ପୁଣ୍ୟ ବୋଲି କିଛି ନାହିଁ । ଯିଏ ଯାହା କହିବାର କହୁ । ମୁଁ ଠିକ୍ କରିଛି ସବୁଯାକ ପାପ କରିବି । ଦେଖିବି ଫଳାଫଳ କଅଣ ହେଉଛି ।

ହଁ, କରି ଗୁହିଁ ରହିଲା ଭୀମା ଗୁକର । ସାଆନ୍ତାଣୀଙ୍କ ମୁଣ୍ଡ ବିଗିଡ଼ି ଗଲାଣି ।

ହେଲେ ସାଆନ୍ତାଣୀ ବାଧ କଲେ ଏବଂ ସେହିଦିନଠାରୁ ଭୀମା ଅନିଚ୍ଛାସତ୍ତ୍ୱେ ରନ୍ଧାବଢ଼ା କଲା ଓ ସାଆନ୍ତାଣୀ ଖାଇଲେ । ବ୍ରାହ୍ମଣ ହୋଇ ଧୀରେ ଧୀରେ ମନ ଭିତରୁ ତାଙ୍କର ଜାତିଭେଦର ବିକାର ଦୂର ହୋଇଗଲା । ଲାବଣ୍ୟଦେବୀ କହିଲେ—ଭଲ ତ ରାନ୍ଧି ଜାଣୁଚରେ ଭୀମା । ନାଥନନାଠାରୁ ତୋ ରନ୍ଧା ସୁଆଦ ଲାଗୁଛି ତ !

ମନେ ମନେ ଭାବିଲେ—ପଇତାଟିଏ କାନ୍ଧରେ ପକାଇ ନାଥିଆ ହୋଇଛି ନାଥ ନନା । ଆଉ ପଇତା ବିନା ଭୀମଟା ଭୀମା ଗଉଡ ହୋଇ ରହିଯାଇଛି । ସେ ବି ମଣିଷ, ଇଏ ବି ମଣିଷ । ମଣିଷ ହେଉ, ପଶୁ ପକ୍ଷୀ କୀଟ ପତଙ୍ଗ ହେଉ, ଏକମାତ୍ର ତଫାତ୍ ହେଉଛି ପୁରୁଷ ସ୍ତ୍ରୀ ଭେଦରେ । ରାୟସାହେବ ବି ପୁରୁଷ; ଭୀମା ବି ପୁରୁଷ । ସୁବିଧା ସୁଯୋଗ ପାଇଥିଲେ ଭୀମା ବି ହୋଇପାରି ଥାଆନ୍ତା—ରାୟ ବାହାଦୁର ଭୀମସେନ ଗଉଡରାୟ ।

ଲାବଣ୍ୟଦେବୀଙ୍କ ମନରୁ ଧୀରେ ଧୀରେ ଭେଦଭାବ ଦୂରେଇ ଗଲା । ସବୁ ପ୍ରକାରର ସଂସ୍କୃତିକ ଘୂରି ଘୂରି ଗୋଟିଏ ମାତ୍ର କେନ୍ଦ୍ର

ବନ୍ଧନରେ ଏକ ହୋଇଗଲା । ସେ ବନ୍ଧନଟି ନିକଟରେ ସବୁ ପ୍ରକାରର ସଂସ୍କାର ଓ ସାମାଜିକ ସବୁ ପ୍ରକାରର ନୀତିନିୟମ ଛିଡ଼ଛାଡ଼ ଟୁକୁରା ଟୁକୁରା ହୋଇଗଲା । ଧୀରେ ଧୀରେ ହାଣ୍ଡିଭାଙ୍ଗି ଖପରା ହେଲା । ଖପରା ଭାଙ୍ଗି ଟୁକୁରା ହେଲା । ଟୁକୁରା ଗୁଣ୍ଡ ହୋଇ ଧୂଳିକଣାରେ ପରିଣତ ହୋଇଗଲା । ସେ ବନ୍ଧନଟି ହେଲା —ଆଦିମ ଲାଲସା !

ବୁଭୁକ୍ଷିତଃ କିଂ ନ କରୋତି ପାପଂ ।

ସେଦିନ ରାତିରେ ଲାବଣ୍ୟଦେବୀଙ୍କୁ ଆଦୌ ନିଦ ହେଉନାହିଁ । ଖଟ ଉପରେ ଛଟପଟ ହୋଇ ହୋଇ ଶେଷକୁ ଉଠି ବସିଲେ । ମେଲା ଝିଙ୍କି ଖିଡ଼କି ବାଟେ ବାହାରର ଆଲୁଅ ଘର ଭିତରକୁ ପଶି ଆସୁଚି । ଅଗଣାରେ ଜହ୍ନ ଆଲୁଅ ବଞ୍ଚ ହୋଇ ପଡ଼ୁଛି । ଚଉଡ଼ା ବାରଣ୍ଡା ଉପରେ ହୃଷ୍ଟ ପୁଷ୍ଟ ବଳିଷ୍ଠ ଶ୍ୟାମରାଉତ ଚିତହୋଇ ଶୋଇଚି । ଚୁରିଆଡ଼ ନିସ୍ତବ୍ଧ । ଖିଡ଼କି ବାଟେ ଏକ ଲୟରେ ତାହାର ଆଡକୁ ଚାହିଁ ରହିଲେ ସ୍ୱାମୀ ପରିତ୍ୟକ୍ତା ନିର୍ବାସିତା ଲାବଣ୍ୟଦେବୀ । ଏ ଅବସ୍ଥାରେ ଦେବୀର ପ୍ରାଣରେ ବି ଦାନବୀ ଆବିର୍ଭୂତ ହୋଇଯାଏ । ଧୀର ପଦରେ ଖଟ ଉପରୁ ସେ ଓହ୍ଲାଇ ଆସିଲେ । ଧୀରେ ଧୀରେ କବାଟ ଫିଟାଇ ବାହାରକୁ ଆସିଲେ । ଶ୍ୟାମ ପାଖକୁ ଆସି ଠିଆହେଲେ । ତା ପରେ ବସି ପଡ଼ିଲେ । ଛାତି ଉପରକୁ ଲମ୍ବି ପଡ଼ିଥିବା ବଳିଷ୍ଠ ହାତଟାକୁ ତାର ଧରି ପକାଇଲେ । ଶ୍ୟାମର ନିଦ ଭାଙ୍ଗିଗଲା । ଚମକି ପଡ଼ି ସେ କହି ଉଠିଲା—କିଏ ? ଆଖି ମେଲି ଚାହିଁ ହଠାତ ଉଠି ବସି ନିମ୍ନ ସ୍ୱରରେ ଡାକିଲା—ସାଆନ୍ତାଣୀ ?

ଶ୍ୟାମର ଦେହ ଥରୁଛି । ସାଆନ୍ତାଣୀ କହିଲେ—ଚୁପ୍, ପାଟି କରନା । ସାଆନ୍ତାଣୀଙ୍କ ହାତ ମୁଠା ଭିତରେ ତା ହାତଟା । ସାଆନ୍ତାଣୀଙ୍କ ଦେହ ଥରୁଛି । କହିଲେ—ଉଠିଆ ଭିତରକୁ ।

ଉଠିପାରୁ ନାହିଁ, ତଥାପି ଶ୍ୟାମ ଉଠି ଅଳସ ଭାଙ୍ଗିଲା । ତା ଜୀବନରେ ନୂଆ କଥା ଏଇଟା । ପୁଣି ନିଭୃତ ରାତିରେ ଶୋଇଲା ଘର ଭିତରକୁ ଡାକୁଚନ୍ତି—ସାଆନ୍ତାଣୀ ନିଜେ । ନିଜେ ଜାଗିଚି କି ସ୍ୱପ୍ନ ଦେଖୁଛି ବିଶ୍ୱାସ କରିପାରୁ ନାହିଁ । ଭୟରେ ଦେହସାରା ଥରୁଛି । ପାଟି

ଖନ ବାଜି ଯାଉଛି । ସାଆନ୍ତାଣି ଉତ୍ତେଜତା ହୋଇ ଝାଣୁଚନ୍ତି । ନର୍ଜୀବ ପର ଖିମା ନିର୍ଭୋସାର ହୋଇ ଯାଉଛି । ପ୍ରତିରୋଧ କରବା ପାଇଁ ଦେହରେ ତାର ଲେଶମାତ୍ର ଶକ୍ତି ନାହିଁ । ସାଆନ୍ତାଣୀ ଖଟ ଉପରକୁ ଭିଡ଼ୁଚନ୍ତି । ସେ କିନ୍ତୁ ଉଠି ପାରୁନାହିଁ । କେଡେ ବଡ଼ ଲୋକର ସ୍ତ୍ରୀ ଇଏ । ନଜେ ଜଣେ ହୀନ ଗୃହକର ପିଲ । ସାହସ ପାଉନାହିଁ । ସାଆନ୍ତାଣୀ ତାକୁ ନଜ ଶୋଇଲ ଖଟ ଉପରକୁ ପେଲ ଦେଲେ ଏବଂ ନଜେ ତା ଉପରେ ଏକ ପ୍ରକାର କଚୁଡ଼ି ହୋଇ ପଡ଼ିଲେ ।

ବୁଭୁକ୍ଷିତଃ କିଂ ନକରୋତ ପାପଂ ।

ତା ପରେ ଯାହା ଘଟିଲ ସେଥିଲଗି ଦାୟୀ କିଏ ? ଖିମା କହିଲ—ସାଆନ୍ତାଣୀଏ, ପାପ ହେଲ । ସାଆନ୍ତାଣୀ ଉତ୍ତର ଦେଲେ—ପାପ ଯଦ ହୋଇଥାଏ, ତେବେ ହେଲ—ତୋର ନୁହେଁ, ମୋର ନୁହେଁ—ବାପୁ ସାହେବଙ୍କର । ଭୋକିଲ ମୁହଁରେ ଆହାର ଦେଇ ତୁ ବରଂ ପୁଣ୍ୟ ଅର୍ଜନ କଲୁବୋଲି ଜାଣିବୁ । ମୋ ସ୍ୱାମୀ ଯାହା କରୁଛି, ତାର ପ୍ରତିଶୋଧ ଇଏ । ଯେସାକୁ ତେଷା । ମୋର ଏଥିରେ ଲେଶମାତ୍ର ଦୋଷ ନାହିଁରେ ଖିମା ।

ଭୋର ହେଲା । ଲାବଣ୍ୟ କହିଲେ—ଆରେ ଖିମା, ଦ ଚାରି ଦନ ଭିତରେ ପୁରୁଷୋତ୍ତମ ଯିବା ଚାଲ ।

ନକୁଳବାବୁଙ୍କ କ୍ରିୟାର ପ୍ରତିକ୍ରିୟା ରୂପ ଯେମିତି ଦେଖା ଦେଇଛି ଲାବଣ୍ୟଦେବୀଙ୍କ ମନ ଭିତରେ । ସୁବର୍ଣ୍ଣକୁ ଯେମିତି ସେ ଯେବେ ଏଣେ-ତେଣେ ପ୍ରମୋଦ ଭ୍ରମଣରେ ଯାଇ ପାରୁଚନ୍ତି । ତେବେ ଇଏ କାହିଁକି ପାରବେ ନାହିଁ ?

ଖିମା କହିଲ—ପଇସା କଉଡ଼ି ଦରକାର ।

ଲାବଣ୍ୟ କହିଲେ—ଅଛି ।

ଖିମା—ଘରଦ୍ୱାର ?

ଲାବଣ୍ୟ—ଚାବି ଦେଇ ଯିବା ।

ଖ୍ରୀମା—ବାବୁ କଅଣ କହିବେ ?

ଲାବଣ୍ୟ—ବାବୁ ? ସେ ପୁଣି କିଏ ? ମୋ ଉପରେ ତାଙ୍କର ଆଉ କି ଅଧିକାର ଅଛି ? ମୁଁ ମୋର ରଜା । ଗୁଡ଼ିଲ ଗାଁଆକୁ ବାନ୍ଧି କିଏ ?

—ବାନ୍ଧି ଆଜି ପଚାରିବା ଲୋଡ଼ା ନାହିଁ ସତ, ହେଲେ ବାହାର ଲୋକେ ଦେଖିଲେ କଅଣ ବୋଲି କହିବେ ?

—କହିବେ ଛତୁ । କହିଲେ ଜବାବ ଦେବୁ—ଖାମିନ୍ଦାଣୀ ଯାଉଚନ୍ତି । ମୁଁ ଯାଉଛି ସାଥିରେ । ହୁକୁମର ଚାକର ।

ଖ୍ରୀମା ଗୁମଖାଇ କିଛି ସମୟ ତୁନି ହୋଇ ରହିଲା । ତା ପରେ କହିଲା—ଯିବେ ତ ଯିବେ କିଛି ଦିନ ପରେ । ମାସେ ଦିମାସ ଯାଉ ।

× × ×

କିଛିଦିନ ପରେ ଖ୍ରୀମା ଆସି କହିଲା—ଗ୍ରାମୁକରଣ କହୁଥିଲେ ବାବୁଙ୍କର ଏଥିଭିତରେ ଅାସିବାର ଅଛି । ଏକା ଆସିବେ ବୋଲି ଖବର ପଠାଇଚନ୍ତି । ସବୁ ପଛ କଥାକୁ ଭୁଲି ଆପଣ ତାଙ୍କ ପାଖକୁ ଏଥର ଯାଆନ୍ତୁ । ସବୁ କଥାକୁ ମନ ଭିତରେ ଲୁଚାଇ ରଖି ହସିଖେଳି ଦିନ କେଇଟା ତାଙ୍କ ସଙ୍ଗରେ କଟାନ୍ତୁ । ତା ପରେ ସେ କଟକ ଫେରି-ଗଲେ ଆମେ ଯୁଆଡ଼େ ଯିବା କି ଯାହା ଯେମିତି କରିବା । ରାଗରୋଷ କଥାକୁ ଭିତରେ ଭିତରେ ଚାପି ରଖନ୍ତୁ । ଯେତେ ହେଲେ ଆପଣ ମାଇପୀ ଲୋକ । ଆଜି ଭଲ ଅଛି କି ମନ୍ଦ ଅଛି, ଯେସାକୁ ତେସା, ବୁଡ଼ି ବୁଡ଼ି ପାଣି ପିଇଲେ ବରୁଣ ରଜାଙ୍କ ବାପାବି ଟେର ପାଇବେ ନାହିଁ । ବୋଇଲି—

ବୁଝି ବିଚାରି କାମକଲେ
ପ୍ରମାଦ ନ ପଡ଼ଇ ଭଲେ ।

ଲାବଣ୍ୟମୟୀ ତାଟକା ହୋଇ ଖ୍ରୀମା ମୁହଁକୁ ଚାହିଁ ରହିଲେ, ଭାବିଲେ ଚାକରଟା ହେଲେ କି ହେଲା ଭାରି ଚାଲାକ । ସବୁ ଆଡ଼କୁ ଭାବିଚିନ୍ତି କଥାଟାଏ ଭଲଆ କଥାଟାଏ କହିଲା ।

ଅନେକ ଦିନୁ ଶୋକ ହେଉଥିଲା—ଶୋକଟା ଥପୁ ଧରିଚି। ଖାଦ୍ୟର ହାତ ପାହାନ୍ତାରେ ମହଜୁତ ଅଛି। ଭବଚନ୍ଦ୍ର ବାବୁର କର ଦେଖିବା ପାଇଁ ମୁଣ୍ଡଟାକୁ ଟିକେ ବାଗେଇ ଯାଇଛି। କହିଲେ—ହଉରେ ଖ୍ୟାମା, ତୋରକଥା ରହୁ। ବାବୁ ଆସିଲେ ତୁ ଯାଇ ଡାକ ଆଣିବୁ ତ ?

ଖ୍ୟାମା ଉତ୍ତର ଦେଲା—ହଉ ଆଜ୍ଞା, ଚେଷ୍ଟା କରିବି।

ଗାଁ ଗହଳର ଯୁଆନ ଟୋକା ଖ୍ୟାମା। ପ୍ରେମ ଗମ୍ଭୀରରେ ଅଳ୍ପେ ବହୁତେ ତାର ଗୃଷ ଅଛି। ବେଳେ ବେଳେ ଗୁଣୁ ଗୁଣୁ ହୋଇ ଗୀତଟିଏ ସେ ଗାଉଥାଏ—

ପିରତି ପଥ ଖସଡ଼ାରେ ସଙ୍ଗାତ
ପିରତିପଥ ଖସଡ଼ା
ଥିର ଥିର କରି ଚାଲି ନ ଜାଣିଲେ
ପଦ ପଦକେ କଚଡ଼ା।
ବୁଝି ସୁଝି କରି ବାଟ ନ ଚାଲିଲେ
ପଦ ପଦକେ କଚଡ଼ା।

ଖ୍ୟାମାର ଉପଦେଶକୁ ମନ ଭିତରେ ଥୋଇ ଲାବଣ୍ୟଦେବୀ ଗାଧୋଇବାକୁ ଚାଲିଗଲେ। ଗାଧୋଇ ପାଧୋଇ ଘଣ୍ଟାକ ପରେ ଫେରିଲା ବେଳକୁ ଦେଖିଲେ ଖ୍ୟାମା ତାର ନିତ୍ୟକର୍ମ ସାରି ଚୁଲି ଲଗାଇ ହାଣ୍ଡି ବସାଉଛି ମନକୁ ମନ ସେ ଭାବୁଛି—ମୋପରି କପାଳଆଟାଏ ଆମ ଗାଆଁରେ କିଏ ଅଛିରେ ? କେଡ଼େ ବଡ ଘରର ବୋହୂ, ଦେବୀ ପ୍ରତିମା ପରି ଚେହେରା, ସୁନା ଅଳଙ୍କାରରେ ଦେହସାରା ଗୁଡ଼ି ହୋଇଛି। ଆକାଶର ଜହ୍ନମାମୁଁ। ନିଜେ ଧାଇଁ ଆସି ମୋତେ ଡାକ ଦେଲା ? ପଲଙ୍କ ଉପରେ ପୁଣି ଆଣ୍ଠୁଏ ବହଳର ଶେଜ ! ସରଗସୁଖ ମୋର ଭାଗ୍ୟରେ ଥିଲା ବୋଲି ମୁଁ ତ ଜାଣି ନଥିଲି ହେ !! ଏକୁଇ କହନ୍ତି—ହାଣ୍ଡି ସୁନା କଳଶ ଛାଲିବା କଥା !

ଭାବୁଛି ତ ଭାବୁଛି। ଭିତରେ ଭିତରେ ଅସୀମ ଆନନ୍ଦରେ ଅଧୀର ହୋଇ ଉଠୁଛି। ମନଟା ସତ ମଣି ପାରୁନାହିଁ। ମିଛବୋଲି

ଭ୍ରମ ଆସୁଛି । ବାମନ ହାତରେ ଚନ୍ଦ୍ର ! ସପନ ପରି ମନେ ହେଉଛି । ପୁଣି ସେ ଭାବୁଚି—ସପନରେ ବି ଏତେ ସୁଖ କାହାକୁ ମିଳେ ?

ଲାବଣ୍ୟଦେବୀ ଗାଧୋଇଯିବା ବାଟରେ ଭାବ ହେଉଥିଲେ—ଖ୍ୟାମାର କଥା କେଇ ପଦକୁ । ମନର ଝଡ଼ତୋଫା ଅଳ୍ପେ ବହୁତେ ଥମି ଯାଇଛି । ନବରଙ୍ଗ ଚନ୍ଦ୍ରର ଜଳରାଶି ଉପରେ ବର୍ତ୍ତୁଳର ରେଖାଚିତ୍ର ସ୍ପଷ୍ଟ ହୋଇ ଉଠୁଛି । ଖ୍ୟାମାଟା ଯୁଆନ, ପୁରମାଜାରେ ଭେଣ୍ଡିଆ । ନିଶାଟାକୁ ଥରେ ଖାଇଦେଲେ, ଆହୁରି ଖାଇବାକୁ ଇଚ୍ଛା ବଢ଼ି ବଢ଼ି ଯାଉଥାଏ ।

ପୁଣି ଭାବିଲେ—ନିଶାଟାକୁ ଧରିଛି ତ ଭଲକରି ଧରିବ । ଛାଡ଼ିବ କାହିଁକି ? ହେଲେ, ଖ୍ୟାମା ଯାହା କହିଲା—ଭଲ କଥାଏ କହିଲା । ଜଙ୍ଗିଆ ପିନ୍ଧି ପ୍ରସା କରିବାକୁ ବାଟ ନ ରଖିଲେ ଅସୁବିଧା ।

ଖ୍ୟାମା ଚନ୍ଦ୍ରାରେ ଘାରି ହେଉଚି ରନ୍ଧା ବସେଇ ଦେଇଚି । କଳ୍ପନାର କଳ୍ପତରୁରେ ଚଢ଼ି ମନେ ମନେ ସେ ଅମୃତ ଫଳ ଖାଇ ଯାଉଛି । ପାଖକୁ ତାର ଲାଗି ଆସି ଲାବଣ୍ୟ ଶୁଣାଇଦେଲେ—ଯାହା କହିଲୁ ତାହା ସତରେ ଖ୍ୟାମା । ତୋଓର କଥା ମାନିଲି । ହେଲେ ତାଙ୍କୁ ଡାକ ଆଣିବୁ ତୁଇ ।

ଖ୍ୟାମା ହସିଦେଇ କହିଲା—ନୋହିଲେ ଆପଣ ନିଜେ ଯିବେ ।



ଯାତ୍ରା ଶେଷ ହେବା ଏବଂ ବାବୁ କଟକ ଫେରିଯିବା ସମୟ ମଧ୍ୟରେ ନକୁଳବାବୁଙ୍କ ମନ ଭିତରେ ସାମାନ୍ୟ ପରିବର୍ତ୍ତନ ଦେଖାଦେଲା । ଦିନେ ଦାଣ୍ଡପିଣ୍ଡାରେ ବସି ବସି ସେ ଗ୍ରାମ୍ୟ ମୁକରଣ ବୁଢ଼ା ସଙ୍ଗରେ ସମ୍ପତ୍ତିବାଡ଼ି ବିଷୟରେ କଥାବାର୍ତ୍ତା ହେଉଥିଲେ, ଦେଖିଲେ ଭୀମା ଚାକର ଆସି ସାମନାରେ ମୁଣ୍ଡିଆ ମାରୁଛି ।

ଉଠ୍‌ରେ ଭୀମା ଉଠ୍ ।

ଭୀମା ଉଠି ଠିଆହେଲା ।

ତା ମୁହଁ ଆଡ଼କୁ ଚାହିଁ ରହିଲେ ନକୁଳବାବୁ । ଅଶୋକଙ୍କର କଳିଙ୍ଗ-ବିଜୟ ଶେଷ ହୋଇଛି । ଧଉଳୀ ପାହାଡ଼ ପାଦଦେଶରେ ଲକ୍ଷ ଲକ୍ଷ ଲୋକ ମରିପଡ଼ିଥିଲେ ଏବଂ ତାଙ୍କ ରକ୍ତ ସ୍ରୋତରେ ଦୟା ନଦୀର ଜଳଧାରା ଲାଲ ରଙ୍ଗ ହୋଇଯାଇଛି । ଲାବଣ୍ୟଙ୍କ ପ୍ରତି ତାଙ୍କର କ୍ରୋଧ ଶେଷ ପରିଣତିରେ ପହଞ୍ଚି ଯାଇଛି । ଭୀମାକୁ ସାମନାରେ ଦେଖି ସେ ପୁଣି ଭାବିଥିଲେ ତାଙ୍କର କଥା । କେଇଦିନ ମଧ୍ୟରେ ଏ କୋଠାରେ କେତେ ଆନନ୍ଦ ଉତ୍ସବ ହୋଇ ଯାଇଛି । ଦାଣ୍ଡପିଣ୍ଡା ପୁରୁଣା ଘରେ ବନ୍ଦୀ ପରି ହୋଇ ପଡ଼ିରହି ସବୁ ଶୁଣିଥିଲେ, ସବୁ ଦେଖିଥିଲେ ଲାବଣ୍ୟ ଦେବୀ । ବିନା ଦୋଷରେ ତାଙ୍କୁ ଆଜି ଏତେ ଦଣ୍ଡ ଦିଆଯାଇଛି । ତାଙ୍କର ଛାତି ଉପରେ ଚଢ଼ି ଆଜି ତାଙ୍କର ସାନ ଭଉଣୀ ସୁବର୍ଣ୍ଣଦେବୀ ତାଙ୍କର ଜୀବନର ସର୍ବସ୍ୱକୁ ଅପହରଣ କରି ନେଇ ଯାହା ଇଚ୍ଛା ତାହା କରି ଚାଲିଥିଲେ । ଚାରି ଦିନର ନାଚ ତାମସା, ମଉଜ ମଜଲିସ ଆଜି ଲାବଣ୍ୟ ଦେବୀଙ୍କୁ ଚରମ ଅପମାନ ଛଡ଼ା ଆଉ କିଛି ନୁହଁ ।

କଳିଙ୍ଗ ବିଜୟ ପରେ ଅଶୋକଙ୍କ କ୍ରୋଧ ପ୍ରସମିତ ହୋଇଛି । ନାଚ ତାମସା ଶେଷ ଆଡ଼କୁ ନକୁଳବାବୁଙ୍କ ଅନ୍ତରର କ୍ରୋଧ ଲଘୁ ହୋଇ ଯାଇଛି । ମନେ ମନେ ଗଭୀର ଭାବରେ ସେ ଭାବି ହେଉଚନ୍ତି—ଲବଣ୍ୟର ଦୋଷ କେଉଁଠି ? ମୁଁ ସିନା ସୁବର୍ଣ୍ଣକୁ ନେଇ ଏଣେତେଣେ ବିହାର କରି ବୁଲୁଛି ବୋଲି ତାର ମନ କ୍ଷୁନ୍ନ ହୋଇ ଯାଇଛି ! ସେଇଥି ପାଇଁ ସିନା ସେ ମୋତେ ଘୃଣା କରି ଦୂରେଇ ଆସି ପୁରୁଣା ଘରେ ଏକୁଟିଆ ପଡ଼ି ରହିଛି ! ସାଆନ୍ତାଣୀ ହୋଇ ଚାକର ଚାକରାଣୀଙ୍କ ହାତଟେକା ପଡ଼ି ଉପରେ ନିର୍ଭର କରି ଜୀବନ ଧାରଣ କରିଛି ! ଏହାଠାରୁ ବଳି ବଡ଼ ଅପମାନ କେଉଁ ସ୍ୱାମୀ କାହାକୁ ଦେଇପାରେ ?

ନକୁଳବାବୁଙ୍କ ମନ ଦ୍ରବି ଯାଇଛି । ଭୀମାକୁ କହିଲେ—ଶୁଣ ଭୀମା, ମୁଁ ଆଜି ଉପରଓଳି କଟକ ଫେରିଯାଉଛି । ସମସ୍ତେ ଆଜି ଯିବେ ଚାଲି । କିଛିଦିନ ପରେ ଛାମୁକରଣେ କଟକ ଯିବେ । ତାଙ୍କର ସଙ୍ଗରେ ଦିନକ ପାଇଁ ତୁ ଚାଲିଯିବୁ । ମତେ ଦେଖା କରିବୁ । କଥା ଅଛି ।

ହାତଯୋଡ଼ି ଭୀମା କହିଲା—ଆଜ୍ଞା ଯିବି ।

ଛାମୁକରଣଙ୍କୁ ବାବୁ କହିଲେ—ଶୁଣିଲତ ଛାମୁକରଣେ ?

ଛାମୁକରଣ ଓ ଭୀମା ବାବୁଙ୍କ ମନକଥା କେହି କିଛି ଜାଣି ପାରୁ ନାହାନ୍ତି । ତଥାପି ଅନୁମାନ ହେଉଛି ଯେ ବାବୁଙ୍କ ମନ ଭିତରେ ଗୋଟାଏ କିଛି କଥାରେ ପରିବର୍ତ୍ତନ ଘଟିଛି । ମଣିଷର ମନମିନ କେତେବେଳେ କେଉଁ ଦିଗକୁ ଗଡ଼ିକରେ ତାର ଠିକ୍ ଠିକଣା ନାହିଁ । ଏ ମନ ବିକାଳି ସକାଳକୁ ପୁରାପୁରି ବଦଳି ଯାଇପାରେ । ବଡ଼ବଡ଼ଆଙ୍କ ମନ ଆଉ ତୋଫାନିଆ ପବନର ଗତିକି କେହି କଳନା କରି ପାରିବେ ନାହିଁ ।

ମନ, ପବନ, ଆଉ ଘୋଡ଼ା ।

ଥରକେ ଘୋଡ଼ା ଛୁଟିଲା ପରେ କେତେବେଳେ କେଉଁ ଆଡ଼କୁ ଗଡ଼ିକରି ବସେ, ତାର ଠିକ୍ ଠିକଣା ନାହିଁ । ନକୁଳବାବୁଙ୍କ ଭଳିଆ

ବଡ଼ଲୋକଙ୍କ ମନ ହେଲା, କ୍ଷଣେ ରୁଷ୍ଟ, କ୍ଷଣେ ତୁଷ୍ଟ, ରୁଷ୍ଟ ତୁଷ୍ଟ କ୍ଷଣେ କ୍ଷଣେ । ଏମାନେ ହେଲେ ଅବ୍ୟବସ୍ଥିତ ଚିତ୍ତ । ଏମାନଙ୍କ ପ୍ରସାଦ ମଧ୍ୟ ଭୟଙ୍କର ।

ଭୀମା ଭାବିଲା—ମୋତେ କାହିଁକି କଟକ ଡାକଲେ ? 'ମନଜାଣେ ପାପ୍, ମାଆଜାଣେ ବାପ୍' । ଗୁଡ଼ୁ ଗୁଡ଼ୁ ହୋଇ ଉଠୁଛି ତା ମନ ଭିତରଟା । ଛାତି ଦୁଲୁକି ଉଠୁଛି । ବଡ଼ ସାଆନ୍ତାଣୀଙ୍କ ବିଷୟରେ କେହି କଅଣ ଗୁପ୍ତ ଖବର କରି ବାବୁଙ୍କ ପାଖକୁ ପଠାଇ ଦେଲାକି ଆଉ ?

'ଚୋରର ମନ ଗଣ୍ଠିରେ' ।

ସେ ଭାବୁଛି ଏବଂ ନିଜେ ନିଜେ ସଙ୍କୁଚିତ ହୋଇ ଯାଉଛି— ସେଦିନ ରାତିର ଗୁପ୍ତ ଘଟଣାର ଖବର କେଉଁ ଛିଟିକରେ ବାବୁଙ୍କ ପାଖରେ ପହଞ୍ଚିଗଲାଣି କି ଆଉ ? ତେବେ ତ ରକ୍ଷା ନାହିଁ ? କଟକକୁ ଡକାଇନେଇ ମରାମରି କରିଦେବେ କି ଆଉ ? ବଡ଼ଲୋକଙ୍କ ଘରେ ଏସବୁ ତ ହେଲା ନିତ୍ୟ ଘଟଣା !

ଭୀମାର ମନେ ପଡ଼ିଗଲା ତା ଗାଁପାଖ ମହାପାତ୍ରଙ୍କ ଘରକଥା । ଢେଣ୍ଡା ପୂଜାରୀ ଟୋକାଟାର ଉପରେ ପଡ଼ି ବାବୁଙ୍କ ସୁଆଁନ ଝିଅଟାଏ ଜୋର ଜବରଦସ୍ତିରେ ପାପପ୍ରଣୟ କଲା । ସେକଥା କିଛିଦିନ ଗୋପନରେ ଚାଲିଲା ପରେ ଦିନେ କାହା ନଜରରେ ପଡ଼ିଗଲା । ତା ପରେ ରାତାରାତି ହେଲା ମାଡ଼ । ପୂଜାରୀ ପିଲାଟା ମରିଗଲା । ଲାସଟା ପୋତା ହେଲା କୂଅ ଭିତରେ । ସକାଳୁ ଦେଖାଗଲା କୂଅ ଉପରେ ଠାକୁରଙ୍କ ଦେଉଳଟାଏ ।

ଭୀମାର ମନେ ପଡ଼ିଗଲା—ଆଉ ଜଣେ ଡାକ୍ତର ବାବୁଙ୍କ ଘରକଥା । ମଟର ଡ୍ରାଇଭର ପାଖକୁ ଘରର ଭୁଆସୁଣୀ ବୋହୂଟିଏ ଗୋପନରେ ଆସେ ଯାଏ । ତାର ସ୍ୱାମୀ କାହିଁ କେଉଁଠି ମଦପିଇ କେଉଁ ବେଶ୍ୟାବାଡ଼ିରେ ଅଚେତ ହୋଇ ପଡ଼ିଥାଆନ୍ତି । କେତେଦିନ ପରେ କିଏ କେମିତି ଦେଖିଦେଲା । ଡ୍ରାଇଭରଟି ଏକାବେଳକେ ଶେଷ ହୋଇଗଲା ।

ଭୀମାକୁ ଖର ଡ଼ର ମାଡ଼ିଲା । ଉପରେ ବିଦାୟ ନେଇ ସେ ଗଲା ଲାବଣ୍ୟଦେବୀଙ୍କ ପାଖକୁ । ଥର ଥର ସବୁ କଥା ଭୁନ ଭୁନ କହି କହି ମୁଣ୍ଡିଆ ମାରିଲା—ସାଆନ୍ତାଣୀଏ, ମତେ ରକ୍ଷା କର । ବାବୁଙ୍କ କାନକୁ ହୁଏତ କଥାଟା ଚାଲିଗଲାଣି । ସେ ମତେ ଡାକୁଚନ୍ତି କଟକ ଯାଇ ଦେଖା କରିବାକୁ ।

ହସି ଉଠିଲେ ଲାବଣ୍ୟଦେବୀ । ଏତେ ଡର ତୋର ? ଏଘରେ କିଏ କୋଉଠି ଅଛୁରେ କିଏ କଅଣ ଦେଖିଛୁ ? ମିଛେ ମିଛେ ତୁ ଏତେ ଚିନ୍ତା ହେଉଛୁ କାହିଁକିରେ ? ହୁଏତ ବାବୁଙ୍କ ମନରେ ମୋ ପ୍ରତି ଦୟା ହୋଇଛି ବୋଲି ତୋତେ କଟକ ଡାକିଚନ୍ତି । ଯିବୁ ତ ଯିବୁ, ନଯିବୁ ତ ନାହିଁ । ତୁଚ୍ଛାଟାରେ ଡରିହରି ମରୁଛୁ କାହିଁକି ? ନଗଲେ ତ ଛାମୁକରଣେ ଯାଉଚନ୍ତି । ସେ ଗଲାବେଳେ ତାଙ୍କୁ କହିଦେବୁ ପଚାରିଦେଇ ଆସିବେ—କାହିଁକି ତୋତେ ଡାକିଚନ୍ତି । ତୁ ବା ଯିବୁ କେମିତି ? ମୁଁ ତ ତୋତେ ଛାଡ଼ିଦେଇ ଚଳି ପାରିବି ନାହିଁ !

ସେଇଦିନ ଉପର ଓଳିକି ସେମାନେ କଟକ ଚାଲିଗଲେ । କୋଠାଘର ଶୂନ୍ୟ ହୋଇଗଲା । ସାଆନ୍ତାଣୀ ଭୀମାକୁ ଆଶ୍ୱାସନା ଦେଇ କହିଲେ—ଯାଆଠିକେ ଛାମୁକରଣଙ୍କୁ କହିବୁ, ମୁଁ ଡାକୁଛି ବୋଲି ।

ଭୀମାର ମନ ଦବି ଯାଇଚି । ସେ ଭାବୁଚି ହୁଏ ତ ପୁରୁଣା ଖଞ୍ଜା ଭିତରେ କୌଉଠି କେମିତି ବାବୁଙ୍କ ଗୁପ୍ତଚର କେହି ଲୁଚି ଛପି ରହିଛି । ଏବଂ ସେଦିନ ରାତିର ଘଟଣାଟିକୁ ସେ ବାବୁଙ୍କ ପାଖରେ ଫୋଡ଼ି ଦେଇଚି ।

ମଣିଷର ମନ ଭିତରେ ଭଲ ମନ୍ଦର ସାକ୍ଷୀ ସ୍ୱରୂପ ସଦା ବିଦ୍ୟମାନ ରହିଚି ନିଜର ବିବେକ ଓ ବିଚାର-ବୁଦ୍ଧି । ନିଜେ ହିଁ ନିଜକୁ କହୁଛି-ତୁ ଭୁଲ କରୁଚୁ । ତୁ ଠିକ କରୁଚୁ ।

ବଡ଼ଲୋକଙ୍କ ହିମ୍ମତ୍ ଗରିବଙ୍କଠାରେ ନଥାଏ । ହିମ୍ମତ ବଳରେହିଁ ବଡ଼ବଡ଼ଆ ସୁକର୍ମ ହେଉ କି ଦୁଷ୍କର୍ମ ହେଉ, ବଡ଼ ବଡ଼ କାମ

କରି ଯାଆନ୍ତି । ଗରିବର ମନ ଭୟବିହ୍ୱଳ ହୋଇ ଦବିଯାଏ । ଡରିଯାଏ ।

ଶ୍ରେଣୀମନ ଗଣ୍ଡିରେ ଲାଗି ରହିଥିଲାଭଳି ଗରିବ ଲୋକର ନିଷ୍କଳଙ୍କ ଦୁର୍ବଳ ମନ ଠିକ କଥାକୁ ଡରିହିରି ଛାନିଆ । ମାତ୍ର ଶ୍ରେଣୀର ଡକାୟତ ଓ ନରହନ୍ତାମାନେ ଯେତେ ଅପକର୍ମ କଲେ ସୁଦ୍ଧା ନିଜ ମସ୍ତିଷ୍କକୁ ଠିକ୍ ରଖି ପାରିଥାଆନ୍ତି । ସେତିକି ହେଲା ସେମାନଙ୍କ ଠେଇଁ ଅଧିକା ଓ ତଫାତ୍ । ସେମାନଙ୍କର "ହିମ୍ମତ ବଡ଼ାଚଜ ।" ସେଥିଲାଗି ସେମାନେ ନିର୍ଭୟରେ ଅପକର୍ମମାନ କରି ଯାଆନ୍ତିସିନା !

ଭୀମ ନିଜ ଭୟରେ ନିଜେହିଁ ଦବି ଯାଉଛି । ଲାବଣ୍ୟଦେବୀ ତାକୁ ସାହସ ଦେଇ କହିଲେ—ତୁ ଡୁରନି । ମୁଁ ଛାମୁକରଣଙ୍କୁ ବୁଝାଇ କହିବି ।

କିଛି ଦିନ ପରେ ଛାମୁକରଣେ କଟକ ବାହାରିଲେ । ଭୀମାକୁ ଡ଼ାକିବାକୁ ସେ ଆସିଲେ । ସାଆନ୍ତାଣୀ ଆଗଭର ହୋଇ କହିଲେ— କାହିଁକି ତାକୁ ତମ ବାବୁ ଡାକିଚନ୍ତି ? ସମସ୍ତଙ୍କୁ ନେଇ କେବଳ ସେଇ ଗୋଟିକୁ ମୋର ବୋଲହାକ କରିବାକୁ ଦୟା କରି ଦେଇଚନ୍ତି । ତାକୁବି ଉକେଇ ପଠାଉଚନ୍ତି ? ମୁଁ ଚଳିବି କେମିତି । କହିଦେବ ତମ ସାଆନ୍ତଙ୍କୁ, ଭୀମା ଦିହ ଭଲ ନାହିଁ । ତାକୁ ସାଆନ୍ତାଣୀ ଅଟକାଇ ରଖିଲେ । ଆଉ ପଚାରି ଆସିବ, କାହିଁକି ତାକୁ ସେ ଡକାଇଚନ୍ତି ? ଯାହା କହିବାର ଥିବ, ତୁମରି ହାତରେ କହି ପଠାଇବେ ।

'ହଉ ଆଜ୍ଞା' କହି ଛାମୁକରଣେ କଟକ ବାହାରି ଗଲେ ଏକା ଏକା ।

× × ×

ବୈଜ୍ଞାନିକ ଚାର୍ଲସ ଡାରଉଇନ୍ ପ୍ରମାଣ କରି ଦେଇଛନ୍ତି ଯେ ସାଧାରଣ ମାଙ୍କଡ଼ ବିବର୍ତ୍ତନ ଫଳରେ ମଣିଷରେ ପରିଣତ ହୋଇଛି । ତେଣୁ ବହୁ କ୍ଷେତ୍ରରେ ମାଙ୍କଡ଼ର ପ୍ରକୃତି ମଣିଷ ମଧ୍ୟରେ ଏବେ ବି

ବିଦ୍ୟମାନ ରହିଛି । ମାଙ୍କଡ଼ପଲ ଭିତରେ ଗୋଟିଏ ମାତ୍ର ପୁଂ-ହନୁ ରହେ ଏବଂ ବହୁସଂଖ୍ୟକ ମାଈ ମାଙ୍କଡ଼ ଥାଆନ୍ତି । ପୁଂ-ହନୁଛୁଆ ଜାତ ହେଲେ ତାକୁ ଦଳପତି ମାରିଦିଏ । ଏହାର ଉଦ୍ଦେଶ୍ୟ ହେଲା ଗୋଟିଏ ପୁଂ-ହନୁ ବହୁ ସଂଖ୍ୟାରେ ସ୍ତ୍ରୀ ହନୁଙ୍କୁ ନେଇ ନିଜ କୁଟୁମ୍ବ ବଢ଼ାଇ ଚାଲେ । ବହୁପତ୍ନୀ ପ୍ରଥା ମଣିଷହିଁ ତାଙ୍କର ଠାରୁ ଗ୍ରହଣ କରିଛି । ଆଗେ ରାଜା ମହାରାଜା-ମାନେ ବହୁ ନାରୀ ରଖୁଥିଲେ । ସାଧାରଣ ଲୋକଙ୍କ ମଧ୍ୟରୁ ଅନେକେ ବହୁ ସଂଖ୍ୟକ ସ୍ତ୍ରୀ ବିବାହ କରୁଥିଲେ । ଏଇଟା ମଣିଷଙ୍କର ମାଙ୍କଡ଼ା ପ୍ରକୃତିର ନିଦର୍ଶନ ସ୍ୱରୂପ । ନକୁଳବାବୁଙ୍କ ଭିତରେ ଏଇ ମର୍କଟ-ପ୍ରବୃତ୍ତି ଜୀବିତ ଥିଲା । ସେଥିଲାଗି ସେ ପ୍ରକାଶ୍ୟ ଭାବରେ ସୁବର୍ଣ୍ଣଦେବୀଙ୍କୁ ନେଇ ଏଣେତେଣେ ବିହାର କରି ବୁଲୁଥିଲେ । ତଥାପି ତାଙ୍କର ଆଦିମ ପ୍ରବୃତ୍ତି ଲାବଣ୍ୟଦେବୀଙ୍କ ଆଡ଼ୁ ନିବୃତ୍ତି ଲାଭ କରି ନଥିଲା ।

କାମୀ ଲୋକମାନଙ୍କ କାମନା ଉପଭୋଗ ଦ୍ୱାରା ସାମ୍ୟତା ଲାଭ କରେ ନାହିଁ । ଘୃତାହୁତି ଯେତେ ଯେତେ ଅଧିକା ଦିଆଯାଉଥାଏ, ତେତେତେତେ ଅଗ୍ନିର କ୍ଷୁଧା ବଢ଼ି ଯାଉଥାଏ ।

ମଣିଷର ଇଚ୍ଛା—ଏକୁ ଛାଡ଼ି ତାକୁ । ପୁଣି ତାକୁ ଛାଡ଼ି ଏକୁ । ନର ବାନର ମଧ୍ୟରେ ଏ ବିଷୟରେ ସାମ୍ୟତା ଏବେ ବି ବିଦ୍ୟମାନ ରହିଛି ।

ନୂଆ କୋଠାକୁ ସୁବର୍ଣ୍ଣଙ୍କୁ ଆଣି ମଜା ମଜଲିସରେ କିଛିଦିନ କଟାଇବା ପରେ ବାବୁ ପୁଣି ମନକଲେ ସୁବର୍ଣ୍ଣଙ୍କୁ କଟକରେ ଛାଡ଼ିଦେଇ ଆସିବେ ଏବଂ ତା ପରେ ଲାବଣ୍ୟଦେବୀଙ୍କୁ ଡକାଇ ଆଣି ଏକୁଟିଆ ତାଙ୍କର ସହିତ କିଛିଦିନ କାଳାତିପାତ କରିବେ ।

ସୁବର୍ଣ୍ଣ ଓ ଛୁଆଟିକି ନେଇ ସେ କଟକ ଫେରିଯାଇ ଦେଖିଲେ ଭିତରେ ଭିତରେ ମନଟି ତାଙ୍କର ପୁଣିଥରେ ଲାବଣ୍ୟଦେବୀଙ୍କୁ ଖୋଜି ହେଲାଣି ।

ଅତ୍ୟାଚାରିତ ଓ ଅତ୍ୟାଚାରୀ ମଧ୍ୟରେ ସଂଘର୍ଷ ଲାଗିଥାଏ । ଦୁର୍ବଳ ଉପରେ ପ୍ରବଳର ଅତ୍ୟାଚାର । ଦୁର୍ବଳ ଦୁଃଖ ଯାତନାକୁ ସହିଗଲେ

ପ୍ରବଳର ମନ ଭିତରେ ପରିବର୍ତ୍ତନ ଦେଖାଦିଏ । ସେ ମନକୁ ମନ କହେ—ତୁ କେତେ ମାରିବ ଏକୁ ?

ପ୍ରବଳର ପରିବର୍ତ୍ତନ ଆସେ, ନିଜେ ସଙ୍କୁଚିତ ହୁଏ, ଅନୁତାପ କରେ ଏବଂ ଅତ୍ୟାଗ୍ରହୀତ ଦୁର୍ବଳ ପ୍ରତି ତା ମନରେ ଦୟା ଜାତ ହୁଏ । ଏ ଦୟା-ଦୟା ନୁହେଁ । ପରାଜୟର ସ୍ୱୀକୃତି ଏହାର ଅନ୍ୟ ନାମ । କଟକକୁ ଫେରିଆସିବା ପରେ ନକୁଳବାବୁ ପୁଣି ଥରେ ଏକୁଟିଆ ଏକୁଟିଆ ଲାବଣ୍ୟଦେବୀଙ୍କ ନିକଟକୁ ଲେଉଟି ଯିବାକୁ ଇଚ୍ଛା କଲେ । ମାତ୍ର ପ୍ରକାଶ୍ୟରେ କାହାରିକି କିଛି ମାତ୍ର କହିଲେ ନାହିଁ । କଳିଙ୍ଗ ବିଜୟ ପରେ ଅଶୋକଙ୍କ ମନ ମଧ୍ୟରେ ଏହି ଭଳି ଭାବେ ପରିବର୍ତ୍ତନ ଦେଖା ଦେଇଥିଲା ।

କିଛିଦିନ ପରେ ଗ୍ରାମୁକରଣେ କଟକ ଆସି ବାବୁଙ୍କୁ ସାକ୍ଷାତ କଲେ । ବାବୁ ନିଭୃତରେ ତାଙ୍କ ସଙ୍ଗରେ ବହୁତ କଥାବାର୍ତ୍ତା ହେଲେ । ବିଷୟବସ୍ତୁ ହେଲା—“ବଡ ସାଆନ୍ତାଣୀ କେମିତି ଅଛନ୍ତି ?”

ବାବୁଙ୍କ ମନର ଦୁର୍ବଳତାକୁ କଳିନେବା ବିଷୟରେ ଗ୍ରାମୁକରଣେ ଧୁରନ୍ଧର ଲୋକ । କାରୁଣ୍ୟ ପ୍ରକାଶ କରି ସେ ବଡ଼ ସାଆନ୍ତାଣୀଙ୍କ ଦୁଃଖ ଅପମାନ କଥା ବର୍ଣ୍ଣନା କରିଗଲେ ।

ତାର କିଛିଦିନ ପରେ ଶ୍ୟାମା ଆସି ବଡ଼ ସାଆନ୍ତାଣୀଙ୍କ ପାଖରେ କହିଲା—ଗୁପ୍ତମୁକରଣେ କହୁଥିଲେ ବାବୁଙ୍କର ଏଥିଭିତରେ ଆସିବାର ଅଛି । ଏକା ଆସିବେ ବୋଲି ଖବର ପଠାଇଛନ୍ତି । ପଛ କଥାକୁ ଭୁଲି ଆପଣ ଏଥର ତାଙ୍କ ପାଖକୁ ଯାଆନ୍ତୁ । ବୋଇଲା—

ବୁଝି ବିଚାର କାମ କଲେ
ପ୍ରମାଦ ନ ପଡ଼ଇ ଭଲେ ।

ଲାବଣ୍ୟଦେବୀ ଭାବିଲେ—ଠିକ୍ କଥା କହୁଛି ଶ୍ୟାମା । ଆଜି ଭଲ ଅଛି କି ମନ୍ଦ ଅଛି । ଲୋକନିନ୍ଦାରୁ ନିଜକୁ ରକ୍ଷା କରିବାପାଇଁ ଅନ୍ତତଃ ବାବୁଙ୍କ ପାଖକୁ ଯିବା ତାଙ୍କର ଉଚିତ ହେବ ।

ଶ୍ୟାମାକୁ ଡାକି ସେ କହିଲେ—ଯାହା ତୁ କହିଲୁ ତା ସତ । ହେଲେ ତାଙ୍କୁ ଏ ଖଞ୍ଜାକୁ ତୁଇ ଯାଇ ଡାକି ଆଣିବୁ ।

× × ×

ହଠାତ୍ ଧନେ ବାବୁ ବଗିଗାଡ଼ିରେ ଏକୁଟିଆ ଆସି ପହଞ୍ଚି-ଗଲେ । ନିଜର ପାରିବାରିକ ବିପର୍ଯ୍ୟୟରେ ସେ ଗୋଟାଏ ସମାଧାନ କରାଇଦେବାର ଉଦ୍ଦେଶ୍ୟ ନେଇ ଆସିଛନ୍ତି । ସେ ଗୃହାନ୍ତ ସୁବର୍ଣ୍ଣବି ଥିବେ, ଲାବଣ୍ୟବି ଥିବେ । ସେ ସେଠି ତ ଇଏ ଏଠି । ଗୋଟିଏ ତିଅଣ ସବୁଦିନେ ଖାଇଲେ ସୁଆଦ ଲାଗେ ନାହିଁ । ବିଭିନ୍ନତାହିଁ ଜୀବନର ମଧୁ ।

ଝିଅପିଅ ସରଲ । ଖିମା ଆସି ମୁଣ୍ଡି ଆମାର ଠିଆ ହେଲ । ବାବୁ ତା ମୁହଁ ଆଡ଼କୁ ଚାହିଁ ହସୁଚନ୍ତି । ପଚାରୁ ଦେଉଚନ୍ତି— ସାଆନ୍ତାଣୀ କେମିତି ଅଛନ୍ତି ରେ ଖିମା ।

ଖିମା ବୁଝିଲ ବାବୁଙ୍କ ମନ ନିକତ ଆଜ ବଡ଼ ସାଆନ୍ତାଣୀଙ୍କ ଆଡ଼କୁ ଟଳିଛି । ବାବୁ ଜାଣିବାକୁ ସେ ମୁହଁ ଫେରାଇ କାନ୍ଦୁରୁ କାନ୍ଦୁରୁ ଦେଖାଗଲ ।

ସେ ଦିନ ଖରାବେଳେ ବାବୁ ଶୋଇ ପଡ଼ିଚନ୍ତି । ବଡ଼ବଡ଼ିଆ ମାନେ ଖରାବେଳ ଯାକ ନିଘୋଡ଼ ନିଦରେ ଶୋଇ ପଡ଼ନ୍ତି । ଦିବା ନିଦ୍ରାଟା ବଡ଼ ଘରେ ବଢ଼ିଆ ଅଭ୍ୟାସଟାଏ । ରାତିକ ମଜା-ମଜଲସରେ ବାରଟା ଗୋଟାଏ ହେଉ ପଛକେ ! ଧୀରେ ଧୀରେ ଭିତରକୁ ପଶିଆସି ଖାଡହସ୍ତ ଅନ୍ତରରେ ପଲଙ୍କ କଡ଼କୁ ଲଗି ଛିଡ଼ା ହୋଇ ଧୀରେ ଧୀରେ ପାଦ ମଞ୍ଜାଳି ଦେବାରେ ଲଗିଲ—ଖିମା । ବାବୁଙ୍କ ସୁଖ-ନିଦ୍ରା ଧୀରେ ଧୀରେ ଭାଜିଗଲ । କଡ଼ ଲେଉଟାଇ ପଚାରି ଦେଲେ—କଏ, ଖିମା ?

ଅନେକ ଦିନୁ ଖିମା ଏଇ ଘରେ ବଢ଼ିଛି । ସବୁବେଳେ ସେ ବାବୁଙ୍କୁ ମୋଡ଼ିଦିଏ । ତା ହାତ ବାବୁଙ୍କର ଚିହ୍ନା । ଅନୁଚ ସ୍ୱରରେ ସେ ଉତ୍ତର ଦେଲା—ଆଜ୍ଞା ମୁଇଁ ।

ଏ ଦେଶରେ ସେ ସମୟରେ ବଡ଼ବଡ଼ିଆ ଓ ଗର୍ବବଗୁରୁବା ସମସ୍ତଙ୍କର ଗୋଟାଏ ବଡ଼ ଖୋଇ ହୋଇ ପଡ଼ିଥିଲ—ଗୋଡ଼ମୋଡ଼ା ଏକଥା ଗୋଟାଏ ରୋଗ ରୂପେ ପ୍ରାୟ ସମସ୍ତଙ୍କ ପାଖରେ ଦେଖା ଦେଉ-ଥିଲ । ସତରେ କଅଣ ସମସ୍ତେ କର୍ମକ୍ଳାନ୍ତ ହୋଇ ପଡ଼ୁଥିଲେ ଯେ ସମସ୍ତଙ୍କର ଗୋଡ଼ ହାତ, ଦିହ ମୁଣ୍ଡ, ଦଳା-ଘସା, ମୋଡ଼ା-ମୋଡ଼ ଲୋଡ଼ୁଥିଲ ? ଅଳ୍ପେ ବହୁତେ ଏଗୁଡ଼ାକ ଥିଲ କୁଅଭ୍ୟାସ ଏବଂ ବିଳାସ ବ୍ୟସନର ଅଂଶ ବିଶେଷ । ଏହାକୁ ଏବେ ଲୋକେ ଗୋଟିଏ ପ୍ରକାର ମାନସିକ ବ୍ୟାଧି ଭାବରେ ଗ୍ରହଣ କରୁଅଛନ୍ତି । ଶରୀର ଲୋଡ଼ୁ କି

ନ ଗୃହଁ ମନ ଗୃହଁ ଥିଲା ଏ ଚଟକ । ନିଭୃତ ଖଟବେଳେ ଓ ଅନ୍ଧକାର ଶୟନ କକ୍ଷରେ ସ୍ୱାମୀକୁ ମୋଡ଼ା ଘଷା କରିଦେବେ ସ୍ତ୍ରୀ —ସେ ହେଲେ ଚରଣ ସେବିକା । କ୍ଷୀରସମୁଦ୍ର ମଧ୍ୟରେ ଅନନ୍ତ ଶୟନରେ ବିଷ୍ଣୁ ଶୟନ କରିଥିବାବେଳେ ଲକ୍ଷ୍ମୀ ତାଙ୍କ ପାଦ ମଞ୍ଜାଳିବାରେ ଲାଗିପଡ଼ନ୍ତି । ବାବୁଭୂୟାଁଙ୍କ ନିଭୃତ ଶୟନକକ୍ଷରେ ପଶି ସୁନ୍ଦର ସୁନ୍ଦର ପୁଅପିଲା ଏବଂ ସୁନ୍ଦରୀ ଯୁବତୀ ଦାସୀ ଚାକରାଣୀମାନେ ପାଦ ଘସିମୋଡ଼ ଦେଉଛନ୍ତି, ଘରର ପାଦ ମୋଡ଼ ଦେବାକୁ ଆସୁଛନ୍ତି ଭଉଣୀମାନେ ଏବଂ ଗୃହକର୍ତ୍ତାଙ୍କ ଗୋଡ଼ ଘସିଦେବାକୁ ଆସି ଯାଉଛନ୍ତି ଝିଅବୋହୂଏ । ଏଥିରେ କେହି କିଛି ବାରଣ କରୁନାହାନ୍ତି ଏବଂ ଏଇ ବାଟ ଦେଇ ବାର ବ୍ୟଭିଚାର ସମାଜ ଓ ପରିବାର ମଧ୍ୟରେ ପଶିଚାଲିଛି । କିନ୍ତୁ ଏ ପ୍ରଥା ବିରୁଦ୍ଧରେ ଲୋକମତ ସୃଷ୍ଟି ହେଉ ନାହିଁ । ଅତିବଡ଼ ଜଗନ୍ନାଥ ଦାଶ ଓଡ଼ିଆ ଭାଗବତ ଲେଖୁଲେଖୁ ମଣିଷର ଏ ଦୁର୍ବଳତାକୁ ପ୍ରକାଶ କରିବାକୁ ଯାଇ କହିଛନ୍ତି— କାଷ୍ଠ ପାଷାଣକୁ ନାରୀ ରୂପ ଦେଇ ଜତିଙ୍କ ସମ୍ମୁଖରେ ଥୋଇ ଦେଲେ ତାଙ୍କ ମନ ମଧ୍ୟରେ ବି ସ୍ଖଳନ ଜାତ ହୋଇଥାଏ ।

ସଂସ୍କୃତରେ ଜଣେ କବି ଲେଖିଛନ୍ତି—

ବିଶ୍ୱାମିତ୍ର ପରାସରାଦ୍ୟ ମୁନୟଃ
ବାତାମ୍ବୁପର୍ଣ୍ଣାଶନା
ତେପି ସ୍ତ୍ରୀମୁଖ ପଂକଜଂ ସୁଲଳିତଂ
ଦୃଷ୍ଟ୍ୱାଚ ମୋହଂଗତା ।

ଅସାମାଜିକ ବ୍ୟଭିଚାର ଅତ୍ୟାଚାର ଓ ଅପକର୍ମ ଏଇ ଗୋଡ଼ମୋଡ଼ା ବାଟ ଦେଇ ଆସିଥାଏ । ଯାହା ହେଉ ସୁଖର କଥା ଆଜିକାଲିର ଅଭାବର ଦୁନିଆରେ ଏସବୁ ଅଳସ ବିଳାସର ମାତ୍ରା ଏକ ପ୍ରକାର ଲୋପ ପାଇ ଆସିଲାଣି ।

ବାବୁ ପଚାରିଲେ—ସାଆନ୍ତାଣୀ କେମିତି ଅଛନ୍ତି ଭୀମା ?

ନାକ ସୁଁ ସୁଁ କରି କାନ୍ଦ ଉଠି ଅନୁଚ୍ଚସ୍ୱରରେ ଭୀମା ଉତ୍ତର ଦେଲା—ଆପଣଙ୍କୁ ଝୁରି ଝୁରି କଣ୍ଢା ହୋଇ ଗଲେଣି ଆଜ୍ଞା । ହଜୁର ପୁଣି ଏଡ଼େ କନ୍ଦା ପଥର ! ସେ ସଦାବେଳେ କାନ୍ଦୁଚନ୍ତି ଆଉ ହଜୁର ତାଙ୍କୁ ଏତେ ହୀନମାନିଆ କରିରଖିଲେ ? ଅନାଥ ପ୍ରାଣୀ—ବଞ୍ଚିବେ କେମିତି ? ତାଙ୍କର ଅପରାଧ କଅଣ ଆଜ୍ଞା ?

ପଚାରୁ ପଚାରୁ ଭୀମା ପାଦ ତଳ୍କୁ ବେକଯାଏ ଦି ହାତରେ ମୋଡ଼ି ଆଉଁସି ଚାଲିଚି ।

ଏମିତିଆ କଥାଗୁଡ଼ାକ ଲୋକଙ୍କୁ ଭାରି ଭଲ ଲାଗେ । ମୂଷାଟାକୁ ଦରମରା କରି ପକାଇ ଖେଳାଉଥିଲେ ବିଲେଇ ମନରେ ଭାରି ଆନନ୍ଦ ପାଏ । ଲୋକର ପରିବାର ଗାଈଗୋଠ ଭିତରେ ଯେତେ ଅଧିକ ସଂଖ୍ୟାରେ ଉପଭୋଗ୍ୟା ନାରୀ ଥାଆନ୍ତି, ତେତେ ସେ ଗୃହକର୍ତ୍ତାଙ୍କ ଗୌରବ ଗରିମା ସେ କାଳରେ ବଢ଼ିଯାଇଥାଏ ।

ଏବେ ବି ସେ କଥା ସମୂଳେ ଲୋପ ପାଇନାହିଁ । ଜଣେ ଯୁବତୀ ନିଜ ରୂପ ଓ ସଜାରେ ଯେତେ ଅଧିକ ଯୁବକଙ୍କୁ ଆକୃଷ୍ଟ କରିପାରୁଚି, ତେତେ ତାର ଗୌରବ ବୋଲି ସେ ମନେ କରୁଚି ଏବଂ ଗୋଟିଏ ଯୁବକ ଆଡ଼କୁ ଯେତେ ଅଧିକ ଯୁବତୀ ଆକୃଷ୍ଟ ହେଉଥିବାର ଜଣାପଡ଼ୁଚି, ତେତେ ସେ ଅଧିକ ଗର୍ବୀ ।

ଭୀମା କଥା ଶୁଣି ନକୁଳବାବୁ ମନକୁ ମନ ହସୁଚନ୍ତି ଏବଂ ନିଜକୁ ଅଧିକ ସମ୍ମାନିତ ମନେ କରୁଚନ୍ତି ! ନିଜର ମାଇକୁ ସେ ସେତିକି ଅଧିକ ପସନ୍ଦ କରୁଚନ୍ତି ।

ଗୁଡ଼ ଗୁଡ଼ କଲେ ମାଡ଼ ମାଡ଼ ପଶେ ।

ସୁବର୍ଣ୍ଣଦେବୀଙ୍କୁ ନିଜ ପାଖକୁ ଟାଣି ଆଣିବାରୁ ଲାବଣ୍ୟ-ଦେବୀ ଗୁଡ଼ ଦେଇ ପଳାଇଥିଲେ । ଏବେ ପୁଣି ତାଙ୍କୁ ଗୁଡ଼ଗୁଡ଼ କରିବାରୁ ସେ ମାଡ଼ ପଶିବାକୁ କାନ୍ଦଉଠୁଚନ୍ତି ଯେ !

ଅଭିମାନ କରି 'ଖାଇବିନାହିଁ ଖାଇବି ନାହିଁ' ବୋଲି ଯିଏ କହୁଚି, ତା ପାଖରୁ ଭାତ ଥାଳି ପୁରାପୁରି ଉଠେଇ ନିଅ । ଦେଖିବ ଭୋକ ବିକଳରେ ସେ କାନ୍ଦି ଉଠି କହିବ—'ଦେ ଦେ ଟିକିଏ ଦେଇଯା ।'

ଭୀମା ବାବୁଙ୍କ ମନକୁ ନିଜର ଛୋଟିଆ ମନ ଭିତରେ ଓଜନ କରୁଚି ଏବଂ ମୁହଁରେ କାନ୍ଦ ଫୁଟାଇ ଭିତରେ ଭିତରେ ମୁରୁକି ମୁରୁକି ହସୁଛି । ମନେ ମନେ ବାବୁଙ୍କୁ ଲକ୍ଷ୍ୟ କରି କହୁଚି— ମୋର ଅଇଁଠା ଭୁଇ ଖାଇବୁଟରେ ବାବୁ । ନିଜେ ଯିଏ କୁକୁର ହୋଇ ଅନ୍ୟର ଅଇଁଠା ପଛ ଗୋଲିବୁଲିବ, ତାକୁ ପୁଣି ଭଲ ଖାଦ୍ୟ ମିଳିବ କାହିଁ ?

ଆଲୁଅକୁ ଆଲୁଅ
ଅନ୍ଧାରକୁ ଅନ୍ଧାର
ଭଲକୁ ଭଲ
ମନ୍ଦକୁ ମନ୍ଦ ।

ନିଜେ ରାମଚନ୍ଦ୍ର ହୁଅ, ତେବେ ଯାଇ ସୀତା ମିଳିବେ ।

ଆଦର୍ଶଟା ନିଜ ଆଡ଼ୁହିଁ ଜାତ ହେବା ଦରକାର । ନିଜେ ଚରିତ୍ରବାନ୍ ହେଲେ ହିଁ ଚରିତ୍ରବତୀ ନାରୀ ପାଇବେ ।

ଭୀମା ହୁଁ ହୁଁ ହୋଇ କାନ୍ଦିବାର ଅଭିନୟ କରୁଚି ଏବଂ ମନେ-ମନେ ଆନନ୍ଦ ଓ ଗର୍ବ ଗୌରବର ମଧୁର ନିଶାରେ ଢୁଳେଇ ଢୁଳେଇ ରାୟସାହେବଙ୍କୁ ମୋଡ଼ାଦସାରେ ବସ୍ତୋର ହେଉଛି । ମନେ ପଡ଼ିଯାଉଛି ଗୀତାର ଶ୍ଳୋକ—

ପ୍ରବୃତ୍ତି ରେଷା ଭୂତା ନାଂ
ନିବୃତ୍ତିସ୍ତୁ ମହାଫଳା ।

ଭଲ ମନ୍ଦ, ପାପ ପୁଣ୍ୟ, ତ୍ୟାଗ ଭୋଗ ସବୁ ଗୁଡ଼ିକ ହେଲା ପ୍ରାଣୀମାନଙ୍କ ସ୍ୱାଭାବିକ ପ୍ରବୃତ୍ତି । ସଞ୍ଚିତ ମଣିଷହିଁ ଠିକ୍ କରିଛି ଏଥିରୁ ନିବୃତ୍ତ ହେଲେ ମହାଫଳ ବା ଶୁଭଫଳ ମିଳିଥାଏ ।

ଭଲ କିଏ, ମନ୍ଦ କିଏ, ପାପ କିଏ ଆଉ ପୁଣ୍ୟ କିଏ, ଏ କଥା ଠିକ୍ କରିଛି ମଣିଷ । ଭଗବାନଙ୍କୁ କଳ୍ପନା ଭିତରେ ସୃଷ୍ଟି କରି ନେଇଛି ସମାଜର ସଭ୍ୟ ମଣିଷ । ଜଣେ ସନ୍ୟାସୀ କହିଲେ—ଭଗବାନ ବୋଲି କେହି ଅଛନ୍ତି କି ନାହିଁ କେହି ସଠିକ ଭାବେ ଜାଣେ ନାହିଁ । କେହି କେବେ କିଛି ଦେଖିନାହିଁ । ବହୁକାଳର ସାଧନା ପରେ ଉଦ୍ଦାଳକ ମୁନି ପୁଅ ସ୍ୱେତକେତୁକୁ କହିଲେ —ଜଳରେ ଲବଣ ନିକ୍ଷେପ କରିଦେଖ, ତାହା ଜଳ ମଧ୍ୟରେ ମିଶି ନିଜର ସ୍ୱରୂପ ହରାଉଚି । ସେହିଭଳି ସୃଷ୍ଟି ମଧ୍ୟରେ ସତ୍ତ୍ୱ ଓତପ୍ରୋତଭାବେ ଜଡ଼ିତ ହୋଇଅଛନ୍ତି । ନିଜତ୍ୱ ଅଛି କି ନାହିଁ ଜଣାଯିବା ଦୁଷ୍କର । ସ୍ୱରୂପତ ଦେଖାଯାଉ ନାହିଁ । ଚିନ୍ତା ଓ କଳ୍ପନା ମଧ୍ୟଦେଇ କେବଳ ତାଙ୍କର ସତ୍ତ୍ୱ ଅନୁଭବ କରିଥାଏ ଚିନ୍ତକ । ପ୍ରତ୍ୟେକ ପଦାର୍ଥ ମଧ୍ୟରେ 'ସେ' ଅଛନ୍ତି । ମୋ ଭିତରେ ବି 'ସେ' ଓ ତୁମ ଭିତରେ ବି 'ସେ' । 'ସେଇ' ହେଉଛି 'ତୁମେ' ସ୍ୱେତକେତୁ ।

ତତ୍ତ୍ୱମ୍ ଅସି ସ୍ୱେତକେତୋଃ ।
ତୁମକୁ ତୁମେ ନିଜେ ଚିହ୍ନିନିଅ ସ୍ୱେତ୍‌କେତୁ ।

କାଳକ୍ରମେ ଶଙ୍କର ବି କହିଲେ—ସୋ ହିଂ ।
ସେଇ ମୁଁଇ ।

ସନ୍ୟାସୀ ପୁଣି କହିଲେ—ଆମେ ଘରଖଣ୍ଡିଏ ତିଆରି କରିଛୁ କାହିଁକି ? ଏ ପ୍ରଶ୍ନର ଉତ୍ତର ଦେବାକୁ ଗଲେ ମଣିଷ ଭଗବତ୍ ସତ୍ତ୍ୱକୁ ବିଶ୍ୱାସ କାହିଁକି କରୁଛି ତାର ଯଥାର୍ଥ ଉତ୍ତର ମିଳିଥାଏ ।

ଆମର ମଙ୍ଗଳ ପାଇଁ
ଆମର ଉପକାର ପାଇଁ ଭଗବାନଙ୍କୁ ଆମେ ତିଆରି କରିଛୁଁ ।

ଈଶ୍ୱର ବିଶ୍ୱାସକୁ ଆମେ ମନ ଭିତରେ ପୋଷଣ କରି ରଖିଛୁ—ଘରଟିଏ ତିଆରି କରିବା ପରି, କେବଳ ଆମର ମଙ୍ଗଳ ପାଇଁ । ମୁହୁର୍ମୁହୁ ବିକେନ୍ଦ୍ରୀଭୂତ ମନକୁ କେବଳ କେନ୍ଦ୍ରଭୂତ କରିବା ପାଇଁ ହିଁ ଆମେ ହିନ୍ଦୁ, ମୁସଲମାନ, ଜୈନ

ଖ୍ରୀଷ୍ଟିୟାନ, ଅଦ୍ଧ ସମସ୍ତ ଭିଭିନ୍ନ ନାମରେ ସେହି କାଳ୍ପନିକ ଈଶ୍ୱରଙ୍କ ନାମ ଜପ କରୁଛନ୍ତି ଏବଂ ତାଙ୍କର ଗୁଣଗାନ କରି ବୁଲୁଛନ୍ତି । ପର୍ବ ପର୍ବାଣୀରେ ତାଙ୍କର ପୂଜା ଆରାଧନା କରୁଛନ୍ତି ଏବଂ ତାଙ୍କର ରୂପ ଗଢ଼ି, ତାଙ୍କ ପାଇଁ ଶୂନ୍ୟ ମନ୍ଦିର ତୋଳି ତାଙ୍କର ନିକଟରେ ଆମର ପାପପୁଣ୍ୟ-ମୟ ହୃଦୟକୁ ଅର୍ପଣ କରୁଛନ୍ତି ।

ପ୍ରବୃତ୍ତି ହ୍ୟେଷା ଭୂତାନାଂ ।
ପ୍ରାଣୀର ପ୍ରବୃତ୍ତି ହେଲା "ଆହାର ନିଦ୍ରାଭୟ ମୈଥୂନାନି"

ସାମାଜିକ ସଭ୍ୟ ମଣିଷ ଯୁଗ ଯୁଗ ଧରି ସଞ୍ଜମର ଯୋଗ ସାଧନ କରି ନିବୃତ୍ତି ମାର୍ଗକୁ ଯଥା ସମ୍ଭବ ଆଗେଇ ଆସିଛି । ଏତେବେଳେ ପୁଣି ସେ ଯଦି ଜନମତକୁ ବେଖାତିର କରି "ପ୍ରବୃତ୍ତି ହ୍ୟେଷା ଭୂତାନାଂ" ମାର୍ଗରେ ଏଠିସେଠି ଯଥେଚ୍ଛା ବସ ଉଠ କରି ପକାଏ; ତେବେ ସେ କଅଣ କଲା ନିଜର ଓ ସମାଜର ?

ବାରବରଷର ତପସ୍ୟାଫଳ ତାର ସାମାନ୍ୟ ଶୁଖୁଆ ପୋଡ଼ାରେ ଶେଷ ହୋଇଗଲା ସିନା ?

ବହଳ ବିଛଣା ଉପରେ ଧବାଶୟନର ସୁଖ ମଧ୍ୟରେ ଖ୍ରୀମାର ଘସାମଜା ଖାଉ ଖାଉ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ି ପଡ଼ି ଗୃହସାହେବ ଧୀର ଅନୁତାପରେ ମ୍ରିୟମାଣ ହୋଇ ଭାବୁଚନ୍ତି ବାରକଥା । ପାଖକେ ଲାବଣ୍ୟଦେବୀଙ୍କ ଚନ୍ଦା—ଆଉ ପାଖରେ ସୁବର୍ଣ୍ଣ ଓ ତାଙ୍କର ଛୁଆଟି । ପୁଣି ଭାବୁଚନ୍ତି ପାପବୋଲି ଲୋକେ ଯାହାକୁ କହୁଚନ୍ତି, ତହିଁରେ ବି ସନ୍ତାନ ଜନ୍ମ ହେଉଛି ମଧ୍ୟ । ପୁଣ୍ୟ ମଧ୍ୟରେ ତ ସାଧାରଣତଃ ସନ୍ତାନ ଜନ୍ମହୁଏ ଓ ହେଉଛି । ସମାଜ କିନ୍ତୁ ଗୋଟିକୁ କହୁଛି ପୁଣ୍ୟର ଫଳ—ବୈଧ ସନ୍ତାନ, ଏବଂ ଅନ୍ୟଟିକୁ ପାପର ଫଳ, ଅବୈଧ ସନ୍ତାନ । ପାପ ଓ ପୁଣ୍ୟ ବୋଲି କିଛି ବୋଧହୁଏ ନାହିଁ । ଲୋକେ ଯାହାକୁ କହିଲେ ଏଇଟି ପାପ—ସେ ହେଲା ପାପ ଏବଂ ଲୋକେ ଯାହାକୁ ମାନିଲେ ପୁଣ୍ୟ ବୋଲି—ସେ ହେଲା ପୁଣ୍ୟ ।

ସଭ୍ୟ ସମାଜରେ ଶୃଙ୍ଖଳା ରକ୍ଷାଲାଗି ହିଁ ପାପ ପୁଣ୍ୟର କଳ୍ପନା କରାଯାଇଛି ଏବଂ ବହୁ ଯୁଗର ସାଧନା ପରେ ଆଜ ମାନବ ସଂଯମ ଶିକ୍ଷା କରିଛି ଏବଂ ନିଜେ ଆଜିର ସଭ୍ୟ ମାନବ ପଦବୀ ଲାଭ କରି ପାରିଛି ।

ବାର ବରଷର ତପସ୍ୟା-ଫଳକୁ ସାମାନ୍ୟ ଝୁଲୁଆ ପୋଡ଼ାରେ ଶେଷ କରି ଦେବାଟା କଅଣ ଠିକ୍ ହେଲା

ନକୁଳବାବୁ ଚମକିତ ହୋଇଉଠିଲେ । ଏବଂ ମନେ ମନେ କାତର ସ୍ୱରରେ ଗୀତାର ଶ୍ଲୋକ ଆବୃତ୍ତି କରି ଚାଲିଲେ ।

ଜାନାମି ଧର୍ମଂ ନଚ ମେ ପ୍ରବୃତ୍ତି
ଜାନାମ୍ୟଧର୍ମଂ ନଚମେ ନିବୃତ୍ତି ।
ତ୍ୱୟା ହୃଷିକେଶ ହୃଦିସ୍ଥିତେନ
ଯଥା ନିଯୁକ୍ତୋସ୍ମି ତଥା କରୋମି ।

ନିଜକୃତ ଭଲ ମନ୍ଦର ଫଳାଫଳକୁ ଭଗବାନଙ୍କ ଉପରେ ପକାଇ ଦେଇ ତାଙ୍କୁ ହିଁ ଦୋଷୀ ସାବ୍ୟସ୍ତ କରିପକାଇ ଗୀସ୍ଯସାହେବ କହୁଚନ୍ତି—ମୁଁ କି ଜାଣେ ପ୍ରଭୁ ? ତୁ ମତେ ଯାହା କରିବାକୁ କହୁଛୁ , ମୁଁ ତାହାହିଁ କରିଯାଉଛି ।

"ଅତଏବ ମୋର କିଛି ଦୋଷ ନାହିଁ କି ଭୁଲ ନାହିଁ ସବୁ ତୋର । କାରଣ ତୁଇ ହିଁ ମୋଦେଇ ଭଲ ମନ୍ଦ ସବୁ କାମ କରାଇ ଯାଉଛୁ ।" ଏତିକରେ ସବୁପାଠ ସରିଗଲା । ନିଜର ମନ ମଧ୍ୟ ସଫା ହୋଇଗଲା । କିନ୍ତୁ ଭିତରେ ଭିତରେ ନିଆଁ କହୁଳୁଛି । ମନ ଭିତରେ ଅନୁତାପ ବହ୍ନି ପାଉଁଶ ତଳେ ନିଆଁ କୁହୁଳଲା ପରି କୁହୁଳୁଛି ।

କଡ଼ ଲେଉଟାଇ ଧୀରେ ସେ ପଚାରିଲେ—କଅଣ କହୁଥିଲେ ସାଆନ୍ତାଣୀ ?

ଖିମା —କହିଚନ୍ତି ଆପଣ ଯିବେ । ହାତ ଯୋଡ଼ି ମୋର ହାତରେ କହି ପଠାଇଚନ୍ତି । ସାନ ସାଆନ୍ତାଣୀତ ନାହାନ୍ତି । ହଜୁର ଆଜ ନିଶ୍ଚେ ଯିବେ ।

ଖିମା ଗୋଡ଼ ମୋଡ଼ୁଥାଏ, ଏବଂ ହୁଁ ହୁଁ ହୋଇ କାନ୍ଦୁଥାଏ । ଅପେକ୍ଷା କରିଥାଏ—ବାବୁ କଅଣ କହିବେ—ଶୁଣିବା ପାଇଁ । ମନ ଭିତରେ କିନ୍ତୁ ଗୁପ୍ତ ଅଭିଯାନର ମଧୁର ସ୍ୱପ୍ନ ଭିତରେ ଭିତରେ ମହକ ଉଠୁଥାଏ । ପରକୀୟାର ମାଦକ ନିଶା ପ୍ରାଣ ଭିତରେ ତାର ପୁଲକ ଉଠାଉଛି ।

ଅନୁତାପଚନ୍ତା ଭିତରେ ବି ନକୁଳବାବୁ ବିଶେଷଭାବେ ଭାବୁ-ଚନ୍ତି—ବିଭିନ୍ନତାହିଁ ଜୀବନର ଚଟକ । ଉପଭୋଗ ଦ୍ୱାରା କାମୀଲୋକର କାମନା ଲାଳସା କମିଯିବା ବଦଳରେ ବଢ଼ି ବଢ଼ି ଯାଉଥାଏ । ନିଆଁକୁ ଘିଅ —ହବିଷା କୃଷ୍ଣବର୍ତ୍ମେବ ଭୂୟ୍ୟୋୟେବାଭିବର୍ଦ୍ଧତେ ।

ଭାବୁଚନ୍ତି, ଲାବଣ୍ୟଦେବୀଙ୍କୁ ଏ ଘରକୁ ଡକାଇ ପଠାଇବେ ବୋଲି । କିନ୍ତୁ ମନେ ପଡ଼ି ଯାଉଛି ସୁବର୍ଣ୍ଣଦେବୀଙ୍କ ବାରଣ—ନାମି ଏ ଘରକୁ ଆସିବେ ନାହିଁ ତାଙ୍କ ସାଙ୍ଗରେ କଥାଭାଷା ହେବାକୁ କେବେ ଯଦି ମନ କର, ତେବେ ସେଇ ଖଞ୍ଜାକୁ ଚାଲିଯିବ । ତୁମଭଳି ମଣିଷ ରସଗୋଲା ସନ୍ଦେଶରେ ଭୂରିଭୋଜନ କରିସାରିଲେ ବି ନିମପିତାକୁ ଆଶା ରଖିଥାଏ ।

ଖିମା କହିଲା—ମୁଁ ତାଙ୍କୁ ଡାକି ଆଣିବି କି ? ନୋହିଲେ ସେ ସେ ଆଉ ବଞ୍ଚିପାରିବେ ନାହିଁ ! ତାଙ୍କର ରୂପ ଭେକ ଦେଖିଲେ ଆପଣବି କାନ୍ଦି ପକାଇବେ ।

ନକୁଳ ବାବୁ ଉଠି ବସି କହିଲେ—ଯା କହିଦେବୁ, ଆଜ ମୁଁ ଯିବି । ମୋ ପାଇଁ ସେଇଠି ଖାଇବାର ବନ୍ଦୋବସ୍ତ କରିଥିବେ ।

ବାବୁଙ୍କ ପାଦ ଉପରେ ମୁଣ୍ଡଟାକୁ ବାଡ଼େଇ ଦେଇ ଖିମା କହି ଉଠିଲା—ଆହା, ଏତେ ଦୟା ! ନୋହିଲେ କି ରଜା ହୋଇ ଥାଆନ୍ତେ !



ସଞ୍ଜକୁ ରାୟସାହେବ ଭୀମାକୁ ସଙ୍ଗରେ ଧରି ପତ୍ରୁଣା ଖଞ୍ଜାରେ ବାହାରି ଗଲେ । ଶୋଇବା ଘର ଭିତରେ ଖଟ ଉପରେ ମୁହଁ ମାଡ଼ି ପଡ଼ି ସୁଉଁ ସୁଉଁ ହୋଇ କାନ୍ଦୁଚନ୍ତି ଲାବଣ୍ୟଦେବୀ । ଅପରାଧୀ ପରି ଧୀରେ ଧୀରେ ନକୁଳବାବୁ ଭିତରକୁ ପଶି ଖଟଟି ଉପରକୁ ବସିପଡ଼ି ତାଙ୍କ ହାତଟିକୁ ଧରି ଭିଡ଼ିଲେ—ଉଠ । ଆସ । ଯାହା ହେବାର ହେଲାଣି । ମୋର ସବୁ ଭୁଲ ।

ଲାବଣ୍ୟ ହାତ ଛଡ଼ାଇ ନେବାକୁ ଚେଷ୍ଟା କରୁଚନ୍ତି ଏବଂ ଠାଣି ଓଟାରି ହେଉଚନ୍ତି । ଅନ୍ୟ ଆଡ଼କୁ ମୁହଁ ବୁଲାଇ ଶୋଇ ପଡ଼ୁଚନ୍ତି । ହେଲେ—

ଦାମ୍ପତ୍ୟ କଳହଃଚୈବ
ବହ୍ୱାରମ୍ଭେ ଲଘୁକ୍ରିୟା ।

ତା ପରେ ଗାଁରେ ନକୁଳବାବୁ ପନ୍ଦର ଦିନ ରହିଗଲେ । କଟକରୁ ଦି ଦି ଥର ତଲବ ଆସିଲା । ବାବୁ ଲେଖିଲେ—କାମ ଭିଡ଼ରେ ଯାଇ ପାରୁ ନାହିଁ । ହିସାବ ବୁଝାସୁଝା ସରିଗଲେ ଯିବି । ବ୍ୟସ୍ତ ହେବୁ ନାହିଁ ସୁବର୍ଣ୍ଣ ।

ଧରାପଡ଼ିଥିବା ବଡ଼ ମାଛଟାଏ ଜାଲ ଛିଣ୍ଡାଇ ପଳାଇ ଯାଉଛି ବୋଲି ସୁବର୍ଣ୍ଣଦେବୀ ବ୍ୟସ୍ତହୋଇ ପଡ଼ିଚନ୍ତି । ହେଲେ ଲାବଣ୍ୟଦେବୀଙ୍କ ଆଡ଼ୁ ମନଟା ଛାଡ଼ିଲେ ତ ରାୟସାହେବ ଯିବେ ! ଶେଷକୁ ବିରକ୍ତ ହୋଇ ସୁବର୍ଣ୍ଣ ମନକୁ ମନ କହିଲେ—ହଉ କେତେ ଦିନକେ ଆସୁଚନ୍ତି ଆସନ୍ତୁ ।

ପନ୍ଦର ଦିନ ପରେ ବାବୁ କଟକ ଫେରିଲା ବେଳକୁ ଲାବଣ୍ୟ ଦେଖି ଖିମାକୁ କହିଲେ—ବିଛଣା ପତ୍ର ମୋର ସଜାଡ଼ । ମୁଁ ବି ବାବୁଙ୍କ ସଙ୍ଗରେ ଯିବି ।

ଏଥିରେ ନକୁଳବାବୁଙ୍କ ଦିହ ଥରି ଉଠିଲା । ସେ ନିଜକୁ ନିଜେ କହିଲେ—

"ଦି ମାଇପର ଘଇତା
ତତଲ ଖାଇବୁ କି ପଖାଳ ଖାଇବୁ
ବେଳ ଥାଉ ଥାଉ କହିଥା ।"

ଦି ନାହାରେ ଗୋଡଦେଇ ନକୁଳବାବୁ ବ୍ୟସ୍ତ ହୋଇ ପଡ଼ିଚନ୍ତି । ଦି'ଭଉଣୀ ଦି'ସଉତୁଣୀ ପରି ତାଙ୍କୁ ଦି'ଆଡ଼କୁ ଓଟାରୁଚନ୍ତି । ତାଙ୍କୁ କିଏ ଦି'ଫାଳ କରିଦେବକି ?

ବାବୁଙ୍କ କଥା ଉତ୍ତରେଇ ନେଇ ବାବୁଆଣୀ ବଡ଼େ ହସିଉଠି କହିଲେ—ତୁମେ କାହିଁକି ଏତେ ବ୍ୟସ୍ତ ହେଉଚ ହୋ ? ମୁଁ ତମ ସାଙ୍ଗରେ କଟକ ଯିବି ସିନା—ସେଠା ବସାକୁ ଯିବିନାହିଁ । ମୁଁ ତୁମ ସୁବର୍ଣ୍ଣର ସଉତୁଣୀ ହେବାକୁ କୌଣସି ଦିନ ସେ ଘରେ ପାଦ ପକାଇବି ନାହିଁ ବୋଲି ନିର୍ଭର ଜବାବ ଦେଉଚି । ତୁମ ଦୁର୍ବ୍ୟବହାର କଥା ମନେ ପଡ଼ିଗଲା ବେଳକୁ ମତେ ଭାରି ବିକଳ ଲାଗୁଚି । ମତେ ତୁମେ କଟକ ରେଲ ଷ୍ଟେସନ୍‌ରେ ନେଇ ଛାଡ଼ିଦେଇ ଯିବ ଯେ ମୁଁ ପୁରୁଷୋତ୍ତମ ବୁଲି ଯିବି । ସେଠିକି ଯାଇ ସେଠାଘରେ ରହିବି ଏବଂ ମନଟାକୁ ଭୁଲାଇ ଦେବି । ଜଗନ୍ନାଥଙ୍କୁ ଦର୍ଶନ କଲେ ମୋ ମନ ବଦଳି ଯିବ । ପୁଣି ଏଠିକି ଫେରି ଆସିଲେ ତୁମର ଆମର ଦେଖା । ଏଇ ଗାଁ ମୋର ସ୍ୱର୍ଗ ବୋଲି ଜାଣିବ ।

ନିଜ ବ୍ୟବହାର କଥା ମନେ ପକାଇ ବାବୁ ଲଜ୍ଜିତ ହୋଇ କହିଲେ—ହଉ ତେବେ ଚାଲ । ତୁମକୁ ମୁଁ ଟ୍ରେନରେ ବସାଇ ଦେଇ

ବସାକୁ ଯିବ । ଖ୍ରୀମା ତୁମ ସଙ୍ଗରେ ଯାଉ । ସେଠା ଜଗୁଆଳୀ ପାଖରେ ପୁରୀ ଘରର ଗୃବ ଅଛି ।

ଖ୍ରୀମାର ମନ ଖୁସି ; ବାବୁଆଣୀଙ୍କ ମନବି ଖୁସି । ସେଠା ଘରଟା ପୁରୀ ସମୁଦ୍ର କୂଳରେ ତିଆରି ହୋଇଛି । ଠିକ୍ ସମାନ୍ତରରେ ନୀଳ ସମୁଦ୍ର । ଦିନ ରାତି ଢେଉ ପିଟୁଛି ଓ ରାତିଦିନ ହାଉଆ ବହୁଛି । ବାଁ କଡ଼କୁ ଦିଶୁଛି ଝାଉଁ ବଣ । ଡାହାଣ କଡ଼କୁ କିଛି ଦୂରରେ ସ୍ୱର୍ଗଦ୍ୱାର ଏବଂ ତା ପରେ ଜଗନ୍ନାଥ ଦାଶଙ୍କ ସାତ ଲହଡ଼ୀ ମଠର ପବନ ବାଲି । ସଞ୍ଜ-ସକାଳେ ଯାତ୍ରୀ ଦଳ ଏବଂ ନୋଳିଆ ପଲ ।

ଏକା ଗାଡ଼ିରେ ବାବୁ ଏବଂ ବାବୁଆଣୀ ସାମନା ସାମନି ବସି-ପଡ଼ିଲେ । ବିଛଣାପତ୍ର ଗାଡ଼ି ଉପରେ ବନ୍ଧାଗଲା ଏବଂ କୋଚବାକ୍ସ ଉପରକୁ ଉଠି ବସିପଡ଼ିଲେ କୋଚୁଆନ ଓ ଖ୍ରୀମାବାଉନ୍ତ । ସାମନାରେ ବସି ବାବୁଙ୍କ ସଙ୍ଗରେ ହସିହସି କଥା ହେଉ ହେଉ ମନ ଭିତରେ ଲବଣ୍ୟଦେବୀ ପ୍ରତିହିଂସା ନେବାପାଇଁ ପଣ କରି ବସୁଛନ୍ତି—ରାୟ-ସାହେବ, ତୁମର ମୁଁ ପ୍ରତିଶୋଧ ନେବି, ନେବି, ନେବି । ନିଜେ ରସାତଳକୁ ଗଲେ ସୁଦ୍ଧା ଶଠ-ସ୍ୱାମୀ ସହିତ ଶଠତା ଆଚରଣ ନିଶ୍ଚୟ ମୁଁ କରିବି ।

ଶଠେ ଶାଠ୍ୟଂ ସମାଚରେତ୍ ।

କଟକ ରେଳ ଷ୍ଟେସନରେ ବଗି ଗାଡ଼ି ଆସି ପହଞ୍ଚିଗଲା । ସମସ୍ତେ ଓହ୍ଲାଇ ପଡ଼ିଲେ । ସାଆନ୍ତାଣୀଙ୍କ ବିଛଣାପତ୍ର ଧରି ଖ୍ରୀମା ଷ୍ଟେସନ ହତା ଭିତରକୁ ପଶିଲା । ଟିକଟ କିଣିଆଣି ନକୁଳବାବୁ ନିଜେ ଲବଣ୍ୟଦେବୀଙ୍କୁ ଟ୍ରେନରେ ବସାଇ ଦେଲେ । କେତେଖଣ୍ଡ ଶହେ ଟଙ୍କିଆ ନୋଟ ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ—ଯେତେଦିନ ଇଚ୍ଛା ପୁରୀରେ ରହି ଗାଁକୁ ଫେରିଆସ । ଖବର ପାଇଲେ ମୁଁ ବି ଗାଁକୁ ଆସିବି ।

ଭୂମିଷ୍ଠ ଦଣ୍ଡବତ ହୋଇ ଖ୍ରୀମା ବାବୁଙ୍କଠାରୁ ବିଦାୟ ନେଇ ଟ୍ରେନକୁ ଉଠି ବସିପଡ଼ିଲା । ଗାଡ଼ି ଛାଡ଼ି ଦେଲା । ରାୟସାହେବଙ୍କ ଆଡ଼କୁ

ଗୁହିଁଗୁହିଁ ଲବଣ୍ୟଦେବୀ ମନକୁ ମନ ରାଗରେ ଜର୍ଜରିତ ହୋଇ ନିଜକୁ ନିଜେ କହିହେଲେ—ତୁମ କଥାକୁ ମୋରିବ କଥା । ଯେସାକୁ ତେସା ମାଡ ।

ଷ୍ଟେସନ ବାହାରକୁ ଆସି ନକୁଳବାବୁ ବଗିରେ ବସି କଟକ ଘରକୁ ଲେଉଟି ଗଲେ ।

ଟ୍ରେନ ଭିତରେ ବସିବସି ଲବଣ୍ୟଦେବୀ ମନକୁ ମନ କହି ହେଉଥାଆନ୍ତି—ତୁମେ ହିଁ ପ୍ରଥମେ ବିଶ୍ୱାସରେ ବିଷ ଦେଲ ଗପୁସାହେବ । ତା ପରେ ତୁମର ବିଷକୁ ମୁଁ ଗୁଖିଲି । ଗୁଖିଲି ତ ଭଲ କରି ଗୁଖିବି । ମାତାଲ ହୋଇ ଗୁଖିବି ।

ବିଛଣାପତ୍ରଗୁଡ଼ିକ ସଜାଡ଼ି ରଖୁ ରଖୁ ଚଲନ୍ତା ଗାଡ଼ି ଉପରେ ନିଜ ହସଟାକୁ ଗୁପିଧରି ଖୁମା ପଚାରିଲା—କଅଣ ଭାବୁଚନ୍ତି—ସାଆନ୍ତାଣି ?

ଲବଣ୍ୟ ଜବାବ ଦେଲେ—ଭାବୁଚି ତୋଓର ମୁଣ୍ଡ ଆଉ ଗଣ୍ଡି କଥା । ସଞ୍ଜକୁ ତୁ ଦେଉଳକୁ ଯାଇ ଅଭଡ଼ା ଆଣିମହାପ୍ରସାଦ ଦବୁକି, ରାତିକ ଖାଇବି ।

—ଦର୍ଶନକୁ ଯିବେ ନାହିଁ କି ଆଜ୍ଞା ?

—ଆଜ ମନବୋଧିଆ ଶୋଇବି । ତା ପରେ କାଲିକି ଯିବି ।

ସଞ୍ଜ ପୂର୍ବରୁ ଗାଡ଼ିପାଇ ପୁରୀ ରେଲ ଷ୍ଟେସନରେ ପହଞ୍ଚିଲା । ଭଡ଼ା ଗାଡ଼ି ଧେନ ବସା ଦୁଆର ମୁହଁରେ ପହଞ୍ଚିଲା ବେଳକୁ ମୁହଁ ସଞ୍ଜ । ବୁଡ଼ନ୍ତା ସୂର୍ଯ୍ୟର ନାଲିଆ ରଙ୍ଗ ସମୁଦ୍ର ଢେଉ ଉପରେ ଡେଇଁ ଡେଇଁ ଖେଳୁଚି । ଘର ଜଗୁଆଳୀ ଦୌଡ଼ି ଆସି ଫାଟକ ଫିଟେଇ ଦେଲା । ଏ ଘରକୁ ଲବଣ୍ୟଦେବୀ ଆଗରୁ ଅନେକ ଥର ଆସି ଥିଲେ ଏବଂ ଖୁମା ମଧ୍ୟ ବାବୁଙ୍କ ସଙ୍ଗରେ କେତେଥର ଆସି ରହିଯାଇଥିଲା । ଏଥର ବାବୁଆଣୀ ଓ ସେ ସାଙ୍ଗ ହୋଇ ଆସିଚନ୍ତି, ଏତିକ ନୂଆ ।

ଏତକ ନୂଆ, କମ୍ କଥା ନୁହେଁ କି କମ୍ ପରିବର୍ତ୍ତନ ନୁହେଁ । ସମୟର ସ୍ରୋତ ଭିତରେ ଏହିଭଳି ବଡ଼ ବଡ଼ ପରିବର୍ତ୍ତନ ଘଟି ଯାଉଛି । କେହି ଜାଣିପାରୁ କି ନପାରୁ ସମୟ ହିଁ ତାର ମୂକସାକ୍ଷୀ ରୂପେ ବିଦ୍ୟମାନ ରହୁଛି । ଭିତରେ ଖଟ ଉପରେ ବିଛଣାପତ୍ର ସଜାଗଲା । ଅଳୁଅ ଜଳିଲା । ହାତ ଗୋଡ ଧୁଆଧୋଇ ପରେ ସଞ୍ଜ ଗଡ଼ିଲା । ତା ପରେ ସାଆନ୍ତାଣୀଙ୍କ ବରାଦ ନେଇ ଖିମା ଗଲା ବଡ଼ ଦେଉଳକୁ । ମନ୍ଦିର ଭିତରେ ପଶି ଚନ୍ଦନ ଅର୍ଗଳି ଏପଟକୁ ଛିଡ଼ାହୋଇ ହାତଯୋଡ଼ି ଖିମା କାଳିଆକୁ କହିଲା—ତୁମ ମନରେ କେତେବେଳେ କଅଣ ଅଛି ପ୍ରଭୁ ? ଶ୍ରେଷ୍ଠକୁ ବଡ଼ ଆସନ, ପୁଣି ବଡ଼କୁ ଶ୍ରେଷ୍ଠ ଆସନ, ତୁମେ ହିଁ ଦେଉଚ ସିନା ! ସବୁ ବିଧାନ ତୁମେ କରିଉଚ ମହାପ୍ରଭୁ ! ତୁମକୁ କୋଟି କୋଟି ଜୁହାର ।

ରାତିରେ ଦୁହିଁଙ୍କର ଅଭଡ଼ା ମହାପ୍ରସାଦ ସେବା ହେଲା । ଗମ୍ଭୀର ରାତିକି ଖିମାର ସେବା ଉପଭୋଗ କରି ଲାବଣ୍ୟଦେବୀ ନିଦ୍ଭୁଡ଼ି ନିଦରେ ଶୋଇ ପଡ଼ିଲେ । ମନ ଭିତରେ ଛୁଇ ଛୁଇକା ଖେଳ । ଚେସ ଖେଳ ଯିଏ ଖେଳେ, ସେ କଅଣ ତାସ ଖେଳେନା ? ସେ କଅଣ କଉଡ଼ି ଓ ଲୁଡ଼ୁଡ଼ୁ ଖେଳେ ନାହିଁ ? ଖେଳତ ସମସ୍ତେ ଖେଳୁଚନ୍ତି । ସେଥିରେ ପୁଣି ଏଉଟା ସେଉଟା ତ ଅଛି ? ପେଟର ଭୋକ ମାରିବା ପାଇଁ ସମସ୍ତେତ ଏଣୁତେଣୁ ଖାଉଚନ୍ତି । ରସଗୋଲା ମିଳୁଥିଲେ ବି ବାରମଜାର କଅଣ ଦରକାର ପଡ଼ି ନଥାଏ ?

ତହିଁ ଆରଦିନ ସକାଳୁ ଖିମାକୁ ଡାକି ଲାବଣ୍ୟଦେବୀ କହିଲେ —ଆ ଯିବୁ ସମୁଦ୍ରରେ ଗାଧୋଇ ଆସିବୁ ।

ଅନନ୍ତ ଅସୀମ ଅଗାଧ ସମୁଦ୍ର ! ସେଥିରେ ପୁଣି ଖିମାପରି ଛୋଟ ଲୋକ ଗାଧୋଇ ଯିବ ! ତାର ଭୀଷଣ ଭୟ ହେଲା ଏବଂ ସେ ଗୋଟି ପଣେ ଥରିଲା । କହିଲା—ସାଆନ୍ତାଣି, ବୁଡ଼ି ମରିଯିବ ଯେ !

କହିଲା ସିନା, ଡରିଲା ସିନା, କିନ୍ତୁ ଲାବଣ୍ୟଦେବୀ ବାହାରି ପଡ଼ିବା ବେଳକୁ ସେଏବି ପଛେ ପଛେ ବାହାରି ପଡ଼ିଲା । ସାଗର ବେଳା

ଉପରେ କୂଳେ କୂଳେ ପୂର୍ବମୁଖା ଚାଲିଲେ ଦାନ୍ଦେ ଯାକ । ଶହ ଶହ ଯୁବକ ଯୁବତୀ, ଶିଶୁ ବୃଦ୍ଧ ଏପଟ ସେପଟ ଚାଲିଚନ୍ତି । ଢେଉ ପଛକୁ ଢେଉ ଆସି କୂଳରେ ମୁଣ୍ଡପିଟୁଛି ଏବଂ ଉପର ଆଡ଼କୁ ଖେଳେଇ ହୋଇଯାଉଚି । ସାନ ସାନ ବାଳକଙ୍କଡ଼ା ଗୁଡ଼ିକ ଉଗଉଗ ହୋଇ ଏଣେତେଣେ ଧାଇଁଚନ୍ତି । କେହି ଧରିବାକୁ ଚେଷ୍ଟା କଲେ ଓଦାବାଲି ଉପରେ ଦେଖାଯାଉଥିବା ସାନ ସାନ ଗାତ ଭିତରେ ପଶି ଯାଉଚନ୍ତି । ଚାଲିବା ଲୋକଙ୍କ ପାଦଯାକେ ପାଣି ମାଡ଼ି ଆସିଲା ବେଳକୁ ସେମାନେ ଉପର ଆଡ଼କୁ ପଳାଇ ଆସୁଚନ୍ତି । କେହି କେହି ବା ଓଦା ହୋଇଯାଉଚନ୍ତି । କେତୋଟି ପିଲା ବାଲିରେ ପଡ଼ିଥିବା ରଙ୍ଗଢଙ୍ଗର ଚକିତ ଶାମୁକା ଗୋଟେଇ ବୁଲୁଚନ୍ତି । ଏଣେ ତେଣେ କେତେ କେତେ ପୁରୁଷ ନାରୀ ସମୁଦ୍ରରେ ସ୍ନାନ କରିବା ଉଦ୍ଦେଶ୍ୟରେ ଆଣ୍ଠୁଏ, କଟିଏ ପାଣିରେ ଠିଆ ହୋଇ ଉଚ୍ଚା ଉଚ୍ଚା ଢେଉ ଆସିବା ସଙ୍ଗେ ସଙ୍ଗେ ଉପରଆଡ଼କୁ ଭସିଆସି ବାଲି ଉପରେ ଲଟେଇ ପଟେଇ ହେଉଚନ୍ତି । କାହା ଦେହରେ ଓଦାଲୁଗା ଜଡ଼ି ଯାଉଛି ତ ଅଙ୍ଗ ଅବୟବ ତାର ଉଲଗ୍ନ ଦିଶୁଛି । ସେହି ସେହି ମୁକ୍ତାଙ୍ଗୀମାନଙ୍କ ଉପରେ ସମସ୍ତଙ୍କର ଲୋଲୁପ ଦୃଷ୍ଟି ।

ସୁନ୍ଦର ତୃପ୍ତିରେ ଅବସାଦ ନାହିଁ ।
ଯେତେ ଦେଖିଥିଲେ ନୂଆ ଦିଶୁଥାଇ ।

କୌଣସି କୌଣସି ରୂପସୀର ମନ ଭିତରେ ଏହିଭଳି ସ୍ନାତ-ବସନା ମୁକ୍ତାଙ୍ଗୀ ବେଶରେ ମୁକ୍ତ ସାଗର ବେଳାରେ ଉନ୍ମୁକ୍ତ ଉଲଗ୍ନ ଭାବେ ଲଟର ପଟର ହେବାର ଲାଳସା ମଧ୍ୟ ଜାଗ୍ରତ ହୋଇ ଉଠିଛି । ଉନ୍ମୁକ୍ତ ପ୍ରକୃତି ରାଣୀର ମୁକ୍ତକୋଡ଼-ପେଟିକା ମଧ୍ୟରେ ନିଜ ନିଜର ମୁକ୍ତ ଯୌବନକୁ ଖେଳାଇଦେବାକୁ ସେମାନଙ୍କର ବିଳାଶ-ବାସନା । ସେହିଥିରେ ହିଁ ତାଙ୍କର ଆନନ୍ଦ ଓ ତୃପ୍ତି । ତାଙ୍କ ଆଡ଼କୁ ଯେ ଶହଶହ ଚକ୍ଷୁ ଚାହିଁ ରହିଛି, ସେକଥା ପ୍ରତି ସେମାନଙ୍କର ଖିଆଲ ନାହିଁ ଯେ ! କେହି କେହି ଯୁବକ ଯୁବତୀ ଓ ପୁରୁଷ ନାରୀ ସଙ୍ଗରେ ଜଣେ ଦିଜଣ ନୋଳିଆ ଧରି ପେଟେ, ଗୁଡିଏ ପାଣି ଭିତରକୁ ପଶିପାଇଛନ୍ତି । ଢେଉ ଆସିବା ସଙ୍ଗରେ ଉଠୁଚନ୍ତି ଓ ବୁଡ଼ୁଚନ୍ତି । ବୁଡୁଚନ୍ତି ଓ ଗଡୁଚନ୍ତି ।

ବାଲିରେ ଲଣ୍ଠର ପଣ୍ଠର ହୋଇ ପୁଣି ଥରେ ପାଣିରେ ବୁଡ଼ୁଚନ୍ତି । ହାତଧରି ଟାଣୁଛି ନୋଳିଆ ।

ବସାଠାରୁ ଅନେକ ଦୂରଯାଏ ଚାଲି ଚାଲି ଆସି ବେଳା ଉପରେ ଠାଏ ବସି ପଡ଼ିଲେ ଲାବଣ୍ୟଦେବୀ । ଭୀମାକୁ ଡାକି କହିଲେ—ଯା ପାଣିରେ ପଶ । ସାହସ କରି ବସି ଯାଆ । ଢେଉ ତଳେ ବୁଡ଼ିଯାଆ ।

ନୋଳିଆ ଜଣକୁ ଡାକି ସେ ବରାଦ ଦେଲେ—ନେଏରେ ପିଲା, ଭୀମାକୁ ଧରି ଗାଧୋଇ ଦେଇ ଆଣ । ପଇସା ଦେବି ।

ଦୁନିଆର ସୁଖ ସମୁଦ୍ରରେ ଡୁବକି ଦେବାକୁ ହେଲେ ସାହସ ଦରକାର । ହିମ୍ମତ ଚଳିଡ଼ା ।

ହିମ୍ମତ ବଡ଼ାଚିଜ୍ ।

ମୂଲ୍ୟବାନ ମୁକ୍ତା ଆହରଣକାରୀମାନେ ସମୁଦ୍ରର ପାଣି ଭିତରେ ବୁଡ଼ୁଚନ୍ତି ଓ ଉଠୁଚନ୍ତି । ନୋଳିଆମାନେ ନିତି ପ୍ରତି ପୋଡ଼ିକାଠ କେଇଖଣ୍ଡ ଉପରେ ବସି ଆହୁଲା ମାରି ପଡ଼ି ଉଠି ଢେଉଗୁଡ଼ିକ ଭିତରକୁ ଧସି ଯାଉଚନ୍ତି । ଲହଡ଼ା ଉପରେ ଲହଡ଼ା, ତାଙ୍କୁ ପେଲି ପେଲି ଫେରେଇ ଆଣି ଫୋପାଡ଼ି ଦେଇ ଯାଉଛି ବାଲି ଉପରେ । ତେବେବି ସେମାନେ ଭିତରକୁ ପଶିଯାଉଚନ୍ତି । ଫେରିଲାବେଳକୁ ପୋଡ଼ିକାଠ କେଇ ଖଣ୍ଡ ହାତରେ ଧରିଥିବା ମାଛର ବୋଝକୁ ଜାଲରେ ପୁରାଇ ବାନ୍ଧି ଆଣୁଚନ୍ତି । ମଣିଷର ଜୀବନଟା ହେଲା ସଂଗ୍ରାମ । ବଞ୍ଚିବାକୁ ହେଲେ ଏ ସଂସାରରେ ପ୍ରାଣୀମାନେ ପ୍ରତ୍ୟେକଙ୍କୁ ପ୍ରତି ମୁହୂର୍ତ୍ତରେ ସଂଗ୍ରାମ କରିବାକୁ ପଡ଼ୁଛି ଓ ପଡ଼ିବ । ସାହସୀ ହୋଇ ଭିତରକୁ ପଶିପାରିଲେ ସବୁ ମିଳିବ ।

ଲାବଣ୍ୟଦେବୀ ବସି ବସି ସବୁ ଆଡ଼କୁ ଚାହିଁ ସବୁ କଥା ଭାବି ଭାବି ଭାବନା ମଧ୍ୟରେ ବିଭୋର ହୋଇ ପଡ଼ୁଚନ୍ତି । ଅଦୂରରେ ଭୀମାର ହାତ ଧରି ପାଣି ଭିତରକୁ ଘୋସାରି ଘୋସାରି ନେଇ ଯାଉଛି

ନୋଳିଆ ଜଣକ । ଭୀମାକୁ ସେ ସମୁଦ୍ରରେ ଗାଧୋଇ ଆଣିବାକୁ ଚାହେଁ—ପଇସା ପାଇବା ଆଶାରେ । ମାତ୍ର ଲାବଣ୍ୟଦେବୀ ଭୀମାକୁ ଆନନ୍ଦ ଦେବାକୁ ଚାହାଁନ୍ତି—ନିଜର ଆନନ୍ଦ ପାଇଁ । ଏ କେଇଦିନ ହେଲା ପୂର୍ବ ଭୀମାକୁ ସେ ଭିନ୍ନ ଦୃଷ୍ଟିରେ ଦେଖିଲେଣି । ଭୀମାର ସୁଖରେ ତାଙ୍କର ସୁଖ । ସେ ତାହାର ଗାଧୋଇବା ଦୃଶ୍ୟକୁ ମନ ଆନନ୍ଦରେ ଅନାଇ ରହିଚନ୍ତି ।

ହଠାତ୍ କିଏ ଜଣେ ତାଙ୍କ ପଛଆଡ଼ୁ ସାମନା ଆଡ଼କୁ ବୁଲି-ଆସି ହସି ହସି ପଚାରିଦେଲେ—କିଏ ମ ତମେ ? ଭାଉଜ ? ଏକା ଆସିଚ ନା ଆଉ କିଏ ସଙ୍ଗରେ ଆସିଚନ୍ତି ?

ମୁହଁ ବୁଲାଇ ତାଙ୍କ ଆଡକୁ ଚାହିଁ ହସି ଉଠିଲେ ଲାବଣ୍ୟ-ଦେବୀ । ଲେଖାଯୋଖାରେ ସେ ହେଲେ ଲାବଣ୍ୟଙ୍କ ନଣନ୍ଦେଇ । ଶଶିଭୂଷଣବାବୁ । ଜଣେ ବଡ ଓକିଲ । ବୟସ ପ୍ରାୟ ଚାଳିଶ ପଇଁ-ଚାଳିଶ ହେବ । ହୃଷ୍ଟ ପୁଷ୍ଟ ବଳିଷ୍ଠ ବପୁ । ସୁନ୍ଦର ମାର୍ଜିତ ଚେହେରା ।

ସୁବେଶ ପୁରୁଷଙ୍କୁ ଦେଖିଲେ ନାରୀମାନଙ୍କ ମନରେ ଆନନ୍ଦ ଓ ଆଗ୍ରହ ଜାତ ହେବା ସ୍ୱାଭାବିକ କଥା । ଲାବଣ୍ୟଦେବୀଙ୍କର ସେ ନଣନ୍ଦେଇ ଏବଂ ଇଏ ତାଙ୍କର ଶଳାଭାଉଜ । ଶଶିଭୂଷଣ ମିଶ୍ର ନମସ୍କାର କଲେ ।

ଉଠି ଠିଆହୋଇ ଲାବଣ୍ୟ ପଚାରି ଦେଲେ—ଏକା ଆସିଚ, ନା ଆଉ କିଏ ସଙ୍ଗରେ ?

ପ୍ରଶ୍ନର ଉତ୍ତର ଦେଇ ନ ପାରି ଶଶିବାବୁ ପଚାରିଲେ—ନିଜ ଘରେ ଅଛଟିକି ଭାଉଜ ?

ଲାବଣ୍ୟ—ନିଜ ଘରେ ଅଛୁ ।

—କେତେ ଦିନ ପାଇଁ ଆସିଚ ?

—ରହିବ କିଛିଦିନ । ତୁମେ କୁଆଡ଼େ ବା ଅପୂର୍ବ ?

ଶଶିବାବୁ—ଜଣେ ମହୋକଲ ପାଇଁ ପୁରୀ ଆସିଛି । ଏଠା କୋର୍ଟରେ ମକଦ୍ଦମା ।

ଲାବଣ୍ୟ—ଅଛ କୋଉଠି ?

ଶଶି—ତମର ଘର ପାଖରେ । ଜଣକ ଘରେ ।

ଲାବଣ୍ୟ—ଆସିବ ନିଶ୍ଚେ ଆମଆଡ଼େ ।

ଶଶି—ନିଶ୍ଚୟ ଆସିବି । ତୁମେ ଏକାକୁ ଆମେ ଏକା । ଶୁଣିନାହଁ ପରା ? ତୁମେ ତ ରହିଗଲ ଗାଆଁରେ । କଅଁକ ଖବର କାହୁଁ ଶୁଣିବ ? ତୁମ ହାଲଚାଲ ସବୁ ମୁଁ ଶୁଣିଛି । ନକୁଳବାବୁ ତ ସୁବର୍ଣ୍ଣଙ୍କୁ ନେଇ ମାତିଲେ । ତୁମ ଦୁଃଖ କଥା ଭାବିଲେ ମୋ ମନ ଭିତରଟା କଅଣ ହୋଇଯାଉଛି ଭାଉଜ ! ତୁମ ନଣନ୍ଦଟି ମରି ଯାଇଚନ୍ତି ।

ଲାବଣ୍ୟ—ଆହା, କଅଣ କହୁଚ ? ସତରେ ନା ଗେଲରେ ?

ଶଶି—ସତ କହୁଛି । ଛୁଆଟିଏ ପେଟରେ ରହିଲା । ଅ.ଠମାସ ପରେ ମଲା ଛୁଆଟିଏ ଜନ୍ମ ହେଲା । ତାର ଠିକ ପରେ ପରେ ମାଆବି ହାସପାତାଲରେ ଚାଲିଗଲା ।

ଲାବଣ୍ୟ—ଆଉ ପିଲା କେଇଟିଙ୍କୁ କିଏ ସମ୍ଭାଳୁଛି ?

ଶଶିବାବୁ—ଚାକରାଣୀଟିଏ ଅଛି ସେ—ବୁଢ଼ୀଟାଏ ।

'ଘାସକୁ ବଡ଼, ପାଳକୁ ଶ୍ରେଷ୍ଠ ।' ସବୁ ଦିଗରୁ ମୁଁ ହଇରାଣ ହେଉଛି । ତୁମ କଥା ସବୁ ଶୁଣିଛି ଭାଉଜ । ଅନେକ ଦିନୁ ଭାବୁଥିଲି କେମିତି ଥରେ ଦେଖା ହୁଅନ୍ତା କି !

ଏ ମନ ଭାବୁଥାଇ ଯାହା
କାଳେ ପ୍ରାପତ ହୁଏ ତାହା ।

ଭଗବାନଙ୍କ ବରଦ—ଆଜି ଏଇ ବାଲିବେଲା ଉପରେ ତୁମର ମୋର ସାକ୍ଷାତ ହେବାର ଥିଲା । ତାହା ବି ଘଟିଗଲା । ସଙ୍ଗରେ କିଏ ଆସିଛି ?

ଲାବଣ୍ୟ—ଚାକର ଜଣେ ।

ଶଶିବାବୁ—ବୈଦେହୀଶବିଳାସରୁ ପଦେ ଗାଇଲେ—

ବୋଲେ ସୁଗ୍ରୀବ ସ୍ତମେ ଶ୍ଳେଷଭାଷା
ବେନ ଜନେ ପଡ଼ିଚ ସମଦଶା ।

ଶଶିବାବୁଙ୍କ କଥାବାର୍ତ୍ତା ମଧ୍ୟରେ ଅପ୍ରକାଶିତ ଭାବେ ଗୋଟାଏ ଇଙ୍ଗିତ ପ୍ରକଟି ଉଠୁଥାଏ । ସେ କହିଲେ—ଆଜ କୋର୍ଟ କାମ ସରିଲେ ତୁମ ଘରକୁ ଆସିବ ।

ଲାବଣ୍ୟ—ଆସିବ । ଅପେକ୍ଷା କରିଥିବ ନା ଦେଉଳକୁ ଯିବ ?

ଶଶି—ନିଶ୍ଚେ ଆସିବ । ଦେଉଳକୁ ଯିବା ତ ସାଙ୍ଗହୋଇ ଯିବା । ଜାଣିନ ବୋଧହୁଏ ! ଗାଡ଼ି ଖଣ୍ଡେ କିଣିଛୁ । ଦିନେ କୋଣାର୍କ ଯିବା, ତୁମେ ଯିବତ ? ମୋ ସାଙ୍ଗରେ ? ମୁଁ ଖୁସିହେବ । କହିବ ତ ଏଇଠି ଛାଡ଼ିଦେଇ କଟକ ଯିବ । ନାହିଁ ରାଜିହେବତ—କଟକ ନେଇଯିବ ।

ମାଦକ ମିଶା ଆନନ୍ଦରେ ଲାବଣ୍ୟର ଛାତି ଦୁଲୁକି ଉଠୁଥାଏ । କଟକ ଫେରିଯିବା କଥାରେ ସେ କହିଲେ—ହୁଏତ ତୁମ ସଙ୍ଗରେ କୋଣାର୍କ ଯିବ । କଟକ ଘରକୁ ମୋର ଯିବାର ଉପାୟ ନାହିଁ । ତୁମ ସଙ୍ଗରେ କୋଣାର୍କ ଯିବାକଥା ଶୁଣିଲେ ବାବୁ ବିରକ୍ତ ହୋଇ ପାରନ୍ତି । ତାଙ୍କୁ କିଛି କହିବ ନାହିଁ ।

ଏଇ କେଇ ପଦ କହିଲା ବେଳକୁ ଲାବଣ୍ୟଙ୍କ ମୁହଁଟି ଶୁଖିଗଲା ।

ଦୀର୍ଘ-ନିଃଶ୍ୱାସ ଟାଣି ଶଶିବାବୁ କହିଲେ—ହଉ ହେଲା କୋଣାର୍କରୁ ଫେରାଇ ଆଣି ଏଇଠି ତୁମକୁ ଛାଡ଼ି ଏକା ଏକା କଟକ ଯିବ । ହୁଏତ ପନ୍ଦର କୋଡ଼ିଏ ଦିନ ପରେ ଆଉଥରେ ତାରିଖ ପଡ଼ିବ ଏବଂ ମୁଁ ଆସିବ ।

ଅଳ୍ପହସି ଲାବଣ୍ୟଦେବୀ ମୁହଁ ବଙ୍କାଇ କହିଲେ—ଆମର ବସାରେ ରହିବ । ମୁଁ ଉଁ ବି ତ ଏତେ ଚଞ୍ଚଳ ଫେରୁନାହିଁ ।

ଶଶିବାବୁ ଜାଣିଲେ—ପ୍ରୋକଲମିନ ବନଶିକଣ୍ଠା ଧରିଛୁ ।

ଲାବଣ୍ୟ ଜାଣିଲେ ବନ୍ଧୁ ନିକଟରେ ନିଜ ମନର ଦୁର୍ବଳତା ଧରାପଡ଼ି ଯାଇଛି ।

ରାସ୍ତା ଉପରକୁ ଅଙ୍ଗୁଳି ଦେଖାଇ ଶଶିବାବୁ କହିଲେ—ଆସ ଯିବା । ଗାଡ଼ି ଛିଡ଼ା ହୋଇଛି । ତୁମ ବସା ପାଖରେ ତ ମୋ ବସା ।

କଳାରଙ୍ଗର ମଟରକାରଟିଏ ରାସ୍ତା ଉପରେ ଛିଡ଼ା ହୋଇଛି । ଗାଧୁଆସାର ଅଦୂରରେ ଛିଡ଼ା ହୋଇ ଥିଲା ଖ୍ୟାମା । ହୁକୁମକୁ ଅପେକ୍ଷା କରିଥିଲା । ତାକୁ ଉଦ୍ଦେଶ୍ୟ କରି ଲାବଣ୍ୟ କହିଲେ—ପଛରେ ଆସିବୁଟିରେ ଖ୍ୟାମା । ମୁଁ ଗାଡ଼ିରେ ଯାଉଚି ।

ଗାଡ଼ି ପାଖରେ ପହଞ୍ଚିଲାରୁ ଶଶିବାବୁ ପଛସିଟ୍‌ର କବାଟ ଖୋଲି ଦେଇ କହିଲେ—ବସ ଭାଉଜ ।

ଭିତରକୁ ଉଠିଯାଇ ଲାବଣ୍ୟଦେବୀ ବସିପଡ଼ିଲେ । ତାଙ୍କ ପଛରେ ଶଶିବାବୁ ଭିତରକୁ ପଶି କବାଟ କିଳିଦେଲେ ଏବଂ ଲାବଣ୍ୟଦେବୀଙ୍କ ପାଖକୁ ଲାଗି ବସିପଡ଼ିଲେ । ଆଗସିଟକୁ ଉଠି ଡ୍ରାଇଭର ଗାଡ଼ି ଷ୍ଟାର୍ଟ କଲା । ଗାଡ଼ି ଚାଲିଗଲା ।

ଓଦା ସରସର ହୋଇ ରାସ୍ତା ଉପରକୁ ଉଠି ଆସୁ ଆସୁ ଖ୍ୟାମା ମନକୁ ମନ କହିହେବାକୁ ଲାଗିଲା—ଏସବୁ ହେଲା ବଡ଼ଲୋକୀ କାରବାର । ଯେତେ ଆପଣାର କଲେ ବି ଏମାନଙ୍କୁ ବିଶ୍ୱାସ ନାହିଁ । ବାବୁମାନେ ସିଗାରେଟ ଖଣ୍ଡିକରେ ନିଆଁ ଲଗାଇ ଧୂଆଁ ଟାଣି ନେଲାପରି ଏମାନେ ଇଆ ତା ସାଙ୍ଗରେ ସଉକ କରି ମିଶିବେ । ଦଣ୍ଡକେ ଛାଡ଼ଛୁଡ଼ି ଦେଇ ଆଉଜଣେ କାହାକୁ ପାଇଗଲେ ତା ସାଙ୍ଗରେ ଉଡ଼ିଯିବେ । ଭସା ବାଦଲ ପରି କାହିଁ ଭାସି ଆସି କେତେବେଳେ କାହା ସାଙ୍ଗରେ ମିଶି ପୁଣି କେତେବେଳେ ଭିନେ ହୋଇ ଛାଡ଼ି ଛୁଡ଼ି ଦେଇ କୁଆଡ଼କୁ ଭାସି ଚାଲି ଯାଉଚନ୍ତି, ତାର ଠିକ୍ ଠିକଣା ନାହିଁ । ମନ ହେଲା ତ ବାବୁଭୟା ପାନ ଖଣ୍ଡେ ପାଟିରେ ପୂରାଇ ଚୋବାଇ ପକାଇବେ । ପୁଣି

କେତେବେଳେ କେମିତି ମନ ବଦଳି ଗଲାତ 'ଥୁଡ୍' କିନା ସେ ଖଣ୍ଡିକୁ ଘାଟିରୁ କାଢ଼ି ଫିଙ୍ଗିଦେଇ ଚାଲିଯିବେ । ଅମା ଚାଲୁ ଚାଲୁ ପୁଣି ଆସିଲା —ଜହ୍ନର ମନ ହୋଇଛି ତ ପନ୍ଦର ଦିନ ଲାଗିଲାଗି ଆଲୁଅ ଦେଉଛି— ସେଇଟି ହେଲା ଶୁକ୍ଳପକ୍ଷ । କୃଷ୍ଣପକ୍ଷ ଅନ୍ଧାର । ପନ୍ଦର ଦିନ ସେ ମନକଲା ଅନ୍ଧାର କରି ଦେବାକୁ । ଦେଲା । ତା ଉପରେ କଅଣ କିଏ ରଜା ଅଛି ! ସେ ହେଲା ସରଗର ଦେବତା । ଯେତିକି ଦିନ ତାର ଖୁସି ସେତିକି ଦିନ ସଞ୍ଜପହର ସେ ଆଲୁଅ ଦେଲା । ସବୁଦିନେ ନ ପାଇଲେ ସୁଦ୍ଧା ଦୁନିଆ ଲୋକଙ୍କ ପାଇଁ ସେତିକି ଆଲୁଅ ତ କମ୍ କଥା ନୁହେଁ ! ମନ ହେଉଛି ତ ସରଗର ଚାନ୍ଦ ଦିନେ ଦିନେ ମୋ ହାତରେ ଧରା ଦେଉଛି । ମୁଇଁ ତ ତହିଁକି ଭାର୍ଜନ ନୁହେଁ ! ଚାତକ ଭାଗ୍ୟକୁ ଯେତୋଟି ପାଣି ଟୋପା ମିଳିଗଲା ସେତିକି ତ ତା ପକ୍ଷରେ କମ ଭାଗ୍ୟର କଥା ନୁହେଁ !



ଫାଟକକୁ ଲଗି ଜଗୁଆଳର ବସାଘର । ସେ ସେଇଠି ରହେ । ଭିତରକୁ ଖଞ୍ଜାଘର ଓ ଅଗଣା । ଆଗକୁ ତିନି ବଖରା ଘର ଏବଂ ପଛକୁ ତିନି ବଖରା ଘର । ବାବୁ ଘରର ଲୋକେ ଆସିଲେ ପଛ ଘରେ ରହନ୍ତି । ସେଇ ଘରେ ଖଟପଲଙ୍କ ଓ ବହଳା ଶେଜ ପଡ଼ିଛି । ମଝି ବଖରାଟିରେ ବାବୁଆଣୀ ଲାବଣ୍ୟଦେବୀ ଶୁଅନ୍ତି । ଖୁମା ରହେ ଦାଣ୍ଡଆଡ଼ ମେଲ ଘରେ । ଗୃହର ସେବାଏତ ଲୋକ, ହୁକୁମ ହେଲେ ଭିତରକୁ ଆସେ—ବୋଲହାକ ଓ ସେବା କରିବା ପାଇଁ । ସେଦିନ ଶଶିବାବୁ ସଞ୍ଜକୁ ଆସି ଖିଆପିଆଯାକେ, ଲାବଣ୍ୟଦେବୀଙ୍କ ଘରେ ବସି ଗପସପ ହେଲେ ଏବଂ ରାତିରେ ଖିଆପିଆ ସାରି ହସି ହସି ଲାବଣ୍ୟଦେବୀଙ୍କୁ ପଚାରିଲେ—ମୁଁ କଅଣ ମୋ ବସାକୁ ଯିବି ?

ହସି ହସି ଲାବଣ୍ୟ ପଚାରିଲେ—କାହିଁକି ?

ମୃଦୁ ହସି ଶଶିବାବୁ ଧୀର ସ୍ୱରରେ ପଚାରିଲେ—କାହିଁକି ? ମୁଁ କଣ ଶୋଇବି ନାହିଁ ?

ତଳକୁ ମୁହଁ ବୁଲାଇ ଲାବଣ୍ୟ କହିଲେ—ଏଡ଼େ ବଡ଼ ଘରଟାରେ କଅଣ ତୁମ ପାଇଁ ଟିକିଏ ଥାନ ହବ ନାହିଁ ? ତୁମେ କଅଣ ଏଡ଼େବଡ଼ ଲୋକଟାଏ ?

ତଳମୁହାଁ ହସି ପକାଇଲେ ଶଶିବାବୁ । ପଚାରିଲେ ମୋପାଇଁ ତେବେ ବିଛଣା ହୋଇଛି କେଉଁ ଘରେ ? ଦିନଯାକ ପରିଶ୍ରମ କରି କ୍ଲାନ୍ତ ହୋଇ ପଡ଼ିଛି । ଟିକେ ଲମ୍ବି ହୁଏଁ ।

ଆସ—ବୋଲି କହି ଚଟକିନା ତାଙ୍କ ହାତଟିକୁ ଧରି ପକାଇ ଲାବଣ୍ୟଦେବୀ ନିଜ ଶୋଇଲା ଖଟପାଖକୁ ନେଇ କହିଲେ—ଇଆରି ଉପରେ ଶୋଇପଡ଼ ।

ହାସ୍ୟ-ବିସ୍ମିତ ନୟନରେ ଶଶିବାବୁ ପଚାରିଲେ—ଆଉ ତୁମେ ?

ମୃଦୁ ହସି ଘର ଭିତରୁ ବାହାରି ଯାଉ ଯାଉ ଲାବଣ୍ୟଦେବୀ ଶୁଣାଇଦେଲେ—ଏଡ଼େବଡ଼ ଘରଟା ଭିତରେ କୋଉଠି ଟିକେ ସଉପ ଖଣ୍ଡେ ପାରିଦେଇ ମୁଁ କଅଣ ତଳେ ଶୋଇପଡ଼ି ପାରିବି ନାହିଁ ଯେ ଏତେ ଭାବୁଚ ? ତୁମେ ଶୋଇପଡ଼ ।

ଶଶିବାବୁ ସନ୍ଦିଗ୍ଧ ମନରେ ଖଟ ଉପରକୁ ଉଠିଯାଇ ବିଛଣା ଉପରେ ଲମ୍ବ ହୋଇଗଲେ । ଛାତରୁ ଝୁଲୁଥାଏ ଝାଲର ଲଣ୍ଠନଟାଏ ଏବଂ ତା'ର ଭିତରେ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ ନଡ଼ିଆତେଲରେ ଭରା ଗିଲାସ ଭିତରେ କନାର ମୋଟା ବତିଟାଏ ।

ଶଶିବାବୁଙ୍କ ଜୀବନରେ ଇଏ ଗୋଟାଏ ନୂଆ ଅନୁଭୂତି । ଆଖିକି ତାଙ୍କର ନିଦ ଆସୁଛି ପୁଣି ଆସୁନାହିଁ । ଗୁଉଁ ଗୁଉଁଆ ନିଦ ଆସୁଛି ଏବଂ ଭାଙ୍ଗିଯାଉଛି । ଚାରିଆଡ଼ ଶୂନଶାନ ହୋଇ ଗଲାଣି । ଧୀରେ ଧୀରେ କିଏ ଜଣେ ଘର ଭିତରକୁ ପଶି ଭିତରପଟୁ କିଳିକି ଲଗାଇ ଦେଲା । ତା'ପରେ ଧୀରେ ଧୀରେ ଖଟ ଉପରକୁ ଉଠିଆସି ଶଶିବାବୁଙ୍କୁ ଲାଗି ଶୋଇ ପଡ଼ିଲା ।

ଘର ଭିତରେ ଅସ୍ପଷ୍ଟ ଆଲୁଅ ଓ ଅସ୍ପଷ୍ଟ ଅନ୍ଧାର । କିଏ ଆସି ଶୋଇଲା ସେକଥା ଠିକ୍ ଜାଣିଛନ୍ତି ଶଶିବାବୁ । ତଥାପି ଚମକି ପଡ଼ିବାର ଛଳନା କରି ପଚାରିଦେଲେ—କିଏ ?

କାନପାଖକୁ ତାଙ୍କର ମୁହଁ ନେଇ ତୁନି ତୁନି ପଚାରିଦେଲେ ଆଗନ୍ତୁକା—ଚିହ୍ନି ପାରୁନା ?

ଦୁଇ ହାତକୁ ବେଢ଼ାଇ ଆଣି ତାଙ୍କୁ ନିଜ ଛାତି ଉପରକୁ ଭିଡ଼ି-ନେଲେ ଶଶିବାବୁ । ପଚାରିଲେ—ତୁମେ ?

× × ×

ଦାଣ୍ଡଘରେ ପଡ଼ିପଡ଼ି ଶଯ୍ୟାରେ ଛଟପଟ ହେଉଛି ଶ୍ୟାମା । ଆଖିକି ତାର ନିଦଆସୁନାହିଁ । ତା ଆହାରରେ ପାହାର ବସିଛି । ମନଟା ତାର କାମୁଡ଼ି ଝାମୁଡ଼ି ହେଉଛି । କିନ୍ତୁ ଉପାୟ ନାହିଁ ଯେ ।

ରାତିଅଧା ସବୁଆଡ଼ ଶୂନଶାନ ହେଲାରୁ ଧୀର ଧୀରେ ପାଦ ବଢ଼ାଇ ଅନ୍ଧାର ଭିତରେ ସେ ଆସି ନିଃଶବ୍ଦରେ ଠିଆହେଲା—ସେଇ ଶୋଇଲା ଘରର ଭିତରଆଡ଼ୁ ବନ୍ଦ ହୋଇଥିବା ଝରକାର ବାହାର ପାଖରେ । କବାଟରେ ଥିବା ଗ୍ରେଟ କଣାଟି ବାଟେ ଖଟ ଉପରଟା ତାକୁ ଦେଖାଯାଉଛି । ଦେଖିଲା ଶଶିବାବୁଙ୍କୁ ଲାଗି ଲବଣ୍ୟଦେବୀ ଲଙ୍ଗଳା ମୁକୁଳା ହୋଇ ଶୋଇ ପଡ଼ିଚନ୍ତି ।

ଛାତିଫଟା ଦୀର୍ଘ ନିଃଶ୍ୱାସକୁ ବହୁକଷ୍ଟରେ ଚୁପିଧରି ଶ୍ୟାମା ଦାଣ୍ଡ ଘରକୁ ଲେଉଟି ଆସି ତଳେ ପରାଯାଇଥିବା ଓଛଣା ଖଣ୍ଡିକ ଉପରେ ଶୋଇ ପଡ଼ିଲା । ମନକୁ ମନ କହିଲା—ଏମାନଙ୍କୁ ବିଶ୍ୱାସ ନାହିଁ ।

ଏ ଜାତିଯା ମାଇପେ ମୁହୂର୍ତ୍ତିକେ ତୁମ ତଣ୍ଟିରେ ଛୁରି ଚଳାଇ ଦେବେ । ଏମାନଙ୍କୁ ବିଶ୍ୱାସ କରିବା ଏକଦମ୍ ଭୁଲ ।

\+ \+ \+

ସକାଳ ହେଲା । ସକାଳୁଆ ନିତ୍ୟକର୍ମ ସରିଲା ପରେ ଗାଧୁଆ ପାଧୁଆ ଓ ଖିଆପିଆ । ସେ ସବୁବି ସରିଲା । ଲବଣ୍ୟଦେବୀ ଆସିଲାଦିନୁ ଶ୍ୟାମାକୁ ବରାଦ କରିଚନ୍ତି ରାନ୍ଧିବାକୁ । ମାତ୍ର ଜଗୁଆଳି ଠିକା ପୂଜାରିକି ଡାକି ଆଣିଛି । ସେଇ ଆସି ଠିକ୍ ସମୟରେ ରନ୍ଧାବଢ଼ା କରି ଦେଉଛି ।

ଖିଆପିଆ ପରେ ଶଶିବାବୁ ଡାକିଲେ—ଆସ ଭଉଜ, ଗାଡ଼ିରେ ବସ । ଶ୍ୟାମା ଯିବା ଦରକାର ନାହିଁ । ଡ୍ରାଇଭର ଅଛି । ମୋପାଇଁ ସେ ଦରକାର ପଡ଼ିଲେ ରନ୍ଧାବଢ଼ା କରେ । ଆମେତ ପୁଣି ଡାକ ବଙ୍ଗଳାରେ ରହିବା । ନିଶ୍ଚୟ ବବର୍ଚି ଥିବ ।

ଗାଡ଼ି ଛୁଟିଲା ଏବଂ କେତେ ଘଣ୍ଟାପରେ କୋଣାର୍କରେ ଆସି ପହଞ୍ଚିଲା । ଶଶିବାବୁଙ୍କୁ ଓ ଲବଣ୍ୟଦେବୀଙ୍କୁ ଘେନି ଗାଡ଼ିଯାଇ ଡାକ-

ବଙ୍ଗଳା ହତା ଭିତରେ ପଶିଲୁ । ଚଉକିଦାର ଆସି ଘର ଖୋଲିଦେଇ ସଲାମ ବଜାଇଲା । ସେଠି ଜିନସପତ୍ର ଥୋଇ ଦୁ'ଜଣଯାକ ବାହାରି ଗଲେ କୋଣାର୍କ ମନ୍ଦିରପାଖେ । ପ୍ରଧାନ ମନ୍ଦିର ଅଧାରୁ ଭାଙ୍ଗି ଯାଇଛି । ମୋଖଶାଳାଟିର ଭିତରଟା ବାଲିରେ ପୋତା ହୋଇଛି । ବିଶ୍ୱବିଖ୍ୟାତ କୋଣାର୍କର ଗୁରୁ କାରିଗରି ଓ ଅଦ୍ୱିତୀୟ ଶିଳ୍ପ ମାଧୁରି ଅତୁଳନୀୟ । ଏକ ସମୟରେ ଏହି ଉତ୍କଳରେ ବାରଶହ ଶ୍ରେଷ୍ଠ ଶିଳ୍ପୀ ଜନ୍ମିଥିଲେ ଏବଂ ଏ ମନ୍ଦିରକୁ ବାରବର୍ଷ ଲାଗି ତୋଳି ଥିଲେ ।

ଆଜି ଦିଲ୍ଲୀ କି କେହି ବୁଲିବାକୁ ଗଲେ, ଦେଖି ଆସେ କୁତବ ମିନାର । ସେଠାରେ ଥିବା କେତେଗୁଡ଼ିଏ ହିନ୍ଦୁ ମନ୍ଦିର ଓ କେତୋଟି ଜୈନମନ୍ଦିରକୁ ଭାଙ୍ଗି କୁତୁବୁଦ୍ଦିନ ଏ ମିନାରଟିକୁ ଚଢ଼ାଥିଲେ । ସେ କାଳର ସେହି ମନ୍ଦିରର ଭଗ୍ନାବଶେଷ ଯାହା କିଛି ଦେଖାଯାଏ, ସେଥି ମଧ୍ୟରେ ସେକାଳର ଉତ୍କଳୀୟ ଶିଳ୍ପକଳା ଓ ଭାସ୍କରର ନିଦର୍ଶନ ଏବେବି ଦେଖାଯାଏ । ସେଗୁଡ଼ିକୁ ତୋଳିବା ଲାଗି ବୋଧହୁଏ ଏଠୁ ଓଡ଼ିଆ ଶିଳ୍ପୀମାନେ ଯାଇ ଥିଲେ ।

କୋଣାର୍କ ମନ୍ଦିରର ସୂକ୍ଷ୍ମରୁ ଖୋଦିତ ମୂର୍ତ୍ତିଗୁଡ଼ିକୁ ଲାବଣ୍ୟ ଦେଖିକୁ ଦେଖାଉ ଦେଖାଉ ଶଶିବାବୁ କହିଲେ—ଚାଲ ଭାଉଜ, ବନାରସକୁ । ଦେଖିବ ଶିବମନ୍ଦିର ବୋଲି କିଛିନାହିଁ । କେବେ ଗଙ୍ଗା-କୂଳରେ ଭାରତ ବିଖ୍ୟାତ ବିଶ୍ୱନାଥଙ୍କର ବଡ଼ ମନ୍ଦିରଟିଏ ଥିଲା । ତାକୁ କେବେ କେଉଁ ମୋଗଲ ବା ମୁସଲମାନମାନେ ଭାଙ୍ଗିଦେଇ ମସଜିଦ୍‌ଟିଏ ତୋଳିଛନ୍ତି । ପଛ ପଟକୁ ଗଲେ ମସଜିଦ୍‌ର ତଳ ଅଂଶଟି ଏବେ ବି ଦେଖିବାକୁ ମିଳେ । ତହିଁରେ ପ୍ରସ୍ତର ଖୋଦିତ ଅନେକ ମୂର୍ତ୍ତି ଓ ସୂକ୍ଷ୍ମରୁ ଖୋଦେଇ ଶିଳ୍ପ ଦେଖିବାକୁ ପାଇବ । ସେଗୁଡ଼ିକ ବି ଓଡ଼ିଆ କାରିଗରଙ୍କ ନିହାଣଖୋଳା ମୂର୍ତ୍ତି ବୋଲି ମନେ ହୁଏ ।

ସଞ୍ଜବେଳକୁ ଡାକବଙ୍ଗଳାକୁ ଲେଉଟି ଆସି ଦୁହେଁଯାକ ଚଉଡ଼ା ବରଣ୍ଡା ଉପରେ ଆରାମ ଚଉକି ଦିଖଣ୍ଡ ପକାଇ ବସିଲେ । ଧୀରେ ଧୀରେ ଅନ୍ଧକାର ମାଡ଼ି ଆସିଲା । ଆକାଶରେ ଜହ୍ନ ଉଠେ

ଚତୁର୍ଦ୍ଦିଗ ସ୍ୱପ୍ନମୟ କରିଦେଲା । କୋଣାର୍କ ମନ୍ଦିରଟି କଳା ରୂପ ଧରି ଆକାଶ ଆଡ଼କୁ ମୁଣ୍ଡଟେକି ଛିଡ଼ା ହେଲା । ବସିଥିବା ଚଉକ ଖଣ୍ଡିକୁ ଶଶିବାବୁଙ୍କର ଅତି ନିକଟକୁ ଟାଣି ଆଣି ଲାବଣ୍ୟମୟୀ ପଚାରିଦେଲେ— କହିଲ ଶଶିବାବୁ, ପ୍ରେମିକ କିଏ ଏବଂ ପ୍ରେମିକା କିଏ ।

ମୁହଁଟିକୁ ପାଖକୁ ଆଣି ଶଶିବାବୁ ଉତ୍ତର ଦେଲେ —ମୁଁ ଏବଂ ତୁମେ ।

ଲାବଣ୍ୟ—କେଉଁ ପ୍ରେମ ବଡ଼ । ନିଜଲୋକ ପାଖରେ ନା ପର ଲୋକ ପାଖରେ !

ଶଶିବାବୁ ହସି ଉଠି ଉତ୍ତର ଦେଲେ—ସ୍ୱକୀୟ ପ୍ରେମକୁ କେହି ପଚାରେ ନାହିଁ ହେ ! ପରକୀୟା ପ୍ରେମଟା ହେଲା ମଧୁରତର । ଗୋପଲୀଳାର ଭାବ ସବୁଠାରୁ ବଡ଼ । ସେଇଥିରେହିଁ ଆତ୍ମତ୍ୟାଗ ଓ ଦୁଃଖ ଯାତନାର ନିଦର୍ଶନ ଦେଖାଯାଇଥାଏ । ନିନ୍ଦାଗିଲାର ହାଟ ଭିତରେ ଅପବାଦର ନାଗରା ବାଜି ଉଠେ । ତେବେ ବି ପ୍ରଣୟିନୀ ଘରେ ଓ ବାହାରେ ବାରି ନିର୍ଯ୍ୟାତନା ସହି ସହି ପଥର ହୋଇ ପଡ଼ିଥାଏ ଏବଂ ପ୍ରଣୟୀ ପାଖରେ ନିଜ ଜୀବନକୁ ପୁରାପୁରି ଉତ୍ସର୍ଗ କରି ଦେଇଥାଏ । ସେଇହେଲା ଶ୍ରେଷ୍ଠ ଓ ମଧୁର ! ନଗ୍ନ ବିଭତ୍ସ ହେଲେ ବି ତା'ର କଥା କବିମାନେ ଗାଇଯାଇଛନ୍ତି ।

ତୁମେ ଶଶିବାବୁ, ତାଜମହଲ ଦେଖିଛ ? ଯାହାକୁ କି ଜଣେ ସମ୍ରାଟ ନିଜର ପ୍ରଣୟିନୀ ମମତାଜ ବେଗମ ପାଇଁ ଗଢ଼ି ଦେଇ ଯାଇଛନ୍ତି ।

ଶଶିବାବୁ—ଓ, ଆଗ୍ରାର ତାଜମହଲ କଥା ପଚାରୁଛ ? ଯମୁନା ନଈକୂଳରେ ମମତାଜଙ୍କ ସମାଧି ମନ୍ଦିର ? ସାହାଜାହାନ ପ୍ରଣୟିନୀର ସ୍ମୃତି ମନ୍ଦିରଟିକୁ ତୋଳିଦେଇ ଯାଇଛନ୍ତି—ବିଶ୍ୱବାସୀଙ୍କୁ ନିଜର ଅନ୍ତର-ବେଦନା ଜଣାଇ ଦେବାଲାଗି । ପୃଥିବୀ-ପ୍ରସିଦ୍ଧ ଏଇ ତାଜମହଲରେ କୋଣାର୍କ ପରି ସୂକ୍ଷ୍ମ ଚିତ୍ରକଳା ନାହିଁ । ମାର୍ବଲ

ପ୍ରସ୍ତରରେ ଅତୁଳନୀୟ ସୁବର୍ଣ୍ଣ ସୌନ୍ଦର୍ଯ୍ୟମୟ ଗଠନ ମଧ୍ୟରେ ଅଛି ଶିଳ୍ପର ଅଙ୍ଗ ବିନ୍ୟାସ, ପୁଷ୍ପ ଲତା ପତ୍ରମୟ ଭାରତ ପ୍ରସିଦ୍ଧ ଚିତ୍ରକଳା ଖୋଦେଇ ଉପରେ ମଣିମୁକ୍ତାର ବସାଣ-ଶିଳ୍ପ । ମଣିମୁକ୍ତା ଆଜ ନାହିଁ ସତ, ମାତ୍ର ତାଜମହଲର ସମକକ୍ଷ ଦ୍ୱିତୀୟ ସ୍ମୃତି ମନ୍ଦିର ଭାରତରେ ନାହିଁ କି ପୃଥିବୀର ଅନ୍ୟ କୌଣସି ଦେଶରେ ନାହିଁ । ଶେଷ ଜୀବନରେ ସାହାଜାହାନଙ୍କୁ ତାଙ୍କ ପିଲାଏ ଆଗ୍ରା ଦୁର୍ଗରେ ବନ୍ଦୀ କରି ରଖିଲେ । ତଥାପି ସେ ସେହିଠାରେ ବନ୍ଦୀ ଭାବେ ପଡ଼ିରହି ସୁଦ୍ଧା ଦୁର୍ଗ ପ୍ରାଚୀରରେ ଖଚିତ ହୋଇଥିବା ମୂଲ୍ୟବାନ ପ୍ରସ୍ତର-ଦର୍ପଣ ଉପରେ ତାଜମହଲର ପ୍ରତିବିମ୍ବ ଦେଖି ନମାଜ ପ୍ରାର୍ଥନା କରୁଥିଲେ ।

ଲାବଣ୍ୟମୟୀ—ତୁମେ ଶଶିବାବୁ ମୋ ପାଇଁ ସ୍ମୃତି-ମନ୍ଦିରଟିଏ ତୋଳିବ କେଉଁଠି ?

ଶଶିବାବୁ—ମନ ଭିତରେ । ମୁଁ କ'ଣ ଭାଉଜ, ତୁମକୁ କେବେ ଜୀବ ଥିବାଯାକେ ଭୁଲିଯାଇ ପାରିବ ?

ଲାବଣ୍ୟ—ଆଖି ଉପରେ ମୋଓର ମୋଓର,
ପଛକୁ ଗଲେ ତୁ କିଏରେ ?

ଶଶିବାବୁ ଲାବଣ୍ୟଦେବୀଙ୍କୁ ନିଜ କୋଳ ଉପରକୁ ଟେକି ନେଇ କହିଲେ—ଦେଖିବ ଭାଉଜ, ତୁମକୁ ମୁଁ ଜୀବନରେ ଛାଡ଼ି ପାରିବି ନାହିଁ । ମୃତ୍ୟୁ ପରେ ତୁମର ସ୍ମୃତି ହିଁ ମୋର ପାଥେୟ ହେବ ।

× + ×

ତହିଁ ଆରଦିନ ସକାଳେ ଦିହେଁ ଯାକ ପୁରୀକୁ ଫେରି ଆସିଲେ । ତା ପରେ ଶଶିବାବୁ କଟକ ଫେରିଗଲେ । ପନ୍ଦର କୋଡ଼ିଏ ଦିନ ପରେ ସେହି ମକଦ୍ଦମାର ତାରିଖ ପଡ଼ିଲା । ଶଶିବାବୁ ପୁଣି ଆସିଲେ । ଏଙ୍କର ଘରେ ରହିଲେ । ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା କ୍ରମେ କ୍ରମେ ବଢ଼ିଲା । ଆତ୍ମୀୟତା ବଢ଼ି ଚାଲିଲା ।

ଗୁଡ଼ିଟାର ସୂତା କଟି ଯାଇଛି । ଲାବଣ୍ୟଦେବୀ ଏକୁଟିଆ ହୋଇ ଏଣେତେଣେ ବୁଲୁଛନ୍ତି । ଛିଡ଼ା ଗୁଡ଼ିଟା ପବନରେ ଆକାଶଟା-ଯାକ ଏଣେତେଣେ ଉଡ଼ି ବୁଲୁଛି । ଯେତେବେଳେ ଯେଉଁ ଗଛରେ ସେ ଲାଗିଲା, ତେତେବେଳେ ସେଇଠି ସେ ଆଶ୍ରା ନେଲା । ପବନ ମାଡ଼ରେ ସେଠୁ ଯଦି ସେ ଖସି ପଡ଼ିଲା, ତେବେ ହୁଏତ ଆଉ କେଉଁଠି ଲାଗିଯିବ ।

ଲାବଣ୍ୟଦେବୀ ଠିକ ଭାବେ ଜାଣିଥାନ୍ତି ଯେ— ଖୋରଆ ଆସିଗଲେ ମୁଣ୍ଡ ବୋଝିଆଙ୍କୁ କେହି ପଚାରନ୍ତି ନାହିଁ । ପାନ ଖାଇବା ଅଭ୍ୟାସ ଯାହାର ଅଛି, ଘରେ ନ ଥିଲେ ସେ ବଜାରରୁ ଖଣ୍ଡେ ପାନ କିଣି ପକାଇ ଖାଇଥାଏ । ସେଠି ନ ମିଳିଲେ ଇଆଠୁ ତାଆଠୁ ଖଣ୍ଡେ ଦି ଖଣ୍ଡ ମାଗିଖାଏ । ନିତାନ୍ତ ଅଭାବ ପଡ଼ିଲେ ଚୂନପଣ ଟିପେ ହେଲେ କଳରେ ଯାକ ପ୍ରକୃତି-ମେକ୍ଷଣ କରେ । ମଣିଷର ପ୍ରକୃତି ଓ ପ୍ରବୃତ୍ତି ଥରେ କେବେ ହୁଗୁଳା ହୋଇଗଲେ ତେଣିକି ସେ ଉଦା ଖାଇ ବୁଲେ, ଏବଂ ତାକୁ ଆଉ ସମ୍ଭାଳି ହୁଏ ନାହିଁ ।

ବୁଡ଼ିଯିବା ଗୋଡ଼ ତଳକୁ ତଳକୁ ।

ମଣିରେ ମନ, ବଣରେ ବାଘ ସଙ୍ଗେ ସର । ଥରୁଟିଏ ସେ ମଣିଷ ମାଉଁସ ଚାଖିଲେ ମରିବାଯାକେ ଆଉ ସେ ଲାଳସା ଛାଡ଼ିପାରେ ନାହିଁ ।

ଏହି ଅବସରରେ ଲାବଣ୍ୟଦେବୀ ପୂରାପୂରି ଚାରିମାସ କାଳ ଜଗନ୍ନାଥ-ଦର୍ଶନ ନାମରେ ପୁରୀଠାରେ ରହିଗଲେ । ଶଶିବାବୁ ବାରମ୍ବାର ଆସି ତାଙ୍କର ପାଖରେ ଅତିଥି ହୁଅନ୍ତି । ସେ ନଥିଲା ବେଳେ ପାନଖିଆ ଅଭ୍ୟାସର ବଶବର୍ତ୍ତିନୀ ଲାବଣ୍ୟଦେବୀ ଖିମାକୁ ଡାକି ହୁକୁମ ଦିଅନ୍ତି—ଚୂନପଣ ମିଳରେ, ଖିମା ! ଆଜ ପାନ ନାହିଁ ।

ଲାବଣ୍ୟଦେବୀ ପ୍ରାୟ ନିତି ପ୍ରତି ସଞ୍ଜକୁ ଜଗନ୍ନାଥ ମନ୍ଦିରକୁ ଯାଆନ୍ତି । ଶଶିବାବୁ ଥିଲେ ସେ ଯାଆନ୍ତି ସଙ୍ଗରେ, ନୋହିଲେ ଖିମା ।

ଆମିଷକୁ ହାତରେ ଧରି ନିରାମିଷକୁ ଚିନ୍ତା କରିବାକୁ ଲାବଣ୍ୟଦେବୀ ମନ୍ଦିର ବୁଲିଯାଆନ୍ତି । ଦିନେ ଜଣେ ଶୁଖୁଆ ବକାଳୀ

ସ୍ତ୍ରୀଲୋକ ଜଣେ ଭଦ୍ର ଲୋକଙ୍କ ଫୁଲ ବଗିଚାରେ ଅଟକିଗଲା । ରାତି ହେଲା । ସେ ସେହିଠାରେ ରହିଲା । ଫୁଲ-ଗନ୍ଧରେ ତାକୁ ନିଦ ନ ହେଲାରୁ ସେ ତାର ଶୁଖୁଆ ଟୋକେଇଟାକୁ ନାକ ଉପରେ ଘୋଡ଼େଇ ପକାଇ ଶୋଇଲା ଯେ ତାକୁ ନିଦ ହୋଇଗଲା । ପ୍ରାଣୀ ମାତ୍ରେ ସମସ୍ତଙ୍କର ଏଇ ହେଲା ପ୍ରବୃତ୍ତି । ଯାହାର ଯାହା ଅଭ୍ୟାସ ଓ 'ଯାହାକୁ ଯିଏ ରସେ ।' ସମସ୍ତେ ପ୍ରାୟ ଜାଣନ୍ତି ଯେ ନିବୃତ୍ତିରେ ହିଁ ସୁଫଳ ମିଳିଥାଏ । କିନ୍ତୁ ସେତିକ ତ ଆଦୌ ସହଜ-ଲଭ୍ୟ ନୁହେଁ !

ପୁରୁଷୋତ୍ତମରେ ବଡ଼ଦାଣ୍ଡ ଉପରେ ଏହିଭଳି ଭାବରେ ବହୁ ବ୍ୟକ୍ତି ଭିତରେ ଭିତରେ ଅସାଧୁ ତାର ପରୁ ପଙ୍କ ପୂରେଇ ଉପରକୁ ସାଧୁଙ୍କ ଭେକ ଧରି ଗୃହଆଡ଼େ ଘୁରି ବୁଲୁଚନ୍ତି ।

ଦିବୋପବାସୀ ଚ ନିଶାମିଷାସୀ
ଜଟାଧରଃ ସନ୍ କୁଳଟାଭିଳାଷୀ
ଅସୌ କଷାୟାମ୍ବର ଗୃହୀତଦଣ୍ଡଂ
ଶଠାଗ୍ରଣୀ ସଂପ୍ରତି ବିଶ୍ୱଖଣ୍ଡଂ ।

ଦିନରେ ଲୋକ-ଦେଖାଣିଆ ଉପାସ କରୁଚି । ରାତିକି ଆମିଷ ଚଳେଇଚି । ମୁଣ୍ଡରେ ଜଟାଜୁଟ ଥିଲେ ସୁଦ୍ଧା କୁଳଟା ନାରୀଙ୍କି ଖୋଜି ବୁଲୁଚି । ଦେହରେ ଗେରୁଆ ବସନ ପିନ୍ଧିଚି ଏବଂ ହାତରେ ଦଣ୍ଡ କମଣ୍ଡଳୁ ଧରିଚି । ଏହିଭଳି କେତେ ଶଠ ବିଶ୍ୱ-ବ୍ରହ୍ମାଣ୍ଡଯାକ ଘୁରି ବୁଲୁଚନ୍ତି ।

ପୁରୀରେ ମାତା ଯେତିକ, ମଠ ସେତିକ, ମାଙ୍କଡ଼ ବି ସେତିକ । ସେମାନଙ୍କ ଦାଉରେ ସାଧାରଣ ଲୋକେ ଏକ ପ୍ରକାର ଧ୍ୱସ୍ତ-ବିସ୍ତ ହୋଇ ଚଳୁଚନ୍ତି ।



ଶଶିବାବୁଙ୍କ ମଟରରେ କାରରେ ବସି ଲାବଣ୍ୟଦେବୀ ସଞ୍ଜ ପରେ ଏଣେତେଣେ ବୁଲିଯାଆନ୍ତି । ସବୁଦିନେ ପ୍ରାୟ ସମୁଦ୍ର କୂଳରେ କିଛି ସମୟ ନିରୋଳାରେ ବସି କଥାବାର୍ତ୍ତା ହୁଅନ୍ତି । ସେ ଦୁହେଁ ଏକା ତ ନୁହନ୍ତି ! ଏହିଭଳି କେତେ କେତେ ଆଡ଼ ପୁରୁଷ ନାରୀ ନିଜ ନିଜର ହୁଅନ୍ତି ବା ଅନ୍ୟ ଅନ୍ୟ ଆଡ଼ୁ ହୁଅନ୍ତି ମନ ଭାବ ପ୍ରିରେ ଆସି ବେଳା ଉପରେ ବସି ସମୁଦ୍ରୀ ପବନ ଖାଇ ମନକୁ ଆନନ୍ଦ ଦୋଳାରେ ଝୁଲାଇ ଭୁଲନ୍ତି । କିନ୍ତୁ ଗୋଟିଏ ଯୋଡ଼ି ଅନ୍ୟ ଯୋଡ଼ି କିଏ ଏବଂ କେଉଁଠୁ ଆସିଛନ୍ତି ସେ ଖବର ରଖନ୍ତି ନାହିଁ ।

ଦିନେ ଲାବଣ୍ୟଦେବୀ ଓ ଶଶିବାବୁ ଭଗ୍ନ ଗୃହିଣୀ ତଳେ ଅଣ୍ଡା ବାଲି ଉପରେ ବହୁତ ରାତିଯାଏ ବସି କଥାବାର୍ତ୍ତା ହେଲେ । ଆସନ୍ତା କାଲିକି ସେମାନେ ପୁରୀରୁ ଲେଉଟି ଯିବେ । ଶଶିବାବୁ ପଚାରିଲେ— ତୁମେ କେବେ ପୁଣି ଏଠିକି ଫେରି ଆସିବ ଭାଉଜ ?

ଲାବଣ୍ୟଦେବୀ କିଛି ଗୋଟାଏ ଉତ୍ତର ଦେଇ ନ ପାରି କେବଳ 'ତୁନି ହୋଇ ରହିଗଲେ ।

ଶଶିବାବୁ ପଚାରିଲେ – ତେବେ କଅଣ କହୁଛ, ତୁମ ଗାଁକୁ ମୁଁ ଯିବି ? ନା ତୁମେ ମୋ ବସାକୁ କଟକ ଆସିବ ?

ଲାବଣ୍ୟଦେବୀ ଉଭୟ ପ୍ରଶ୍ନ ପାଇଁ ଗୋଟିଏ ମାତ୍ର ଉତ୍ତର ଦେଲେ—କୌଣସି କଥାର ସୁବିଧା ହେବ ନାହିଁ । ମୁଁ ବର୍ତ୍ତମାନ ବଡ଼ ଅସୁବିଧାରେ ପଡ଼ିଗଲିଣି । ଗାଁକୁ ଫେରିଗଲା ପରେ ବାପୁସାହେବଙ୍କୁ ଡାକେଇବି ।

ଶଶିବାବୁ ବିସ୍ମିତ ହୋଇ ଉଠିଲେ । କହିଲେ—କଅଣ କହୁନାହିଁ ! ଅସୁବିଧାଟା କଅଣ ମୁଁ କଅଣ ଜାଣିଲେ କ୍ଷତି ହେବ ? ତୁମର ମୋର ଆଉ କୋଉ କଥା ବାକି ରହିପାଇଛି ?

ଲବଣ୍ୟ—କିଛି ନାହିଁ ଯେ, ତୁମେ କଅଣ କିଛି ଠଉରାଇ ନେଇ ପାରି ନାହଁ ? କାହିଁକି ଅରୁଚି । କାହିଁକି ବାନ୍ତି ଉଛାଳ । ମୁଁ ଅନ୍ତଃସତ୍ତ୍ୱା ହୋଇ ପଡ଼ିଲିଣି ବୋଲି ତୁମେ କଅଣ ଆଜଯାକେ ବୁଝି-ପାରିନାହିଁ ?

ଶଶିବାବୁ—ଶଙ୍କିତ ହୋଇ ପଡ଼ି କହିଲେ—ତେବେ ତୁମେ କଅଣ ଭାବୁଚ ? କଅଣ କରିବ ସ୍ଥିର କରିଚ ?

ଲବଣ୍ୟ—ଗାଁକୁ ଯାଇ ତାଙ୍କୁ ଡକାଇ ଆଣିବି । ତୁମେ ଟିକେ ତୁନିତାନି କିଛିଦିନ କଟକରେ ଏକୁଟିଆ ହୋଇ ରହିଯାଅ । ତାପରେ ସୁବିଧା ଦେଖି ଖେମାକୁ ପଠାଇ ତୁମକୁ ଡକାଇ ନେବି । ନଚେତ ତୁମକୁ ଖବର ଦେଇ ଏଠିକି ଚାଲିଆସିବି ଯେ, ତୁମେ ଆସିଯିବ ।

ଘଡ଼ିଏ ଗୁମ ଖାଇ ରହି ଶଶିବାବୁ ଧୀର ସ୍ୱରରେ କହିଲେ 'ହଉ ତାହା ହିଁ କର' ।

ଲବଣ୍ୟ କହିଲେ—ବୁଡ଼ି ବୁଡ଼ି ପାଣି ପିଇଲେ ବରୁଣ ବି ଟେର ପାଇବ ନାହିଁ ।

ଦୁହିଁଙ୍କ ଭିତରେ ଯାଉଁଲ ହସଟାଏ ଉଠିଲା । ତାହାପରେ ଦୁହେଁ ଯାକ ବସାକୁ ଫେରିଗଲେ । ରାତି ପାହି ଭୋର ହେଲା । ଶଶିବାବୁ ନିଜ ଗାଡ଼ିରେ କଟକ ଲେଉଟିଗଲେ । ଲବଣ୍ୟ ଦିନକ ପାଇଁ ପୁରିରେ ରହିଗଲେ ।

ସଞ୍ଜକୁ ଖେମା ଓ ସେ ଦେଉଳକୁ ଯାଇ ଦିଅଙ୍କ ଆଳତି ଦେଖି ଫେରିଲେ । ଖିଆପିଆ ସାରି ଶୋଇଲେ । ଉଭୟଙ୍କ ପେଟ ଭିତରେ ଠାକୁରଙ୍କ ଅଭଡ଼ା । ରାତି ଗଡ଼ି ଚାଲିଲା । ଶୟନ କକ୍ଷ ଭିତରେ ନିରୋଳା

ଖଟ ଉପରେ ଲବଣ୍ୟଦେବୀଙ୍କ ପାଦ ମୋଡ଼ି ଦେଉ ଦେଉ ଧୀର ସ୍ୱରରେ ଖିମା ପଚାରିଲି—କଅଣ ହଉଚ ସାଆନ୍ତାଣୀ, ଦିହ କଅଣ ଖରାପ ହୋଇ ଗଲା ନା କଅଣ ? ବାନ୍ତି ଉଛାଳ ଉପସର୍ଗ ଦେଖା ଦେଉଚ କାହିଁକି ? ଡାକ୍ତର ଡାକ ଆଣିବି ?

ଲବଣ୍ୟଦେବୀ ଧୀର ସ୍ୱରରେ ଉତ୍ତର ଦେଲେ—ତୁନିହ । ବାହା ହୋଇନାହୁଁ ବୋଲି କଅଣ ବରଯାତ୍ରୀରେ ଯାଇନାହୁଁ ? ଛୁଆ ପିଲା ପେଟରେ ରହିଗଲେ ମାଇପୀ ଲୋକଙ୍କର କଅଣ ହୁଏ ? ଜାଣି ନାହୁଁ ?

ଖିମା ବାହା ହୋଇନାହିଁ କି ସଂସାର କଥା ଜାଣି ନାହିଁ । କହିଲା—ଆପଣଙ୍କ ପେଟରେ ଛୁଆ ରହିଗଲା ସାଆନ୍ତାଣୀ ? କାହାଆଡ଼ୁ କଅଣ କେମିତି ହୋଇଗଲା ମ ?

ଲବଣ୍ୟ—ଖିମାକୁ ଅନ୍ଧାରିଆ ଖୁନ୍ଦାଟାଏ ପକାଇ କହିଲେ—ତୁ ଟୋକା ସବୁ କଥା ଜାଣିଛୁ । ଖାଲି ଛଳି ହୋଇ ଏମିତି କଥାଟା କହୁଛୁ । ତୁଇ ପରା ମତେ ହୁସିଆର କରି ଦେଇଥିଲୁ ? ବାବୁଙ୍କୁ ଡାକଆଣି ମୋ ପାଖରେ ଛାଡ଼ି ଦେଇଥିଲୁ ? ମନେ ନାହିଁ କରେ ?

ଅନ୍ଧାର ଭିତରେ ଖିମା ହସୁଛି ଏବଂ ଅନ୍ଧାରିଆ ବାବୁଆଣିଙ୍କ ଦିହ ମୁଣ୍ଡରେ ହାତ ବୁଲାଇ ମୋଡ଼ି ଆଉଁସି ଦେଇ ଚାଲିଚି । ସାଆନ୍ତାଣୀଙ୍କ କାନ ପାଖକୁ ନିଜ ମୁହଁଟାକୁ ନେଇ ଧୀରେ ପଚାରିଲା—କାହା ଆଡ଼ୁ ? ସତ କୁହ ସାଆନ୍ତାଣୀ । ବାବୁ, ନା, ଶଶିବାବୁ ?

ସାଆନ୍ତାଣୀ ତା କାନକୁ ମୋଡ଼ିଦେଇ ମୁହଁ ପାଖକୁ ଟାଣିଆଣି ଉତ୍ତର ଦେଲେ—ତୋଓରି ଆଡ଼ୁରେ ଟୋକା ! ସତ କହୁଚ ତୋଅରି ଆଡ଼ୁ ।

ଖିମା—ହେଲେ ବାବୁ ତ ଆସି କେତେ ଦିନ ପୁରୁଣା ଘରେ ଥିଲେ ।

ଲବଣ୍ୟ—ସେତିକି ରକ୍ଷା । ନୋହିଲେ ମୋ କଥା ସରିଥିଲା ବୋଲି ଜାଣ ।

ପରଦିନ ଚାକର ଓ ଖାମିଦାଣୀ, ଗାଁକୁ ଫେରିଗଲେ । ଦି ଚାରି ଦିନ ପରେ ଖିମା ଗଲା କଟକକୁ । ଏଣୁତେଣୁ କହି ବାବୁଙ୍କୁ ଦି ଚାରିଦିନ ପାଇଁ ଡାକି ଆଣିବାକୁ । ସାଆନ୍ତାଣୀ ମଧ୍ୟ ଚିଠି ଖଣ୍ଡେ ଦେଲେ—

ପ୍ରାଣେଶ୍ୱର,

ପୁରୀରେ କଚ୍ଛୁଦିନ ରହିଲ । ଆଶା କରିଥିଲି ତୁମେ ଯିବ ବୋଲି । ନିତ ପ୍ରତି ଠାକୁରଙ୍କୁ ଡାକେ, ଏବଂ ପ୍ରାଣର ବିନତି ଜଣାଇ କହେ—ପ୍ରଭୁ ହେ ତାଙ୍କ ମନ ବଦଳାଇ ଦିଅ । ମୋ ଧନ ମୋ ପାଖକୁ ଆସୁ । ନିଜର ସାନ ଭଉଣୀଟି ଶତ୍ରୁ ହୋଇ ଛିଡ଼ା ହୋଇ ଗଲା ତ, ତୁମ ଛଡ଼ା ଆଉ କାହା ପାଖରେ ଜଣା କରିବି ? ତୁମେ ତାଙ୍କ ମନ ପରିବର୍ତ୍ତନ କରି ଦିଅ । ନୋହିଲେ ମୁଁ ଆତ୍ମହତ୍ୟା କରିଦେବି ।

ପତ୍ର ପାଇ ଆସିବ । ନିଶ୍ଚୟ କଚ୍ଛୁଦିନ ପାଇଁ ଆସିବ । ମୋ ରାଣ, ମୋ ରାଣ, ମୋ ମୁଣ୍ଡ ଖାଅଛି । ଆସିବ । ମୋ ମନ ଭଲ ନାହିଁ ବୋଲି ଜାଣିବ ।

ତୁମେ ଯାହାକୁ ଇଚ୍ଛା ତାକୁ ନେଇ ମଉଜ କର ପଛକେ ମୋର ସର୍ବସ୍ୱ ଦେବତା ବୋଲି ନିଶ୍ଚୟ ଜାଣିରଖ । ତୁମର ପାଦ ସେବା କରିବା ମୋର ଏକମାତ୍ର କାମ । ଯିଏ ଯାହା କରୁ; ଯିଏ ଯାହା କହୁ । ମୁଁ ହେଲି ଅର୍ଦ୍ଧାଙ୍ଗିନୀ, ଧର୍ମ ପତ୍ନୀ, ଚରଣ ସେବିକା ଦାସୀ । ମୋ କଥା ଭାଙ୍ଗିବ ନାହିଁ । ନିଶ୍ଚୟ ବସିଲା ସ୍ଥାନରୁ ଉଠି ଆସିବ ।

ଇତି
ଶ୍ରୀଚରଣ ଦାସୀ
ତୁମର ଲବଣ୍ୟ

ଖିମାକୁ ତୁନି ତୁନି କହିଲେ—ଖିମା, ଏ ଚିଠିଟା ନେ, ନିରୋଳା ଥାନ ଦେଖି ବାବୁଙ୍କ ହାତରେ ଦେବୁ । କାନ୍ଦି କାନ୍ଦି କହିବୁ—ଆପଣ ଆସନ୍ତୁ । ମୁଁ ଆସିଛି ଆପଣଙ୍କୁ ନେଇ ଯିବାକୁ ।

ଖିମା ମୁରୁକି ମୁରୁକି ହସୁଥାଏ । ଲବଣ୍ୟଦେବୀ ତା ଗାଲରେ ରୂପ ଚୁଡ଼ାଟାମାନ କସିଦେଇ କହିଲେ—ନେଇ ଯା ବୋଲି କହୁଛି । ହସୁଚୁ କିଆଁ ? ଗୋଟେଇ ହୋଇ ଖିମା କହିଲା—ମୁଁ ଥରେ ଏ ଚିଠିଟା ପଢ଼ିବି ସାଆନ୍ତାଣୀ ?

ଖ୍ରିମା କହୁଛି ପଢ଼ିଛୁ ।

ସାଆନ୍ତାଣୀ ମୃଦୁହସି କହିଲେ—ପଢ଼ିବୁ ତ ପଢ଼, ନବଗ୍ରିଲାରେ ଭୁନ ଭୁନ ପଢ । ଫେର ସେମିତି ଲଫାପାରେ ପୂରେଇ ଦେଇ ଅଠା ବନ୍ଦ କରିଦେ ।

ଖ୍ରିମା ଧୀରେ କହିଲା—କେତେ କେତେ କଥାକୁ ତ ମୁଇଁ, ଖ୍ରିମା ଲଫାପାରେ ପୂରେଇ ମୁଦ ବସେଇ ଦେଇଛି । କେଉଁ କଥା ଆପଣ ଜାଣନ୍ତି ନାହିଁ ନା ମୁଁ ନ ଜାଣେ ।

+ + +

ଖ୍ରିମା କଟକ ଗଲା । ନବଗ୍ରିଲାରେ ବାବୁଙ୍କୁ ଦେଖି ତାଙ୍କ ହାତକୁ ମୁଦା ଚିଠିଟା ବଢ଼ାଇଦେଲା । ବାବୁ ପଢ଼ିସାରି ପଚାରିଲେ— କେମିତି ଅଛନ୍ତିରେ ସାଆନ୍ତାଣୀ ?

ଖ୍ରିମା ସକେଇ ଉଠି ଉତ୍ତର ଦେଲା—ଆଜ୍ଞା କାହିଁକି ପଚାରୁଛନ୍ତି ପ୍ରଭୁ ? ସଦାବେଳେ ତ ଆପଣଙ୍କ ଚିନ୍ତା । ଶୟନେ, ସପନେ, ଜାଗରଣେ ନିଃଶ୍ୱାସଟାଣି ମୁଣ୍ଡରେ ହାତଦେଇ ଏକା ଏକା ବସୁଛନ୍ତି । ବେନି ନୟନରୁ ଗଙ୍ଗା ଯମୁନା ଧାର ଛୁଟୁଛି । ହଜୁର ଆଜି ବାହାରନ୍ତୁ । ଚିନ୍ତାରେ ଝୁରି ଝୁରି କଣ୍ଟା ହୋଇ ଗଲେଣି । କିଛି କାହାର କଥା ନଶୁଣି ହଜୁର ଆଜି ବାହାରି ପଡ଼ନ୍ତୁ । ଗାଡ଼ିତ ଅଛି କେତେବେଳ ଲାଗିବ ?

ଘାର୍ଘ କାଳ ଚିନ୍ତାଜର, ଘାର୍ଘ ନିଃଶ୍ୱାସଟିଏ ଟାଣି ରାୟସାହେବ କହିଲେ—ହଉ ଚାଲ । କଚୁଆନକୁ କହିଆ, ଗାଡ଼ି ସଜକରୁ । ଆଜି ଚାରିଟା ବେଳକୁ ଅନୁକୂଳ କରିବା ।

ହାତଯୋଡ଼ି ବାବୁଙ୍କ ମୁହଁକୁ ଛଳ ଛଳ ଆଖିରେ ଚାହିଁ ରହି ଖ୍ରିମା କହି ଉଠିଲା—ଦୟାର ଅବତାର । ନୋହିଲେ କି ଇଂରେଜ ସରକାର ରାୟସାହେବରୁ ରାୟ ବାହାଦୂରକୁ ପ୍ରମସନ ଦେଇ ଥାଆନ୍ତେ ! ହଜୁର ଗରିବଙ୍କ ମାଆବାପ ଆଜ୍ଞା ।

ହସିଦେଇ ବାବୁ ଉଠିଗଲେ । ଖେମା ତାଙ୍କର ଗତି ଆଡ଼କୁ ଅନାଇ ରହିଲ, ଏବଂ ସେ ଅଦୃଶ୍ୟ ହୋଇ ଗଲାପରେ ମନକୁ ମନ ଭୁନ ଭୁନ କହିଲ—ହିଆଲିପ ବୋକା ! ନିଜେତ ଇଆ ପାଖରେ ତାପାଖରେ ଧନଗୁଡ କଟାଉଛୁ, ଇଆ ମାଇପ ବିଚାରି ସଞ୍ଜ ସୀତା ହୋଇ ରହିଥିବେ । ବୋଇଲା—ଯେସାକୁ ତେସା ।

ଧଇଁଆ ସେ ପଜାପତି
ବଅକୁ କଇଁଆ ଘଡା ଘଡ ।

ଏ ଘରର ଦାସୀ ଚାକରଙ୍କର ସଂସାର ଭିନ୍ନେ । ସବୁ ଦେଖିବେ ସବୁ ଶୁଣିବେ, ସବୁ କରିବେ, ହେଲେ, ନିଜ ନିଜର ମୁହଁ ଆଉ କାନରେ ହାତଦେଇ ବନ୍ଦ କରିଦେବେ । ବଡ଼ବଡ଼ିଆ ଘରେ ଥାଇ ଚଳ ପ୍ରଚଳ ହୋଇ ସେମାନେ କେତେ କେତେ କଥା ଦେଖୁଛନ୍ତି, ଶୁଣୁଛନ୍ତି ଓ ଅଙ୍ଗରେ ନିଭଉଛନ୍ତି । କିନ୍ତୁ କାହାରି କି କିଛି ପଦେ କହି ଦେଉ ନାହାନ୍ତି । ସେମାନଙ୍କ ତାଲିମ ଅନ୍ୟମାନଙ୍କଠୁ ପୁରାପୁରି ଭିନ୍ନେ ପ୍ରକାରର । ଲୁଚିଛପି ନିଜେ କର୍ତ୍ତା କର୍ମ ଓ କରଣ ହୋଇ ଯାଉଛନ୍ତି, ମାତ୍ର ବାହାରକୁ ପୁରା ଦମରେ ବିଶ୍ୱାସୀ ଚାକର ମାତ୍ର ।



ମେଇଦିନ ରାତ୍ର ପହରକ ପରେ ରାୟସାହେବ ଖ୍ରିମାକୁ ଘେନି ଗାଁରେ ପହଞ୍ଚିଗଲେ । ବାଟରେ ଦଣ୍ଡେ କେଉଁଠାରେ ଗାଡ଼ି ଅଟକାଇ ସେ ତାକୁ ପଚାରିଲେ—କଅଣ କରିବା ଖ୍ରିମା ? ତୁଇତ ଏ କୂଳ ସେ କୂଳ ଦୁଇ କୂଳକୁ ଦେଖିଛୁ । ମୁଁ ଭାବୁଚି ଏଥର ଗାଁ କୋଠାଘରେ ରହିବା । ସାଆନ୍ତାଣୀଙ୍କୁ ସେ କଥା କହିବୁ । ଆଉ କହିବୁ, ମନରେ କଷ୍ଟ କରିବେ ନାହିଁ । ରାତିରେ ଖିଆପିଆ ସରିଲେ ତୁ ତାଙ୍କୁ ସଙ୍ଗରେ ଆଣି କୋଠାରେ ଛାଡ଼ିଦେଇ ଯିବୁ ।

ଖ୍ରିମା—ଆଜ୍ଞା ହଉ, ହଜୁରୁ ଯାହା ହୁକୁମ ଦେବେ, ତା କରିବି ।

ଠାକୁରଙ୍କ ପୂଜାଘର ହାତରେ ଲବଣ୍ୟଦେବୀ ବାବୁଙ୍କ ଖାନା ପଠାଇ ନିଜେ କୋଠାକୁ ଆସିଗଲେ । ବାବୁଙ୍କ ଠାଆପିଢ଼ାର ବରାଦ ହେଲା । ମୁହଁ ହାତ ଧୋଇ ସାରିବା ପରେ ବାବୁ ଆସି ଥାଳି ଆଗରେ ଆସନ ଉପରେ ବସିପଡ଼ିଲେ ଏବଂ ଲବଣ୍ୟଦେବୀ ସାମନାକୁ ବସିପଡ଼ି 'ଏଉଟିଆଣ'—'ସେଉଟି ଆଣ' ବରାଦ କରିବାକୁ ଲାଗିଲେ ।

ଏଇଠି ବାବୁ ସାତଦିନ ଅଟକି ଗଲେ । ବାବୁଆଣୀଙ୍କ ବରାଦ ଅନୁସାରେ କୋଠାରେ ରନ୍ଧାବଢ଼ା ହୁଏ । ସଞ୍ଜକୁ ବାବୁ ବାବୁଆଣୀ ବଗି ଗାଡ଼ିରେ ବସି ଏଣେତେଣେ ବୁଲି ଯାଆନ୍ତି । କଟକରୁ ସୁବର୍ଣ୍ଣଙ୍କ ନିକଟରୁ ଏ ସାତଦିନ ଭିତରେ ତିନି ଥର ଲୋକ ଆସିଲା 'କାମ ଅଛି ଫେରିଆସ ।'

ରାୟସାହେବ ଲେଉଟି ଗଲେ ।

ବିଦାୟ ହେବାବେଳକୁ ଲବଣ୍ୟଦେବୀ ମୁହଁ ଶୁଖାଇ ପଚାରିଲେ—କେବେ ପୁଣି ଏଣିକି ଆସିବ ?

—ସୁବିଧା ହେଲେ ଆସିଯିବି ।

"ସୁବିଧା ନିଜେ ନିଜେ ହୁଏ ନାହିଁ । ସୁବିଧା କରାଇବାକୁ ପଡ଼େ । ସବୁଦିନେ ତ ତୁମେ ସୁବର୍ଣ୍ଣ, ସୁବର୍ଣ୍ଣ, ହେଲ ; ମୁଁ ବଞ୍ଚିବି କେମିତି ?"

\+ + +

ସୁବର୍ଣ୍ଣଦେବୀ ବାବୁଙ୍କ ଯିବା ଆସିବାରେ କଡ଼ା କଟକଣା କରି ବସିଲେ । କହିଲେ—କହୁଚି, ଆଉ ତୁମେ ଗାଁକୁ ଯାଇ ପାରିବ ନାହିଁ । ଉଠୁଣୁ ବସୁଣୁ ଖାଲି ଗାଁ ଗାଁ । ମତେ ତେବେ ଏ ଫାନ୍ଦରେ ପକାଇଲ କାହିଁକି ? ମୁଁ ତ ବିଭା ହୋଇ ସୁଖରେ ଥିଲି । ମୋର ତୁମେ ସର୍ବନାଶ କଲ କାହିଁକି ? କହୁଚି—ଗାଁ କଥା ଭୁଲିଯାଅ । ଗୁମୁକରଣ ବୁଢ଼ା ତ ଅଛି । କିବା ସମ୍ପତ୍ତି, ସେ କଅଣ ବୁଝାସୁଝା କରି ପାରିବ ନାହିଁ ?

ଯିବାକୁ ଇଚ୍ଛାଥିଲେ ବି ଗାଁକୁ ଯିବାପାଇଁ ବାବୁଙ୍କର ଆଉ ସୁବିଧା ହୋଇ ପାରିଲା ନାହିଁ । କେବେ ମାସପରେ ଖବର ଆସିଲା—ବଡ଼ ସାଆନ୍ତାଣୀଙ୍କର ପୁଅଟିଏ ହୋଇଚି ।

ସୁବର୍ଣ୍ଣ ନକୁଳ ବାବୁଙ୍କୁ ପଚାରିଲେ-—ହଇହେ ଶୁଣିନା, ନାମୀ ଯେଉଁ ପିଲାଟିକି ଜନ୍ମକଲା, ସେଇଟି କାହାର ? ମୋ ପିଲାଟିକି ତୁମେ ତେବେ ଦାଣ୍ଡରେ ବସେଇ ଦେଲ !

ରାୟସାହେବ ଗୁମମାରି ରହିଗଲେ । ବଡ଼ଲୋକଙ୍କ ତୁଣ୍ଡରୁ ହଠାତ୍ ଉତ୍ତରଟାଏ ବାହାରି ପଡ଼େ ନାହିଁ । ଅନେକ ଦିନରୁ ସେ ଲାବଣ୍ୟଦେବୀଙ୍କୁ ସନ୍ଦେହ କରି ଆସୁଚନ୍ତି । ମୁହଁରେ କିନ୍ତୁ କିଛି କେବେ ପଚାରିଦେଇ ପାରି ନାହାନ୍ତି । ଭୀମାକୁ ଘୋର ସନ୍ଦେହ । ପୁଣି ଶଶିବାବୁଙ୍କ ପୁଣି ଯିବା ଆସିବା ଖବର ମଧ୍ୟ ତାଙ୍କ କାନରେ ପଡ଼ୁଛି । କିନ୍ତୁ କଥାରେ ଅଛି—

ଯାହା ନ ଦେଖିବ ଦୁଇ ନୟନେ
ପରତେ ନ ଯିବ ଗୁରୁବଚନେ

ସୁବର୍ଣ୍ଣଦେବୀ କିନ୍ତୁ 'ନଗ୍ନେଭ୍ରୋବନ୍ଧା' ଘନ ଘନ ପଚାରି ଦେଉଚନ୍ତି—ନାମୀ ଜନ୍ମ କରିଥିବା ପିଲାଟି କାହାର ?

ଉତ୍ତାଣି ପିଲାର ଶେଯ ପାଖରେ ବସିବସି ଖିମା ଭାବୁଛି—ଏ ପିଲାଟି କାହାର ।

ବୈଠକ ବସାରେ ବସି ବସି ଶଶିବାବୁ ଭାବୁଚନ୍ତି—ଭଉଜ ଜନ୍ମ କରିଥିବା ପିଲାଟି କାହାର !

କିନ୍ତୁ ପିଲାଟି କାହାର ସେକଥା ଏକମାତ୍ର ଜାଣିଚନ୍ତି ଲାବଣ୍ୟ-ଦେବୀ । ମନେ ମନେ ଖିମା ମୁହଁ ଆଡ଼କୁ ଅନାଉଚନ୍ତି । ନାକ, ଆଖି ଛଡେଇ ଆଣିଲା ପରି ଦିଶୁଚି ।

କିଛି ଦିନ ପରେ ଦିନକ ପାଇଁ ଗାଁକୁ ଆସି ରାୟସାହେବ ଲେଉଟି ଗଲେ ଏବଂ ସୁବର୍ଣ୍ଣଙ୍କୁ ପ୍ରବୋଧ ଦେଇ କହିଲେ—ଶୁଣ ସୁବର୍ଣ୍ଣ, ତୁ ବ୍ୟସ୍ତ ହୁଅ ନା । ସେ ପିଲା ମୋର ନୁହେଁ ।

ସୁବର୍ଣ୍ଣ କହିଲେ—ମୋର ନୁହେଁ ବୋଲି କହିଦେଲେ କଅଣ ଚଳିବ ? ସବୁ ଗୁଡ଼ ତୁମକୁ ଆଶ୍ରାକଲି ଯେ, ଶେଷକୁ ତୁମେ ମତେ ନେଇ ମଝିଦରିଆରେ ଭସେଇ ଦେଲ !

ରାୟସାହେବ—ଚିନ୍ତା କରନାହିଁ ସୁବର୍ଣ୍ଣ । ମୁଁ ନିଶ୍ଚୟ ତାର ବାଟ କରିନେବି ।

+ + +

ଏହିଭଳି ଭାବରେ ମାସ ମାସ, ବର୍ଷ ବର୍ଷ ଗଡ଼ି ଚାଲିଲା । ଲାବଣ୍ୟଦେବୀ ଗାଁରେ ଏକୁଟିଆ । ଜମିଦାରୀ ଉଠିଯିବ ଉଠିଯିବ ହେଉଚି । ଏହି ସମୟରେ ରାୟସାହେବ କଟକରେ ବସିରହି, ଧୀରେ ଧୀରେ ଚାଷ ଜମିଗୁଡ଼ିକ ବିକି କରି ଜରସମନ ଟଙ୍କାତକ ସୁବର୍ଣ୍ଣଦେବୀଙ୍କ ନାମରେ ବ୍ୟାଙ୍କମାନଙ୍କରେ ଜମା କରି ଦେବାକୁ ଲାଗିଲେ । ଶଶିବାବୁ

ସେ ଖବର ପାଇ ମଧୁସୂଦନପୁରକୁ ଯାଇ ଲାବଣ୍ୟଦେବୀଙ୍କୁ ଦେଖା-କଲେ । ଶେଷକୁ ତାଙ୍କର ପରାମର୍ଶ କ୍ରମେ ନାବାଳକ ପୁଅ ପିଲାଟିର 'ମାତାମହାପିସ୍', ଭାବେ ଲାବଣ୍ୟ ଦେବୀ ଜମିବାଡ଼ି ବର୍ଣ୍ଣନ କରିବାକୁ ସ୍ୱାମୀଙ୍କୁ ନୋଟିସ ଦେଲେ ।

ଏଇଠି ସ୍ୱାମୀ ସ୍ତ୍ରୀ ମଧ୍ୟରେ ଛିଣ୍ଡାଛିଣ୍ଡି ହୋଇଗଲା ।

ଲାବଣ୍ୟଦେବୀ ନୋଟିସ ପଠାଇବାରୁ ଯେ ଛିଣ୍ଡା ଛିଣ୍ଡି ହୋଇଗଲା, ତାହା ଠିକ୍ ନୁହେଁ । ରାୟସାହେବ ଶେଷ ଥରକ ପାଇଁ ଗାଁକୁ ଆସି ପିଲାଟିକ ଦେଖି ଫେରିଯିବା ପରେ ଚାରିଆଡ଼େ ଡଙ୍କାପିଟି କହିଲେ ଯେ ପିଲାଟି ତାଙ୍କର ନୁହେଁ ।

ଶଶିବାବୁ ସମସ୍ତଙ୍କ ଜଣାଶୁଣାରେ ମଧ୍ୟ ମଧୁସୂଦନପୁରଗାଁକୁ ଆସି ପୁରୁଣା ଖଞ୍ଜାରେ ଦିନେ ଦୁଇଦିନ ରହି ଯାଆନ୍ତି ଏକଥା ଲୋକେ ଦେଖନ୍ତି, ମାତ୍ର କିଛି କାହାରିକି କୁହନ୍ତି ନାହିଁ । ଲାବଣ୍ୟ ଦେବୀଙ୍କର ଓକିଲ ହିସାବରେ ସେ ଆସନ୍ତି—ପରାମର୍ଶ ପାଇଁ ।

ରାୟସାହେବ ରେଜେଷ୍ଟ୍ରି ଚିଠିରେ ସ୍ତ୍ରୀଙ୍କୁ ଜବାବ ପଠାଇ ଜଣାଇ ଦେଲେ ଯେ ସମ୍ପତ୍ତି ବାଡ଼ିର ମାଲିକ ହେଲେ ସେ, ଏବଂ ଦେଶକାଳ ପାତ୍ର ବିବେଚନା କରି ବନ୍ଦୋବସ୍ତ କରିବା ପାଇଁ ତାଙ୍କର ପୂରା ଅଧିକାର ଅଛି ।

ଲବଣ୍ୟଦେବୀଙ୍କ ଠାରୁ କ୍ଷମତା—ପତ୍ର ନେଇ ଶଶିବାବୁ କଟକ ଫେରିଆସି ନାବାଳକ ପୁଅପିଲାଟିର ମାତା ମହାଫିସ୍ ଲାବଣ୍ୟ ଦେବୀଙ୍କ ତରଫରୁ ତାଙ୍କ ସ୍ୱାମୀ ରାୟବାହାଦୂର ନକୁଳଚନ୍ଦ୍ର ଚଉଧୁରୀଙ୍କ ନାମରେ ନମ୍ବରୀ ମକଦ୍ଦମାଟିଏ ସିଭିଲ କୋର୍ଟରେ ଆରମ୍ଭ କରିଦେଲେ । ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ହେଲା ନକୁଳ ବାବୁଙ୍କ ପୈତୃକ ସମ୍ପତ୍ତି । ତେଣୁ ନିୟମ ଅନୁସାରେ ଗୋଟିଏ କେହି ପୁଅପିଲା ଏ ଘରେ ଭୂମିଷ୍ଠ ହେବା ମାତ୍ରକେ ସେ ସମ୍ପତ୍ତିରେ ଅଂଶିଦାର ହୋଇଗଲା । ଲାବଣ୍ୟଙ୍କ ଶିଶୁପୁତ୍ରଟି ସେହି ଅନୁସାରେ ଅଂଶିଦାର ଅଟେ । ଏ ମକଦ୍ଦମା ନିଷ୍ପତ୍ତି ନ ହେବା ଯାକେ ନକୁଳ ବାବୁ କୌଣସି ସମ୍ପତ୍ତି ବିକ୍ରୟ, ଦାନ ବା

ଅନ୍ୟ କୌଣସି ସୂତ୍ରରେ ହସ୍ତାନ୍ତର କରି ପାରିବେ ନାହିଁ । ଏବଂ ଏହି ମର୍ମରେ କୋର୍ଟ ତରଫରୁ ନକୁଳବାବୁଙ୍କ ଉପରେ ନିଷେଧାଜ୍ଞା ଜାରି ହେଉ ଏଇହେଲା ପ୍ରାର୍ଥନା । କ୍ରୋଧାନ୍ୱିତ ନକୁଳ ବାବୁ ଜବାବ ଦେବା ପାଇଁ ମହଲତ ନେଲେ ।

ଉପୂରେ ଗାଁ ଘରୁ କଣ୍ଟକଠାରେ ଶଶିବାବୁଙ୍କ ଆଶ୍ରୟରେ ରହିବା ପାଇଁ ଲାବଣ୍ୟଦେବୀ ଇଚ୍ଛା ପ୍ରକାଶ କଲେ । ମାତ୍ର ପରିସ୍ଥିତି ଦୃଷ୍ଟିରୁ ଦଖଲ ଘରୁ ଅନ୍ୟତ୍ର ଯାଇ ରହିବା ପାଇଁ ଶଶିବାବୁ ତାଙ୍କୁ ବାରଣ କଲେ । ନିରାପତ୍ତି ଦୃଷ୍ଟିରୁ ଶଶିବାବୁ ପାଞ୍ଚବର୍ଷର ଛୁଆଟିକୁ ନେଇଆସି ନିଜଘରେ ପ୍ରତିପାଳନ କରାଇଲେ । ମଝିରେ ମଝିରେ ଲାବଣ୍ୟ ଦେବୀ ଶଶିବାବୁଙ୍କ କଟକ ଘରକୁ ଆସି ପିଲାଟିକୁ ଦେଖି ଯାଆନ୍ତି । କ୍ରମେ କ୍ରମେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଶତ୍ରୁତାର ମାତ୍ରା ବଢ଼ିଚାଲିଲା ଏବଂ ପରିସ୍ଥିତି ଜଟିଳତର ଆକାର ଧାରଣ କଲା ।

ରାୟସାହେବଙ୍କ ମୁଣ୍ଡର ଅବସ୍ଥା ଧୀରେ ଧୀରେ ଖରାପ ହୋଇ ପଡ଼ିବାକୁ ଲାଗିଲା । ଉତ୍ତେଜନାରେ କେତେବେଳେ କଅଣ କରି ବସିବେ, ତାର ଠିକ୍ ଠିକଣା ନାହିଁ । ବଡ଼ଦିନ ଛୁଟି ଭିତରେ ଦିନେ ସେ ଶହେ ଲୋକ ସଂଗ୍ରହ କରି ସଙ୍ଗରେ ନେଇ ଗାଁକୁ ଆସିଲେ । ରାତି ପାହିଲା ବେଳକୁ ଗାଁସାରା ହୁଲୁସ୍ଥୂଲ । ଲୋକେ କୁହାକୁହି ହେଉ ଥାଆନ୍ତି—ରାୟସାହେବ ପୁରାପୁରି ପାଗଳ ହୋଇ ଗଲେଣି । କୁଲିମାନଙ୍କୁ ଲଗାଇ ସେ ସାବଲ ଗଇନ୍ତି ସାହାଯ୍ୟରେ ନୂଆ ହୋଇ ତୋଳା ଯାଇଥିବା ତିରିଶ ବଖରା କୋଠା—ଘରକୁ ଭଙ୍ଗାଭଙ୍ଗି କରାଇ ଧୂଳିରେ ମିଶେଇ ଦେଉଛନ୍ତି । ତିରିଶ ବଖରା କୋଠାଘର କେତେଦିନରେ ତିଆରି ହୋଇଛି ଏବଂ କେତେ ଟଙ୍କା ଖରଚରେ ତୋଳା ଯାଇଛି—ସେକଥା ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ପାଖ ଆଖ ଗାଁ ଗଣ୍ଡାରେ ତାଙ୍କ ତରଫରୁ ନାଗରା ବାଡ଼ିଆ ହୋଇ ସାରିଛି—ସମସ୍ତେ ଆସ, ଯିଏ ଯାହା ପାରୁଛ ନେଇ ଯାଅ, କବାଟ, ଝରକା, କଡ଼ି, ବରଗା ଇତ୍ୟାଦି ଇତ୍ୟାଦି ।

ଦିନ ପନ୍ଦରଙ୍କ ପରେକ ଘରପଟେ କୋକାରଣ୍ୟ । ଶଗଡ଼ ଲଗାଇ ଲୋକେ କବାଟ, ଝରକା, ଡାଡ଼ ନେଉଛନ୍ତି; ଇଟା ପଥର ବହି ନେଉଚନ୍ତି । ଚଉକି ପକାଇ ସାମନାରେ ବସିରହି ରାୟସାହେବ ହୁକୁମ ଦେଉଚନ୍ତି—ଭାଙ୍ଗି ପକାଅ । ମୁଁ ତୋଳିଛି, ମୁଇଁ ଭାଙ୍ଗୁଚି । କାହାରି କିଛି କହିବାର ଅଧିକାର ନାହିଁ । ନେଇ ଯାଅ, ଯିଏ ଯାହା ଇଚ୍ଛା, ଯାହା ଯିଏ ପାରୁଚ ।

ସେଇଦିନ ସଞ୍ଜବେଳକୁ ସବୁଶେଷ । ସୁବର୍ଣ୍ଣମୟୀ ଲଙ୍କାପୁରି ଛାରଖାର ହୋଇଗଲା । ରାତାରାତି ଦଳବଳ ଘେନି ନକୁଳବାବୁ କଟକ ଫେରିଗଲେ । ରାଗ ପରମ-ଚଣ୍ଡାଳ । ଦେଖିଲା ଲୋକେ ହାହାକାର କଲେ ।

ପୁରୁଣା ଖଞ୍ଜା ଭିତରେ ମୁଣ୍ଡରେ ହାତଦେଇ ବସିପଡ଼ି ଲାବଣ୍ୟ ଦେବୀ ଭୀମାକୁ ପଚାରିଲେ—ଡେଣେ କଅଣ ସବୁ ହଉଛି ଭୀମା ?

ଭୀମା ଉତ୍ତର ଦେଲା—ବିନାଶକାଳେ ବିପରୀତ ବୁଦ୍ଧି ।

ଲାବଣ୍ୟଦେବୀ—ତୁ କାହିଁ ଯାଆନାରେ ଭୀମା, ଲୋକଟା ଚଣ୍ଡାଳ ପାଲଟି ଗଲାଣି । ମତେ କାଳେ ମାରଧର କରିବସିବ !

ଭୀମା—ମୁଁ ଥିବାଯାକେ ଆପଣ ନିଶ୍ଚିନ୍ତ ରହନ୍ତୁ । ଏ ପିଣ୍ଡରୁ ପ୍ରାଣଟା ଚାଲି ନ ଯିବାଯାକେ ଏଠିକି କେହି ଆସିବାକୁ ସାହସ କରିବ ନାହିଁ ବୋଲି ଜାଣିବେ ।

ରାତିକି ସଦଳବଳେ ରାୟସାହେବ କଟକ ଫେରିଗଲେ । ତହିଁ ଆରଦିନ ସକାଳୁ ଲାବଣ୍ୟଦେବୀ ସବୁ ଖବର ଲେଖି ଭୀମାକୁ ଶଶି-ବାବୁଙ୍କ ପାଖକୁ ପଠାଇ ଦେଲେ । କହିଲେ—ଆଜ ଯେମିତି ହେଉ ସଞ୍ଜ ଆଗରୁ ତୁ ଫେରି ଆସିବୁରେ ।

ତହିଁ ଆରଦିନକୁ ଖବର କାଗଜରେ ବିଜ୍ଞାପନ ରୂପେ ବାହାରି ପଡ଼ିଲା—

ରାୟବାହାଦୂର ନକୁଳଚନ୍ଦ୍ର ଚଉଧୁରୀ ମସ୍ତିଷ୍କ ବିକୃତି ହେତୁ ବିଧବା ଶାଳୀଙ୍କ କଥାରେ ପଡ଼ି ବିନା କାରଣରେ ମଧୁସୂଦନପୁର ଗ୍ରାମରେ ନଗଦ ତୋଳାଯାଇଥିବା ପକ୍କା ଘର ତିରିଶ ବଖରାକୁ ଭାଙ୍ଗି ଭୁଙ୍ଗି ଧୂଳିସାତ୍ କରାଇ ଦେଇଛନ୍ତି । ଆମ୍ଭେ ଲାବଣ୍ୟଦେବୀ ତାଙ୍କର ବିବାହିତା ସ୍ତ୍ରୀ ଅଟୁଁ, ଏବଂ ଚଉଧୁରୀଙ୍କର ନାବାଳକ ପୁତ୍ର-ସନ୍ତାନ ହରିଶଙ୍କରଙ୍କ ମାତାମହାଫିଜ୍ ଅଟୁଁ । ବିକୃତ ମସ୍ତିଷ୍କ ରାୟବାହାଦୁର ପୈତୃକ ସମ୍ପତ୍ତି ନଷ୍ଟଭ୍ରଷ୍ଟ କରି ପକାଉଛନ୍ତି ଏବଂ ବନ୍ଦିବସ୍ତା କରିବା ଉଦ୍ଦେଶ୍ୟରେ ଲାଗିପଡ଼ିଛନ୍ତି । ନାବାଳକର ମାତା ମହାଫିଜ୍ ଭାବେ ଆମ୍ଭେ ଉଚିତ ଅଦାଲତର ଆଶ୍ରୟ ନେଇ ସାରିଅଛୁଁ, ଏବଂ ସମସ୍ତ ସମ୍ପତ୍ତି ଉପରେ ନିଷେଧ-ଆଜ୍ଞା ଜାରି କରାଇବା ପାଇଁ ଅଦାଲତରେ ପ୍ରାର୍ଥନା କରିଅଛୁଁ । ଅତଏବ ଚଉଧୁରୀବାବୁଙ୍କ ଠାରୁ କେହି କୌଣସି ସମ୍ପତ୍ତି ଗ୍ରହଣ କଲେ ତାହା ଆଇନ ଅନୁସାରେ ଅଗ୍ରାହ୍ୟ ହେବ ।

ସଙ୍ଗେ ସଙ୍ଗେ ଶଶିବାବୁ ଘରଭଙ୍ଗା କଥା ଉଲ୍ଲେଖ କରି କୋର୍ଟ ତରଫରୁ ସମସ୍ତ ସମ୍ପତ୍ତି ଉପରେ ନିଷେଧାଜ୍ଞା ଜାରି କରାଇ ଦେଲେ ।

\+ \+ \+

ମକଦ୍ଦମା ତାରିଖ ଦିନ ରାୟବାହାଦୂର ଅତି ଅଦ୍ଭୁତ ରକମର ଜବାବଟିଏ କୋର୍ଟରେ ଦାଖଲ କରିଦେଲେ—ତାର ସାରାଂଶ—ବାଦିନୀ ଲାବଣ୍ୟଦେବୀ ଭ୍ରଷ୍ଟଚରିତ୍ରା ଅଟନ୍ତି । ନାବାଳକ ହରିଶଙ୍କରଟି ତାଙ୍କର ଯାରଜ ସନ୍ତାନ ଅଟେ । ଶ୍ରୀକର ଭୀମା ରାଉତ ଔରସରୁ ସେ ଜାତ ହୋଇଛି । ତେଣୁ ଏ ସମ୍ପତ୍ତି ଉପରେ ତାର କୌଣସି ଅଧିକାର ନାହିଁ ।

ଚରିତ୍ରହୀନତା ହେତୁଁ ଲାବଣ୍ୟଙ୍କୁ ରାୟବାହାଦୂର ପରିତ୍ୟାଗ କରିଛନ୍ତି । ତେଣୁ ବହୁବର୍ଷ ହେଲା ତାଙ୍କ ସହିତ(ପ୍ରତିବାଦୀଙ୍କର)କୌଣସି ସମ୍ପର୍କ ନାହିଁ । ତେବେ ତାଙ୍କୁ ବିବାହ କରିଥିବା ହେତୁଁ ପଡ଼ିପ୍ରଥା ଦ୍ୱାରା ତାଙ୍କୁ ରାୟବାହାଦୂର ଭରଣପୋଷଣ କରୁଛନ୍ତି ମାତ୍ର । ଭୀମା ଶ୍ରୀକର

ଛଡ଼ା ତାଙ୍କ ଓକିଲ ଶଶିଭୂଷଣ ମିଶ୍ରଙ୍କ ସହିତ ଲାବଣ୍ୟଙ୍କର ଅବୈଧ ସମ୍ପର୍କ ଥିବାର ପ୍ରମାଣ ଅଛି । ଏହି ସବୁ ଦୃଷ୍ଟିରୁ ନକୁଳ ବାବୁ ଗୋଟିଏ ପାଳିତ ପୁତ୍ର ପ୍ରତିପାଳନ କରୁଛନ୍ତି । ଚଉଧୁରୀଙ୍କ ଅନ୍ତେ ସେହି ସନ୍ତାନ ହେବ ସମସ୍ତ ସମ୍ପତ୍ତିର ମାଲିକ ଓ ଉତ୍ତରାଧିକାରୀ ।

ସ୍ୱାମୀ ଏବଂ ସ୍ତ୍ରୀ ଉଭୟ ପକ୍ଷରେ ଉତ୍ତେଜନା ବଢ଼ି ଚାଲିଲା । ଲାବଣ୍ୟଦେବୀ ଶଶିବାବୁଙ୍କ ଘରକୁ ପ୍ରକାଶ୍ୟରେ ଆସି ବସା ବାନ୍ଧିଲେ । ଗୋଟିଏ ମକଦ୍ଦମାରୁ କେନାଟମେଲ ପାଞ୍ଚଦଶ ମକଦ୍ଦମାରେ ପରିଣତ ହେଲା । ତଳ କୋର୍ଟର ରାୟ ବାହାରିଲା ବେଳକୁ ଉପର କୋର୍ଟରେ ଅପିଲ ଦାଏର ହୁଏ । ତଳକୋର୍ଟରେ ଆଉ ଗୋଟିଏ ମକଦ୍ଦମା ଦାୟର ହୋଇଯାଏ । ସାକ୍ଷୀ ଗୁହାଙ୍କ ଜେରା ଜମାନବନ୍ଦି ଲୋକଙ୍କ କର୍ଣ୍ଣରୋଚକ ହୁଏ, ଏବଂ ବଡ଼ ଘରର ବଡ ବଡ଼ ରହସ୍ୟ ଦାଣ୍ଡରେ ପଡ଼ି ବାଟରେ ହାଟରେ ଚାରିଆଡ଼କୁ ଚହଟିଯାଏ । ସ୍ତ୍ରୀକୁ ସ୍ୱାମୀ ଭ୍ରଷ୍ଟା ଓ ଅସତ୍ ଚରିତ୍ରା ବୋଲି ପ୍ରମାଣ କରିବାକୁ ଚାହାନ୍ତି, ଏବଂ ସ୍ତ୍ରୀ ସ୍ୱାମୀଙ୍କୁ ଅସ-ଚ୍ଚରିତ୍ର, ନିଶାଖୋର, ପାଗଳ ବୋଲି ପ୍ରମାଣ କରିବାକୁ ଆଗେଇ ଆସନ୍ତି ।

ଏହି ମକଦ୍ଦମା ବର୍ଷ ବର୍ଷ ଧରି ଚାଲିଲା ଏବଂ ଖବର କାଗଜ ମାନଙ୍କରେ ଧାରାବାହିକ ଭାବେ ବିବରଣୀମାନ ପ୍ରକାଶ ପାଇବାକୁ ଲାଗିଲା ।

ବିଚାରପତିଙ୍କ ଆଗରେ ଭୀମାତୁଣ୍ଡରେ "ଲାବଣ୍ୟଦେବୀଙ୍କ ସହିତ ତାର ପାପ ସମ୍ପର୍କ ଅଛି" ଏଇ କଥାଟାକୁ କୁହାଇ ନେବା ଲାଗି ରାୟବାହାଦୂର ବହୁଚେଷ୍ଟା କଲେ । ଭୀମାକୁ କଟକ ଉଠାଇ ଆଣି ଅର୍ଥ ପ୍ରଲୋଭନ ଦେଖାଇଲେ । ଦରମା ବନ୍ଦ କରି ଦେଇ ଚାକିରିରୁ ବାହାର କରି ଦେବାର ଭୟ ଦେଖାଇଲେ । ମାଡ ମରାଇ ଦରମରି କରି କାଠ-ଯୋଡ଼ି ନଈବାଲିରେ ଫିଙ୍ଗିଦେବାକୁ ଭୟଦେଖାଇଲେ । ମାତ୍ର, ଫଳ କିଛି ହେଲି ନାହିଁ । ଶେଷକୁ ସେ ନିଜଘର ପାଖର ପଡ଼ିଶା କେତେକଙ୍କୁ କଟକ ଉଠାଇଆଣି ଫୁସୁଲେଇବାକୁ ଲାଗିଲେ । ସବା ଶେଷକୁ

କାହ୍ନୁନନ୍ଦ ନାମକ ଜଣେ ପଡ଼ିଶା ତାଙ୍କ ଅନୁରୋଧ ଘଞ୍ଚି ନପାରି କୋର୍ଟରେ ମିଛ ସାକ୍ଷ୍ୟଦେଲେ ।

ଗୁପ୍ତସାହେବ ତାଙ୍କୁ ନିଜ ଗାଡ଼ିରେ ଗାଁପାକେ ପଠାଇଲେ । ମିଛ ସାକ୍ଷୀ ଦେଇ ନନ୍ଦେ ଗାଁକୁ ଫେରୁଛନ୍ତି ଏବଂ ବାଟଯାକ ଭାବୁଛନ୍ତି— ହାୟ କଅଣ ମୁଁ କଲି ? ବୃଦ୍ଧ ବୟସରେ ଏମିତିଆ ମିଛ ସାକ୍ଷ ଦେଇ ଗୋଟିଏ ବିବାହିତା ନାରୀର ସର୍ବନାଶ କଲି ।

ଘରେ ପହଞ୍ଚିବାକୁ ଆଉ ପ୍ରାୟ ଦେଢ଼ମାଇଲ ବାକୀ ଅଛି, ଅନ୍ୟମନସ୍କ; ଅନୁତପ୍ତ ନନ୍ଦ ମହାଶୟ ବଗିଗାଡ଼ି ଭିତରୁ ରାସ୍ତା ଉପରକୁ ଦୁଲ୍‌କିନା ଖସି ପଡ଼ିଲେ । ମୁଣ୍ଡଟା ଶୁଖିଲା ପକ୍‌କା ରାସ୍ତାଟା ଉପରେ ଢୋଓ କିନା ବାଡେଇ ହୋଇଗଲା । ମୁହୂର୍ତ୍ତିକ ମଧ୍ୟରେ ସେ ବେହୋସ ହୋଇଗଲେ । ହୋସ ଆଉ ଫେରିଲା ନାହିଁ । ଲୋକେ ଜମା ହୋଇଗଲେ, ଏବଂ ଶେଷ ମୁହୂର୍ତ୍ତରେ ଥରେ ତାଙ୍କର ଚେତନା ଫେରିଲାରୁ ସମସ୍ତଙ୍କୁ ଶୁଣାଇ ସେ କହି ଉଠିଲେ—ମୁଁ ଧର୍ମ-ଅଦାଲତରେ ମିଛ କହି ଆସିଛି । ଏ ବୟସରେ ତାହା ମିଛ କହିଛି । ତେଣୁ ଭଗବାନ ମୋତେ ଏ ଦଣ୍ଡ ଦେଇ ଠିକ୍ କରିଛନ୍ତି । ଲାବଣ୍ୟ ଦେବୀ ନିରପରାଧିନୀ । ତାଙ୍କ ଚରିତ୍ର ଖରାପ ନୁହେଁ । ଠାଉଠରିଆ ରାୟବାହାଦୂରଙ୍କର କଥାରେ ପଡ଼ି ମିଛ କହିଲି । ତାରି ଫଳ ଇଏ । ମୁଁ ଆଉ ବଞ୍ଚି ପାରିବି ନାହିଁ ।

ଅନୁତପ୍ତ କାହ୍ନୁନନ୍ଦେ ଘରକୁ ଆଉ ଫେରି ପାରିଲେ ନାହିଁ । ସେଇ ରାସ୍ତାଟା ଉପରେ ଶେଷ ନିଶ୍ୱାସ ଛାଡ଼ିଲେ । ତାଙ୍କର ଶେଷ କେଇ ପଦ କଥାକୁ ଲୋକେ ଜପାମାଳି କରି ଚାରି ଆଡ଼େ ବୁଲିଲେ । ଶଶିବାବୁଙ୍କ କାନକୁ ମଧ୍ୟ ସେ କଥା ଗଲା । ସେ ମଧ୍ୟ ସେଇ କଥାଟାକୁ କୋର୍ଟରେ ଉତ୍ଥାପନ କରାଇ ରେକର୍ଡ଼ କରାଇ ନେଲେ ।



କୋଠାଘର ଗୁଡ଼ାକ ଭଙ୍ଗି ଯାଇଚ। ଜମିବାଡ଼ି ବାଗବଗିଚା ତକ ଅଛି। ସେ ଗୁଡ଼ିକରୁ ଫସଲ ଆଦାୟ ଏବଂ ଜମିଦାରରୁ ଖଜଣା ଆଦାୟ ପାଇଁ ଅଳ୍ପ କେଇଜଣ କର୍ମଚାରୀ ଅଛନ୍ତି। ଭଙ୍ଗା କୋଠା ଘରର ପଡ଼ିଆରେ ଥିବା ଅସ୍ଥାୟୀ ଚାଳଘର ଖଣ୍ଡିକରେ ସେମାନେ ବସି କାମ କରୁଚନ୍ତି। କୋର୍ଟ ତରଫରୁ ଟ୍ରଷ୍ଟି ଜଣେ ମୁକରର ହୋଇଛନ୍ତି। କଟକରୁ ସେ ବେଳେ ବେଳେ ଆସି ହିସାବ କିତାବ ବୁଝା ସୁଝା କରନ୍ତି। ଧାନ ଗୁଡ଼ିକ ପୁରୁଣା ଖଞ୍ଜାର କାଠିଅମାର ଭିତରେ ମହଜୁତ ରଖାଯାଏ। ମଜଭୁତିଆ ଦେଖି ଜଣେ ଚାକରକୁ ନକୁଳ ବାବୁ କଟକରୁ ଏଠିକି ପଠାଇ ଦେଲେ। ସେ ଆସି ଏଇ ଘରେ ରହୁଚି। ଖେମା ଏବଂ ଲାବଣ୍ୟଙ୍କ ଗତିବିଧି ଲକ୍ଷ୍ୟ କରିବା ତାର କାମ। ନାଆଁ—ସୋବର୍ଣ୍ଣ ବରାଳ। ଦଣ୍ଡ ବୈଠକ ବାଲା। ସକାଳେ ସଞ୍ଜେ କସରତ କରେ। ବେଶ୍ ଖାଇ ପିଇ ମଜା ମଜଲିସରେ ଦିନ କଟାଏ। ଭୀମାକୁ ଦେଖିଲେ କହେ—ଆମେ ହେଲେ ଭାଇ, ଚାକର ବାକର ଲୋକ। ସମ୍ପତ୍ତି ଭାଗ ହେଲେ ଆମେ କଅଣ ଅଂଶ ପାଇବୁଁ ? ପେଟ ପାଇଁ ଚାକର। ତୋର ମୋର ଶତ୍ରୁତା କଅଣରେ ? ଆମର ଇଏ ଭଲ କି ସେ ଭଲ। ମତେ ଦେଖି ତୁ କଆଁ ମୁହଁ ମୋଡ଼ି ଚାଲି ଯାଉଚୁ ଭାଇ ? ଗେରସ୍ତ ଘରିଜା ଭିତରେ କଳି ତକରାଳ କେଇଦିନ ରହିବ ?

ଖେମା ହସିଦେଇ ଉତ୍ତର ଦିଏ—ଯାହା କହିଲୁ।

ଗେରସ୍ତ ଘରିଜା କଳି—ଅଜା ଯୁଦ୍ଧେ, ଋଷି ଶ୍ରାଦ୍ଧେ
ବଡ଼ ଆରମ୍ଭ, ଲଘୁ କ୍ରିୟା।

ଯୋବନା ବେଳେ ବେଳେ ପୁରୁଣା ଖଞ୍ଜା ଭିତରକୁ ମାଡ଼ି ଆସେ। ଲାବଣ୍ୟ ଦେବୀଙ୍କୁ ଷାଷ୍ଟାଙ୍ଗ ଦଣ୍ଡବତ ହୋଇ କହେ—ଆପଣଙ୍କ ମାଳି

ମାମଲାରେ ଆମର କଅଣ ଅଛି, ମା ଧାଆନ୍ତାନି ? ଆମେ ହେଲୁ ଆପଣଙ୍କ ପାଦ ତଳର ଚାକର ।

ମଝିରେ ମଝିରେ ସୋବନା କଟକ ଯାଇ ବାବୁଙ୍କ ସଙ୍ଗରେ କଥା ଭାଷା ହୋଇ ଆସେ ଏବଂ କଅଣ କରିବ କଅଣ ନକରିବ ହୁକୁମ ନେଇ ଆସେ । ଗାଁରେ ରହେ ଏବଂ ବେଳେ ବେଳେ ଗଛରେ ଚଢ଼ି ନଡ଼ିଆ ପଣସ ପାରେ । ଦିନେ ଦିନେ ପଇଡ଼ ତୋଳି ଲାବଣ୍ୟଦେବୀଙ୍କ ପାଖରେ କେତୋଟା ଗୁଡ଼େଇ ଦେଇ ଆସେ । ଦୃଷ୍ଟି ବୁଝା ସୁଝା କରୁଥିଲେ ସୁଦ୍ଧା ଲାବଣ୍ୟ ଦେବୀ ସାମାନ୍ୟ ଚାକର ପିଲାଟାର ଏଭଳି ଫଳ ଦୁଇଟା ତୋଳି ନେବା କଥା ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ । ନଡ଼ିଆ ଗଛ ଉପରେ ଚଢ଼ି ଫଳ ତୋଳିବା ବାହାନାରେ ସୋବନା ଯେ ପୁରୁଣା ଗଞ୍ଜା ଭିତରେ ଭୀମା ଓ ଲାବଣ୍ୟଙ୍କ କାରବାରକୁ ଲକ୍ଷ୍ୟ କରୁଛି, ଏକଥା କେହି କଳ୍ପନାରେ ସୁଦ୍ଧା ଭାବି ପାରନ୍ତି ନାହିଁ ।

ମୁଣ୍ଡ ଉପରେ ମକଦ୍ଦମା ତାରିଖ । କାଲିଠାରୁ ଭୀମା କଟକ ଯାଇଛି । ଏପ୍ରିଲ ମାସର ଭୀଷଣ ଖରା । ଖରାବେଳେ ଲାବଣ୍ୟ ଦେବୀ ସଦର ଦରଜା କବାଟ ହଳକୁ ଆଉଜେଇ ନେଇ ଅମାରକୁ ଲାଗି ରହିଥିବା ବାରଣ୍ଡା ଉପରେ ବସି ରହି ବହି ଖଣ୍ଡିଏ ପଢୁଛନ୍ତି । କେତୋଟା ପଇଡ଼ ଧରି ସୋବନା ଆସି ସେହି ବାରଣ୍ଡା ଉପରେ ବସି ପଡ଼ିଲା । ଦାଣ୍ଡ କବାଟକୁ ସେ ଭିତରକୁ ଆସିଲା ବେଳେ ଭିତର ପଟୁ କିଳି ଦେଇ ଆସିଛି । ହାତରେ ଅଛି କଟୁରିଟାଏ ଏବଂ ଷ୍ଟିଲ ଗ୍ଲାସ ଖଣ୍ଡେ । ଖରା ବେଳଟାରେ ଗାଁ ଦାଣ୍ଡରେ କାହାର ଭୁଣ୍ଡ ଶୁଭୁ ନାହିଁ । ହୁଏତ ସମସ୍ତେ ଯେଝା ଘରେ ଶୋଇ ପଡ଼ିଛନ୍ତି । ପଇଡ଼ଟାଏ ଛେଲେଇ ଲାବଣ୍ୟଙ୍କ ହାତକୁ ପିଇବାପାଇଁ ବଢ଼ାଇ ଦେଲା ସୋବନା । ବସି ବସି ଏଣେ ତେଣେ ସେ ଆଖି ବୁଲାଉ ଥାଏ । ଚଙ୍ଗ ଚଙ୍ଗ ହୋଇ ଏଣେ ତେଣେ ଚାହୁଁ ଥାଏ । ଲାବଣ୍ୟ ଦେବୀ ସରଳ ବିଶ୍ୱାସରେ କଟା ପଇଡ଼ଟାକୁ ମୁହଁ ଉପରକୁ ଟେକିଧରି ପାଣି ପିଇବାରେ ଲାଗି ଥାଆନ୍ତି ।

ଠିକ ଏତିକିବେଳେ ସୋବନା ହଠାତ୍ ଉଠିଆସି ଆକ୍ରମଣ କଲା । ଲବଣ୍ୟଙ୍କ ପାଟି ଭିତରେ ଗାମୁଛାଟାକୁ ପୁରାଇ ଦେଲା, ଯେମିତିକ ସେ ପାଟିଭୁଣ୍ଡ କରି ପାରିବେ ନାହିଁ । ତାହାପରେ ତାଙ୍କ ଘଣ୍ଟିକାଟାକୁ ନିଜର କଳିଷ୍ଟ ହାତ ଦୁଇଟାରେ ଜୋରରେ ଚିପି ଧରିଲା । ନିଶ୍ବାସ ମାରି ନପାରି ଲାବଣ୍ୟଦେବୀ ଛଟପଟ ହେବାକୁ ଲାଗିଲେ ଏବଂ ଚିତ୍ ପଟାଙ୍ଗ ହୋଇ ତଳେ ପଡ଼ିଗଲେ । ବହୁ ଦିନର ଚିନ୍ତା ଓ ଅବହେଳାରେ ଶରୀର ଦୁର୍ବଳ ହୋଇ ଯାଇଥାଏ । ଅଳ୍ପ ସମୟ ଭିତରେ ସେ ଅଜ୍ଞାନ ହୋଇ ଗଲେ । ନିଶ୍ଚଳ, ନିସ୍ପନ୍ଦ ଶରୀରଟା ତାଙ୍କର ଅଚଳ ମୂର୍ତ୍ତିପରି ତଳେ ପଡ଼ି ରହିଲା ।

ଧାନ କୋଠିକୁ ପ୍ରାୟ ଲାଗି ବସିଥିଲେ—ଲବଣ୍ୟ । କୋଠିରେ ଧାନ ପୁରି ରହିଥାଏ । ତଳ ଉପର ହୋଇ ସେଥିରେ ଦୁଇଟା କବାଟ । ବାହାର ପଟୁ ଜଞ୍ଜିର ଲାଗି ତାଲା ପଡ଼ିଥାଏ । ସାବଳ ସାହାଯ୍ୟରେ ସୋବନା ଧାନ କୋଠିର ତଳ କବାଟର କୁହୁଣ୍ଡାକୁ ତାଡ଼ି ମେଲା କରି ଦେଲା । ଭିତର ପଟୁ ଧାନର ଚାପ ପାଇ କବାଟ ଖଣ୍ଡିକ ବାହାରକୁ ମେଲା ହୋଇଗଲା । ଏବଂ ଧାନ ଗୁଡ଼ାକ ଭୁସ୍ କିନା ବାରଣ୍ଡା ଉପରକୁ ଓଜାଡ଼ି ହୋଇ ପଡ଼ିଲା । ଏଥି ମଧ୍ୟରେ ସୋବନା ଲବଣ୍ୟଙ୍କ ବେକରୁ ସୁନାର ହାର ଓ ହାତରୁ କଙ୍କଣ ଆଦି ଖସାଇ ନେଲା । ଲବଣ୍ୟଙ୍କ ଶରୀର ଉପରେ ପୁରୁଷେ ଉଚ୍ଚରେ ଧାନ ଓଜାଡ଼ି ହୋଇପଡି ଗୋଟିପଣେ ତାଙ୍କୁ ପୋତି ପକାଇଲା ।

ଗହଣାତକ ଗାମୁଛା-କାନରେ ବାନ୍ଧି ସାବଳ କଟୁରୀ ଦିଖଣ୍ଡିକୁ ଧରି ବାଡ଼ିବାଟ କବାଟ ଫିଟାଇ ଘାତକ ସୋବନା ପଳାଇ ଗଲା । ଗାଁ ଦାଣ୍ଡ ତେତେବେଳେ ଶୂନଶାନ । ଗାଁ ମୁଣ୍ଡ ପୋଖରୀ ଭିତରକୁ ସାବଳ କଟୁରୀ ଦିଖଣ୍ଡିକୁ ଫିଙ୍ଗିଦେଇ ସୋବନା କୁଆଡ଼େ ଅଦୃଶ୍ୟ ହୋଇଗଲା । ଏତେ ବଡ଼ ଘଟଣାର ଲେଶମାତ୍ର ଖବର କେହି ଜାଣି ପାରିଲେ ନାହିଁ ।

ତନ୍ଦି ଆରଦାନ ଉପର ବେଳା ଭୀମା କଣ୍ଠକରୁ ଫେର ସଦର ଦରଜାରେ ଡାକ ଡାକ ବ୍ୟସ୍ତବ୍ୟସ୍ତ ହୋଇଗଲା । ଗାଁ ଯାକର ଲୋକେ ଜମା ହୋଇଗଲେ । ବାଡ଼ ବାଟେ ଭିତରକୁ ପଶି ଲୋକେ ଦେଖିଲେ ଧାନ ଗୁଡ଼ାକ କୁଢ଼ିଆ ହୋଇଛି ଏବଂ ଗନ୍ଧ ବାହାରୁଛି । ଲବଣ୍ୟ ଦେବୀ ନାହାନ୍ତି, ଧାନଗଦା ଆଡ଼େଇ ଦେଇ ଲୋକେ ଭୟରେ ଥରି ଉଠିଲେ ।

—ହେଇଟି ହେ, ଇଆର ଭିତରେ ମରି ପଡ଼ିଚନ୍ତି ।

ସଙ୍ଗେ ସଙ୍ଗେ ଭୀମା କଣ୍ଠକ ଦୌଡ଼ିଯାଇ ଶଶିବାବୁଙ୍କୁ ଖବର ଦେଲା । ପୋଲିସଙ୍କୁ ସଙ୍ଗରେ ଧରି ଶଶିବାବୁ ଧାଇଁ ଆସିଲେ । ଇନସ୍ପେକ୍ଟର ଆସିଲେ, ଡ଼ି: ଏସ୍: ପି ଆସିଲେ । ଏମ୍, ପି, ମଧ୍ୟ ଇନକ୍ୱାରି କରିବାକୁ ଆସିଗଲେ । ଶବ ଗଲା କଣ୍ଠକ ବଡ଼ ଡାକ୍ତର ଖାନା—ଡାକ୍ତର ମାଇନା ପାଇଁ । ଅନ୍ତ ଖୋଜା ଖୋଜରେ ସୋବନା ମିଳିଲା ତା ଘରେ ଏବଂ ତାଆରି ପାଖରୁ ଲବଣ୍ୟ ଦେବୀଙ୍କ ଅଳଙ୍କାର ତକ ମିଳିଲା । ଜୁଲୁମ ପାଇ ସୋବନା ସବୁ କଥା ମାନିଗଲା । ପୋଖରୀ ଭିତରୁ ସାବଲ କଣ୍ଟୁରୀ ବାହାରିଲା । ଜେଲ ହାଜତରେ ସୋବନା ଅଟକ-ବନ୍ଦୀ ଭାବେ ରହିଲା । ଫୌଜଦାରୀ କୋର୍ଟରେ ପୋଲିସ ତରଫରୁ ଚାର୍ଜସିଟ୍ ଦାଖଲ କରାଗଲା । ରାୟ ବାହାଦୂରଙ୍କୁ ଏ ମକଦ୍ଦମାରେ ଜଡ଼ିତ କରାଯାଇ ପାରିଲା ନାହିଁ । ରାୟ ବାହାଦୂର ସରକାରଙ୍କ ଉଚ୍ଚ ପଦବୀ ଧାରୀ ସମ୍ଭ୍ରାନ୍ତ ବ୍ୟକ୍ତି । ତାଙ୍କୁ ଏ କେସ୍‌ରେ ଯୋଡ଼ିବାକୁ ପୋଲିସଙ୍କ ସାହସ ପାଇଲା ନାହିଁ । ତାଙ୍କ ବିରୁଦ୍ଧରେ ସିଧାସଳଖ କୌଣସି ପ୍ରମାଣ ମିଳିଲା ନାହିଁ ।

ସୋବନାର ବୁଢ଼ାବାପ ଆସି ନକୁଳ ବାବୁଙ୍କ ପାଦତଳେ ମୁଣ୍ଡିଆ ମାରି କହିଲା—ଆପଣ ବଡ଼ ଲୋକ, ମନ୍ଦ ବୁଦ୍ଧି ଶିଖାଇ ମୋ ପିଲାଟାକୁ ଶେଷକୁ ଫାଶି ଖୁଣ୍ଟରେ ଛିଡ଼ା କରାଇ ଦେଲେ ?

ସୋବନାର ଯୁବତୀ ବଧୂ ତାଙ୍କ ପାଦ ଦୁଇଟାକୁ ଜାବୁଡ଼ି ଧରି କହିଲା—ସାଆନ୍ତେ, ମୁଁ, ତମରି ଝିଅ । ବିନା ଅପରାଧରେ ମୋତେ ତୁମେ ବିଧବା ଦଣ୍ଡ ଦେଲ ?

ଉଭୟଙ୍କୁ ନକୁଳ ବାବୁ ଅଭୟ ଦେଇ କହିଲେ—କିଛି ଭୟ କର ନାହିଁ । ମୁଁ ଅଛି । ତୁମେ ଚୁପ ହୋଇ ଘରକୁ ଯାଅ । ଧଳାକୁ ମୁଁ କଳା କରାଇ ପାରେଁ । ଦିନକୁ ରାତି କରାଇ ପାରେଁ । କୋର୍ଟ କଚେରି ଓ ଆଇନ୍ କାନୁନ୍ ହେଲା ଆମର ଧୂଳି-ଖେଳ । ସୋବନାର କେସ୍ ଅପ୍ରମାଣ କରାଇବ । ଘର ପୁଅ ଘରକୁ ନିଶ୍ଚେ ଲେଉଟି ଆସିବ । ମୁଁ ଜବାବ ଦେଉଛି; ତୁମେ ଘରକୁ ଫେରିଯାଅ । ମୋ ନା—ରାୟ ବାହାଦୂର ନକୁଳ ଚନ୍ଦ୍ର ଚଉଧୁରୀ ।



ସୋବନା ଧରା ହୋଇ ଜେଲ ହାଜତରେ ଥାଏ । ଜାମିନରେ ଛାଡ଼ ଦେବାକୁ ରାୟ ବାହାଦୁର ମାଜିଷ୍ଟ୍ରେଟ କୋର୍ଟରେ ଆବେଦନ କଲେ । କିନ୍ତୁ ଖୁଣୀ ଆସାମୀ ବୋଲି ତାକୁ ଜାମିନ ମିଳିଲା ନାହିଁ । ଉପର କୋର୍ଟରେ ଦରଖାସ୍ତ ଦିଆଗଲା । ରାୟ ବାହାଦୂର ନିଜେ ତାର ଓକିଲ ଥିବାରୁ ଜାମିନ ମିଳିଲା । ଜେଲ ହାଜତରୁ ଛାଡ଼ ପାଇ ସେ ଆସି ରାୟ ବାହାଦୂରଙ୍କ କଟକ ଘରେ ରହିଲା । ସେସନ ଜଜ୍ କୋର୍ଟକୁ ମକଦ୍ଦମା ବିଚାର ପାଇଁ ଗଲା ଏବଂ ତିନବର୍ଷ କାଳ ବିଚାର ଚାଲିଲା ।

ସୋବନା ଘରୁ ପୋଲିସ ପାଇଥିବା ଅଳଙ୍କାର ଗୁଡ଼ିକ ଲାବଣ୍ୟ ଦେବୀଙ୍କର ବୋଲି ପ୍ରମାଣିତ ହୋଇ ପାରିଲା ନାହିଁ । ପୁଣି ମୃତ୍ୟୁପୂର୍ବରୁ ଲାବଣ୍ୟ ଦେବୀ ସେଗୁଡ଼ିକ ପିନ୍ଧିଥିଲେ, ଏହାର ସଠିକ ପ୍ରମାଣ ପୋଲିସ ତରଫରୁ କୋର୍ଟରେ ଦାଖଲ ହୋଇ ପାରିଲା ନାହିଁ । ପୋଖରୀ ଭିତରୁ ମିଳିଥିବା କଟୁରୀ ଓ ସାବଲ ରାୟ ବାହାଦୂର-ଘରର ଏବଂ ମଧୁସୂଦନ ପୁର ଗ୍ରାମରେ ଥିଲାବେଳେ ସୋବନା ଯେ ତାହା ବ୍ୟବହାର କରୁଥିଲା, ଏକଥା ମଧ୍ୟ ପ୍ରମାଣ ହୋଇ ପାରିଲା ନାହିଁ । ଲାବଣ୍ୟଦେବୀଙ୍କୁ ସୋବନା ମାରି ପକାଇ ଥିଲା ଏହାର ପ୍ରତ୍ୟକ୍ଷ ପ୍ରମାଣ କିଛି ମାତ୍ର ମିଳି ପାରିଲା ନାହିଁ ତେଣେ ସଫେଇ ସାକ୍ଷୀ ଦ୍ୱାରା ପ୍ରମାଣ କରାଗଲା ଯେ ଘଟଣା ଦିନ ସୋବନା ମଧୁସୂଦନ ପୁରରେ ନଥିଲା । ଲାସକୁ ଯେଉଁ ଡାକ୍ତର ପରୀକ୍ଷା କରି ରିପୋର୍ଟ ଦେଇଥିଲେ, ତାଙ୍କୁ ଯେରା କଲାରୁ ସେ ମଧ୍ୟ ନିଜ ରିପୋର୍ଟକୁ ଓଲଟ ପାଲଟ କରିଦେଲେ ।

ଧାନ କୋଠୀର କବାଟଟା ଭିତରୁ ଧାନର ଚାପ ସମ୍ଭାଳି ନପାରି ଦୈବାତ ଭାଙ୍ଗି ଯିବାରୁ ବହୁ ପରିମାଣରେ ଚୁନାଧାନ ବାହାର ପଟେ

କୋଠିକୁ ଲଗି ବସି ରହିଥିବା ଦୁର୍ବଳ-ଶରୀରା ଲାବଣ୍ୟ ଦେବୀଙ୍କ ଉପରକୁ ହଠାତ ଅଜାଡ଼ି ହୋଇ ପଡ଼ିବାରୁ ସେ ପଡ଼ିଗଲେ ଏବଂ ଉଠି ପାରିଲେ ନାହିଁ । ଏଣୁ ଆକସ୍ମିକ ଭାବେ ତାଙ୍କର ମୃତ୍ୟୁ ହେଲ, ଏଇ ସିଦ୍ଧାନ୍ତରେ ପହଞ୍ଚି ଜଜ୍ ସାହେବ ତାଙ୍କ ରାୟ ଶୁଣାଇ ଦେଲେ । ସୋବନା ଖାଣ୍ଡୁଣୀ କେସରୁ ନିର୍ଦ୍ଦୋଷରେ ଖଲସ ହେଲା । କେଳା କୁହୁକ-ବିଦ୍ୟା ଖେଳିଲା ପରି ଓକିଲ ମାନେ ବିଚାରପତି ମାନଙ୍କୁ ପୁରାପୁରି ଏପଟ ସେପଟ କରାଇ ଦେଇପାରନ୍ତି । ଲୋକେ କହିବେ—ଏଉଟା ସତ, ସେଉଟା ମିଛ । ମାତ୍ର ପ୍ରମାଣ ଅଭାବରୁ ସତଟା ମିଛ ଓ ମିଛଟା ସତ ହୋଇଯାଏ ।

ଆଇନ କହେ—ଦୋଷୀ ବରଂ ପ୍ରମାଣ ଅଭାବରୁ ମୁକ୍ତି ପାଇ ଯାଉ, କିନ୍ତୁ କୌଣସି ନିରପରାଧ ବ୍ୟକ୍ତି ଯେପରି ଦଣ୍ଡ ନପାଏ ।

× × ×

'ଲାବଣ୍ୟ ଦେବୀ-ହତ୍ୟା' ମକଦ୍ଦମାରେ ପୋଲିସଙ୍କୁ ସାହାଯ୍ୟ କରୁଥିଲେ ଶଶିବାବୁ ଓକିଲ । ଜଜ ସାହେବ ରାୟ ଦେଲା ପରେ ସେ ଏକାବେଳକେ ନିରାଶ ହୋଇ ପଡ଼ିଲେ । ମନକୁ ମନ ସେ ପ୍ରଶ୍ନ କରୁଥାଆନ୍ତି ଏବଂ ଉତ୍ତର ଦେଉ ଥାଆନ୍ତି—ଲାବଣ୍ୟଦେବୀଙ୍କୁ ସତକୁ ସତ ମାରିଲା କିଏ ? ସୋବନା ନା ନକୁଳବାବୁ ନିଜେ ? ନିଜେହିଁ ରାୟ ସାହେବ ନିଜ ସ୍ତ୍ରୀଙ୍କୁ ସୋବନା ଦ୍ୱାରା ମରାଇ ଦେଲେ ? କିନ୍ତୁ ବିଚାରାଳୟରେ ତାଙ୍କ ବିରୁଦ୍ଧରେ କେହି କିଛି ଅଭିଯୋଗ କଲାନାହିଁ କି ସେ କିଛି ଦଣ୍ଡ ପାଇ ପାରିଲେ ନାହିଁ । ଭଗବାନଙ୍କ ଦରବାରରେ ନରହନ୍ତାତ କୌଣସି ଶାସ୍ତି ପାଇ ପାରିଲା ନାହିଁ ହେ ?

—ଲାବଣ୍ୟ ଦେବୀ ଭ୍ରଷ୍ଟା ବୋଲି ଧରି ସ୍ୱୀକାର କଲି । କିନ୍ତୁ ତାଙ୍କୁ ଚରିତ୍ରହୀନା ଓ ଭ୍ରଷ୍ଟା ଆସନକୁ ଠେଲି ପେଲି ନେଇଗଲା କିଏ ? ନିଜେ ଚରିତ୍ର ହରାଇ ଶାଳୀ ସୁବର୍ଣ୍ଣଦେବୀଙ୍କୁ ଯେଉଁ ରକ୍ଷିତା ସ୍ତ୍ରୀ ଭାବେ ଉପଭୋଗ କଲାରୁ ସିନା ବୁଭୁକ୍ଷିତା ହୋଇ ଲାବଣ୍ୟଦେବୀ ଚରିତ୍ର ହରାଇ ବସିଲେ ?

ବୁଭୁକ୍ଷିତଃ କିଂ ନକରୋତି ପାପଂ ।

ନିଜକୃତ ପାପପାଇଁ ତ ଲବଣ୍ୟ ଦେବୀ କୌଣସି ପ୍ରକାରେ ଦାୟୀ ନୁହଁନ୍ତି ! ତେବେ ସେ ମଲେ କାହିଁକି ? ଆଉ ତାଙ୍କୁ ଏ ସ୍ୱପ୍ନ ସାହେବ ମରାଇଦେଲେ କାହିଁକି ? ଏଙ୍କର ଏ ଗୁରୁତର ଅପରାଧର ଉଚିତ ବିଚାର ହେବ କେଉଁ ଅଦାଲତରେ ?

ଶଶିବାବୁ ଏକୁଟିଆ ଘରେ ନିର୍ଭୃତରେ ବସି ରହି ଏହିଭଳି ଭାବି ହେଉଚନ୍ତି । ଲବଣ୍ୟଦେବୀଙ୍କ ସାନ ପିଲାଟି ଆସି ତାଙ୍କ ଚଉକିକୁ ଲାଗି ଛିଡ଼ା ହେଉଚି ଏବଂ ଧୀର ସ୍ୱରରେ ବୋଉ, ହେ ବୋଉ ତୁମେ କୁଆଡ଼େ ଗଲ ? ପିଉସା, ପିଉସା ମ, ମୋ ବୋଉଙ୍କୁ କିଏ ମାରି ପକାଇଲା ? କାହିଁକି ମାରିଲା ସେ ?

ଶଶିବାବୁ ନିଜକୁ ନିଜେ କହୁଚନ୍ତି—ଏ ପିଲାକୁ କଅଣ ସେ ଜବାବ ଦେବେ ? ତାର ଶେଷ ଅବଲମ୍ବନ 'ବୋଉ' ମରିଯାଇଛନ୍ତି, ତାକୁ ଛାଡ଼ିଦେଇ । ସେ ନିଜେ ତାର ଜନ୍ମ କଲା ବାପ ହୋଇ ନିଜର ପରିଚୟ ଦେଇ ପାରୁ ନାହାନ୍ତି । ଏ ଦୁନିଆରେ ଏ ପିଲାଟିର କିଏ କୁଆଡ଼େ ଅଛି ଆପଣାର ? ସ୍ୱପ୍ନ ସାହେବ କୋର୍ଟ କଚେରୀରେ ଜବାବ ଦେଇ ସାରିଚନ୍ତି—ଏପିଲା ତାଙ୍କର ପିଲା ନୁହେଁ ବୋଲି । ଲବଣ୍ୟଦେବୀଙ୍କ ଗର୍ଭ ବାଟ ଦେଇ ଏ ପିଲାକୁ କେହି ତ ଦେଲେ ପୁରୁଷ ସଂସାରକୁ ଆଣିଚି ! ଆଇନ ଯାହା କହୁନା କାହିଁକି ଏ ପିଲା ପରି ଅନେକ ପିଲାତ ଅଛନ୍ତି ଏ ସଂସାରରେ ! ସେମାନେ କଅଣ ଏ ସଂସାରର ପିଲା ନୁହଁ, ନା ଏ ଜନ୍ମ ମାଟି ସେମାନଙ୍କର ମାଆ ନୁହଁ ? ଏ ଆକାଶ ତଳେ ଜନ୍ମ ଲଭି କରି ସେମାନଙ୍କର ତେବେ କଅଣ ଏ ବାୟୁ ମଣ୍ଡଳରୁ ବାୟୁ ସେବନ, ଭୂମି ଉପରୁ ଜଳ ଗ୍ରହଣ, ଏବଂ ଖାଦ୍ୟ ସଂଗ୍ରହ କରି ନେବାର ଅଧିକାର ନାହିଁ ?

—ଏ ବାଳକର ଅଭିଭାବକ ମୁଁହେଲି । ମୁଁଇ ତାର ରକ୍ଷାକାରୀ ଓ ପ୍ରତିପାଳକ । ମୁଁଇ ତାକୁ ମଣିଷ କରିବି । ଲବଣ୍ୟ ଦେବୀ ବଞ୍ଚି ଥିବା ଯାକେ ସେ ଥିଲେ ତାଆର ମହାଜିସ୍ । ତାଙ୍କ ପରେ ମୁଁଇ ସେ

ସ୍ଥାନ ଏବଂ ତାଙ୍କ ଦାୟିତ୍ୱ ଗ୍ରହଣ କରିନେଲି । ମୁଁ ହେଲି ଏ ନାବାଳକ ସନ୍ତାନର ଓକିଲ ମହାଫିସ୍ ।

ସେଇ ଅନୁସାରେ ଶଶିବାବୁ ରାୟ ସାହେବଙ୍କ ନାମରେ ଲାବଣ୍ୟ ଦେବୀ ଦାଏର କରିଥିବା ନମ୍ବରୀ ମକଦ୍ଦମାରେ ନିଜକୁ ମହାଫିସ କରାଇ ନେଲେ । ପୂର୍ବପରି ସେ ମକଦ୍ଦମା ଚାଲିଲା ଏବଂ ପିଲାଟି ତାଙ୍କର ଘରେ ରହିଗଲା ।

ଶଶିବାବୁଙ୍କର ସ୍ତ୍ରୀ ମରିଯାଇ ତାଙ୍କୁ ଏ ସଂସାରରେ ଏକୁଟିଆ କରି ଯାଇଥିଲେ । ତା'ପରେ ପୁରୀଠାରେ ଦେଖାହେଲା ଲାବଣ୍ୟଦେବୀଙ୍କ ସହିତ । ସେ ଏଙ୍କୁ ଆପଣାର କରିନେଇ ଥିଲେ । ସେଏବ ଗଲେ ବିଦାୟ ନେଇ । କୋଣାର୍କ ମନ୍ଦିର ପାଖ ଡାକ ବଙ୍ଗଳା ଉପରେ ଦୁଇଟି ଆରାମ ଚଉକିରେ ବସି ସେମାନେ ଦି ଜଣ ପୁରୁଷ ନାରୀ ସେଦିନ ସଞ୍ଜବେଳେ ଯେଉଁ କଥାବାର୍ତ୍ତା ହୋଇଥିଲେ, ସେ ସବୁ ଆଜି ଶଶିବାବୁଙ୍କ ଅନ୍ତରକୁ ବିଦାରି ପକାଉଥାଏ । ସେ ଭାବୁ ଥାଆନ୍ତି—ସଂସାରଟା ହେଲା ଏଇଆ । କାଳ-ସ୍ରୋତ ଉପରେ ଭାସି ଭାସି ସମୁଦ୍ର ଆଡ଼କୁ ଚାଲି ଯାଉଥିବା କାଠି କୁଟା ପରି, କିଏ କେତେବେଳେ କାହା ସାଙ୍ଗରେ ଏକାଠି ହୋଇ ଯାଏ, କିଏ ପୁଣି କେତେବେଳେ ଛାଡ଼ଛୁଡ଼ି ଦୂରକୁ ଚାଲି ଯାଏ, କେଉଁ ଖଣ୍ଡିକ ଅବା ଅନ୍ୟ କାହା ସଙ୍ଗରେ ମିଶିଯାଏ, ତାର ହିସାବ ରଖେ ଏକମାତ୍ର କାଳ-ସ୍ରୋତ ।

× + ×

'ଲାବଣ୍ୟଦେବୀ-ହତ୍ୟା' ମାମଲାର ରାୟ ବାହାରିଲା ପରେ ଦିନେ ସଞ୍ଜବେଳକୁ ରାୟ ସାହେବ ନକୁଳ ଚନ୍ଦ୍ର ଚଉଧୁରୀ ନିଜର ବୈଠକ ଖାନା ଘରେ ଆରାମ ଚଉକିରେ ବସି ଆରାମ କରୁଥାନ୍ତି । ଦୁଆର ମୁହଁକୁ ମୋଟା ପରଦାଟାଏ ଝୁଲୁଛି । ଚତୁର୍ଦ୍ଦିଗ ଅନ୍ଧକାର । ଭିତରେ ଆଲୁଅ ଜଳୁଛି । ଧୀରେ ଧୀରେ ପରଦାକୁ ଆଡ଼େଇ ଦେଇ ଭିତରକୁ

ପଶି ଆସିଲେ ତିନିଜଣ ଲୋକ—ଆଗେ ପଶି ଆସିଲା ସୋବନାର ବୁଢ଼ା ବାପା । ମେଜଆ ଉପରେ ଲମ୍ବ ହୋଇ ମୁଣ୍ଡିଆ ଟାଏ ପକାଇ ସେ ବସି ପଡ଼ିଲା ।

ରପ୍ଟୁ ସାହେବ ପଚାରିଲେ—କିରେ ଖେବନା, ତୁ କୁଆଡ଼େ ?

ଖେବନା—ଆଜ୍ଞା, ହଜୁର ମାଆ ବାପ୍ । ଆସିଲି ଦର୍ଶନ କରିବାକୁ । ମୋ ସୋବନାକୁ ଆପଣ ବଞ୍ଚାଇଲେ । ହେଇଟି ଏ ବୋହୂଟା ଆସିଚି ମୁଣ୍ଡିଆ ମାରିବାକୁ । ସୋବନା ଯୋଉ କାମ କରିଥିଲା, ସେଥିରେ ତାକୁ ନିଶ୍ଚେ ଫାଶିହୋଇ ଥାଆନ୍ତା । ହଜୁର ବଡ଼ ଲୋକ, ତାକୁ ବଞ୍ଚାଇ ଦେଲେ । ହେଇଟି ଏ ହୋହୂଟା ଆସିଚି ।

ଧୀରେ ଧୀରେ ସୋବନାର ଭୁଆସୁଣୀ ବୋହୂଟି ଓଢଣା ତଳେ ମୁହଁ ଲୁଚାଇ ରପ୍ଟୁ ସାହେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ଏବଂ ଦି ହାତକୁ ଯୋଡ଼ି କହିଲା—ହଜୁରୁ ମତେ ବିଧବା ହେବାରୁ ବଞ୍ଚାଇ ଦେଇଚନ୍ତି । ମୁଁ ଆପଣଙ୍କର ଗରିବ ଝିଅଟିଏ । ମୋତେ ଆପଣ ରକ୍ଷା କରନ୍ତୁ । ପୁଲିସ ଆମଘରୁ ଯୋଉ ଅଳଙ୍କାରତକ ଧରିଚି, ତାକୁ ଆପଣ ନିଅନ୍ତୁ । ସେ ପାପ ଧନକୁ ମୁଁ ଗ୍ରହଣ କରି ପାରିବି ନାହିଁ । ମୋ ସ୍ୱାମୀକୁ ଛାଡ଼ି ଦିଅନ୍ତୁ । ମୁଁ ତାକୁ ଗାଁକୁ ନେଇଯିବି । ଚଷ ବସ୍ତ କରି ଦିନ କଟାଇବ ପଛକେ, ସେ ଆଉ ଆପଣଙ୍କ ଘରେ ଚାକିରି କରି ରହି ପାରିବ ନାହିଁ । ଗାଁ ଲୋକେ ତାକୁ ଛି ଛାକର କରୁଚନ୍ତି । ଦାଣ୍ଡ ଘାଟରେ ଆମେ ମୁଣ୍ଡଟେକି ଚାଲି ପାରୁନାହୁଁ ।

ତା ପଛକୁ ଆସିଲି—ସୋବନା ନିଜେ । ସେଏବି ମୁଣ୍ଡିଆଟା ମାରି କହିଲି—ମୁଁ ଚବ ସାଅନ୍ତ, ଗାଁକୁ ଚାଲିଯିବି । ଯମ ମତେ ନେଇ ଫାଶିଦେବାକୁ ବସିଥିଲି । ଭାଗ୍ୟ ବଳରୁ ବଞ୍ଚିଗଲି । ଯେତିକ ଗଙ୍ଗାଗଲି ସେତିକ ଫଳ ପାଇଲି ।

ରପ୍ଟୁସାହେବ—ତୁ କଆଁ ଏତେ ବ୍ୟସ୍ତ ହେଉଚୁରେ ସୋବନା ? ତୋର କଅଣ ହୋଇଗଲି ? ତୁ କଅଣ କରିଚୁକି ?

ସୋବନା ସଳଖ ହୋଇ ଠିଆ ହୋଇଗଲା । ଏବଂ ହାତ ଦୁଇଟାକୁ ଯୋଡ଼ିଦେଇ ଜଳ ଜଳ କରି ଚାହିଁରହିଲା—ରାୟବାହାଦୁରଙ୍କ ମୁହଁ ଆଡ଼କୁ ।

ଅପରାଧୀର ଆଖି । ଲାଲ ଟହ ଟହ ଦିଶୁଚି ଏବେବି । ଆଇନ ଅଦାଲତ ତାକୁ ଛାଡ଼ି ଦେଲେବି, ତା ବିବେକ ଅଦାଲତ ତାକୁ ଛାଡ଼ି ଦେବାକୁ ନାରାଜ । ଘାତକର ମୁଖ ମଣ୍ଡଳ । ନିଆପରି ଜଳୁଚି—ଅନୁତାପ ବହ୍ନିରେ ଦଗ୍ଧ ହୋଇ । ତା ମୁହଁ ଆଡ଼କୁ ସଳଖହୋଇ ଚାହିଁ ରହିପାରୁ-ନାହାନ୍ତି—ରାୟବାହାଦୁର ନକୁଳ ଚଉଧୁରୀ । ତା ଆଡ଼କୁ ଅନାଇଦେଲା ବେଳକୁ ଏଙ୍କ ମୁହଁ ତଳକୁ ଢଳିପଡ଼ୁଚି । ଛାତି ଦୁଲୁକି ଉଠୁଚି । କଲିଜା ଥରିଯାଉଚି ଥର ଥର ହୋଇ । ମଣିଷକୁ ମାରିଚି ଏଇ ନର ରାକ୍ଷସ । ଲାବଣ୍ୟ ଦେବୀର ଗଳାଚିପିଦେଇ ମାରିପକାଇଚି ଇଆରି ହାତର ଆଙ୍ଗୁଠି ଗୁଡ଼ାକ ।

ରାୟସାହେବ ଭୟରେ ଉଠିପଡ଼ି ଛିଡ଼ା ହୋଇଗଲେ ଏବଂ ଧୀରେ ଧୀରେ ପାଖଘର ଭିତରକୁ ପଶିଯାଇ ଭିତରପଟୁ କବାଟ କିଳିଦେଲେ । ଭିତରପଟୁ ଅନ୍ୟ ଜଣେ ଚାକରକୁ ଡାକି ହୁକୁମ ଦେଲେ ଯାଆରେ ଅର୍ଜୁନା, ସୋବନା ବାପକୁ କହିଦେବୁ—ବାବୁଙ୍କ ସଙ୍ଗରେ ଆଜି ଆଉ କଥାବାର୍ତ୍ତା ହୋଇପାରିବ ନାହିଁ । ତୁମେ ସବୁ ଯାଅ । ପରେ ଆସିବ ।

ବାବୁଙ୍କ ହୁକୁମକୁ ଅର୍ଜୁନା ଆସି ଶୁଣାଇ ଦେଲାରୁ ସେମାନେ ବୈଠକଖାନା ଛାଡ଼ି ଚାଲିଗଲେ ।

ଶୋଇଲା ଘର ଭିତରକୁ ପଶିଯାଇ ବାବୁ ପଲଙ୍କ ଉପରେ ଲମ୍ବହୋଇ ଶୋଇପଡ଼ିଲେ । ଏ ଖବର ପାଇଲେ ସୁବର୍ଣ୍ଣଦେବୀ । ଧୀରେ ଧୀରେ ସେ ଉକ୍ତ ଘରଭିତକୁ ପାଦ ପକାଇ ଚାଲି ଚାଲି ଆସିଲେ । କ୍ଷୀଣ ଆଲୁଅ ଜଳୁଚି ଏବଂ ଘରଭିତରଟା ଅଧା ଆଲୁଅ ଓ ଅଧା ଅନ୍ଧାର ଦେଖାଯାଉଚି । ସୁବର୍ଣ୍ଣଦେବୀ ଧୀରେ ଧୀରେ ଆସି ପଲଙ୍କକୁ ଲାଗି

ଛୁଡ଼ା ହୋଇଗଲେ । ହିନ୍ଦି ମୁହଁ ତାଙ୍କର ଅସ୍ପଷ୍ଟ ଦିଶୁଛି । ଲାବଣ୍ୟଦେବୀ ଓ ସୁବର୍ଣ୍ଣଦେବୀ—ଚେହେରା ଓ ଆକାର ପ୍ରକାରରେ ଦି ଭଉଣୀ ଯାକ ପ୍ରାୟ ଏକ ପ୍ରକାରର । ସାମାନ୍ୟ କିଛି ତଫାତ ମାତ୍ର ।

ଚିହ୍ନିଁ ଉଠିଲେ ନକୁଳବାବୁ—ଭୟରେ ଓ ଆତଙ୍କରେ । ସେ ବସିପଡ଼ି କହିଉଠିଲେ—କିଏ, କିଏ ତୁ, ଏଁ କିଏରେ ତୁ ?

ତାଙ୍କ ମନଭିତରେ ଭୂତ ବିରାଜମାନ କରିଚି । ପାଗଳପରି ସେ କଅଣ ନାଇଁ କଅଣ ଭାବି ହେଉଛନ୍ତି । ସେ ଭାବିଲେ—ଇଏ ନିଶ୍ଚେ ଲାବଣ୍ୟର ଭୂତ । ହଠାତ୍ ତାଙ୍କୁ ଆକ୍ରମଣ କରିବାକୁ ଘରଭିତରକୁ ପଶିଆସିଲା । ଅପରାଧୀ ନରହନ୍ତାର ମନ ତା ଆତଙ୍କରେ କୁଙ୍କୁରି ଉଠୁଚି । ବାହାରେ ସେ ନିଜକୁ ଯେତେଇଚ୍ଛା ତେତେ ସାଧୁସନ୍ଥ ବୋଲି ପ୍ରମାଣିତ କଲେ ବି, ତାଙ୍କର ନିଜ ମନ ନିଜକୁ ଅପରାଧୀ ବୋଲି ବାରମ୍ବାର ପ୍ରମାଣ କରିଦେଉଚି ଯେ !

ହଠାତ୍ ତାଙ୍କ ହାତଟାକୁ ଧରିପକାଇ ସୁବର୍ଣ୍ଣ କହି ଉଠିଲେ—କଅଣ, କଅଣ, କାହିଁକି ତୁମେ ଏମିତି ହଉଚ ? ମୁଁ ପରି ! ଚିହ୍ନିପାରୁ ନାହିଁ ? ତୁମେ କଅଣ ନିଦରେ ଶୋଇପଡ଼ିଥିଲ ଯେ ସ୍ୱପ୍ନ ଦେଖି ବାଉଳି ଗୁଉଳି ହୋଇ ଉଠୁଚ ?

ସୁବର୍ଣ୍ଣ ତାଙ୍କ ଛାତିରେ ହାତ ମାରିଦେଲେ । ଦେଖିଲେ ଦୁଲ୍ ଦୁଲ୍ ପଡ଼ୁଚି ଭିତରଟା । ସୁବର୍ଣ୍ଣଦେବୀ ଠିକ୍ ଭାବରେ ଜାଣିଚନ୍ତି ଯେ ନାନାଙ୍କୁ ଏଇ ରାମୁସାହେବ ଯୋବନା ହାତରେ ମରାଇ ଦେଇଚନ୍ତି । ମନକୁ ମନ ସେ ନିଜକୁ ନିଜେ କହିହେଉଚନ୍ତି—ଏଙ୍କୁ ଆଉ ବିଶ୍ୱାସ ନାହିଁ । ଯେତେ ଯାହା ହଉନା କାହିଁକି, ସେଇ ମୋ ଭଉଣୀକୁ ମାରିଚନ୍ତି । ମତେ ମାରି ଦେବାକୁ ଆଉ କେତେ ଦିନ ବାକି ? ଏଙ୍କୁ କେବେ ହେଲେ ବିଶ୍ୱାସ ନାହିଁରେ ବାପା ।

× × × ×

ନାନୀ ମଲାପରେ ସୁବର୍ଣ୍ଣଦେବୀଙ୍କ ମନ ହଠାତ୍ ବଦଳି ଯାଇଚି । ନିଜର ଦୁର୍ବଳତାରୁ ନାନୀଙ୍କପ୍ରତି ତାଙ୍କର ଶତ୍ରୁଭାବ ଜାତ ହୋଇଥିଲା ମାତ୍ର ନାନୀଙ୍କ ମୃତ୍ୟୁପରେ ଏଙ୍କ ମନଟା ଓଲଟପାଲଟ ହୋଇଯାଇଚି ।

ଅଖି ଆଗରେ ବାପାଗଲେ, ବୋଉଗଲେ । ହାତଧରି ବାଘ ହୋଇଥିଲେ ଯାହାକୁ, ସେ ଏକରକମ ଆତ୍ମହତ୍ୟା କଲେ । ଚରିତ୍ରଗତ ଦୁର୍ବଳତାରୁ ଭିଣୋଇଙ୍କ ସଙ୍ଗରେ ଅବୈଧ ପ୍ରଣୟ । ମକଦ୍ଦମ ଚାଇନ ମଧ୍ୟ ଏଇ ଦୁର୍ବଳତାର ସୁଯୋଗ ନେଇ କେତେ କେତେ ସୁଖ ସମ୍ଭୋଗ କରିଯାଇ ନାହାନ୍ତି ! ରାୟସାହେବଙ୍କ ଆଉ ଅବୈଧ ସନ୍ତାନ ଜାତ ହେଲା । ଦୁନିଆ ଦାଣ୍ଡରେ ସେ ପିଲାଟିକୁ ନିଜେ ଜନ୍ମ କରିଥିବା ପିଲା ବୋଲି କହିବାର ଉପାୟ ନାହିଁ । ନିଜର ମାତୃତ୍ୱ ଅପମାନିତ ହେଉଚି । ଘରଦ୍ୱାର ଓ ସମ୍ପତ୍ତିବାଡ଼ି ନଷ୍ଟଭ୍ରଷ୍ଟ ହୋଇ ଯାଉଚି । ଭଗଗୁଣୀଏ ଗୃହ ଜମିତକ ଦଖଲ କରିଯାଉଛନ୍ତି । ସେଠା ଗୁମାସ୍ତା ଓ ମୋହରିରମାନେ ନିଜେ ନିଜେ ସର୍ବେସର୍ବା ହୋଇ ବସିଲେଣି । ଏଠା କଥା ସାଙ୍ଗାତିକ । ନାନୀ କେବଳ ତାଙ୍କର ପାଇଁ ରାୟସାହେବଙ୍କ ଠାରୁ ନିର୍ବାସିତା ହୋଇ ରହିଥିଲେ । ଏବଂ ଶେଷକୁ ତାଙ୍କୁହିଁ ମରାଇଦେଲେ ରାୟସାହେବ ନିଜେ । ଯେତେ ଆପଣାର କଲେ ସୁଦ୍ଧା ସେ ଜଣେ ନରହନ୍ତା ମାତ୍ର । ରାକ୍ଷସ ସେ; ମଣିଷମାରୁ ସଇତାନ୍ । ତାଙ୍କୁ ବିଶ୍ୱାସ ନାହିଁ ।

ଏହିଭଳି ଭାବ ଭାବି ସୁବର୍ଣ୍ଣମୟୀ ସବୁବେଳେ ବିବ୍ରତ ହେବାକୁ ଲାଗିଲେ । ଭାବିଲେ—ହୁଏତ କୌଣସି ସମୟରେ ତାଙ୍କୁ ବି ଏଇ ରାୟ-ସାହେବ ମାରିଦେବାକୁ ଲେଶମାତ୍ର କୁଣ୍ଠିତ ହେବେ ନାହିଁ ।

ତାଙ୍କ ସହିତ ସମ୍ପର୍କ ରଖିବା ପରେ ସୁବର୍ଣ୍ଣଦେବୀ ଗୋଟିଏ ପୁଅ ଜନ୍ମ କରିଛନ୍ତି । ପାଳିତ ପୁତ୍ର ବୋଲି ନକୁଳବାବୁ ତାଙ୍କୁ ଏ ସମାଜରେ ପରିଚିତ କରାଉଛନ୍ତି । ବର୍ଷ ବର୍ଷ ଧରି ଗୁଲିଥିବା ମକଦ୍ଦମା ଗୁଡ଼ିକର ଭବିଷ୍ୟତ ସମ୍ପୂର୍ଣ୍ଣ ଅନିଶ୍ଚିତ । ହୁଏତ ସେ ପିଲାଟି ଦିନେ ଶୂନ୍ୟହସ୍ତରେ ନିଃସ୍ୱ ବୋଲି ଦାଣ୍ଡରେ ଛିଡ଼ା ହୋଇଯିବ । ବାପ ନାହିଁ ସମାଜ ନାହିଁ କି ସମ୍ମାନ ନାହିଁ । ସମୁଦ୍ରରେ ଭସିଲା ପରି ଭାସି ବୁଲୁଚି

ସେ—ସମ୍ପୂର୍ଣ୍ଣ ନିଃସହାୟ ଭାବେ । ହୁଏତ କିଛି ଦିନ ପରେ ଏଇ ରାୟସାହେବ ତାଙ୍କୁ ବି ସ୍ୱଚ୍ଛନ୍ଦରେ ଏ ଦୁନିଆରୁ ବିଦାୟ କରିଦେଇ ସାଧୁ ବୋଲି ନିଜକୁ ପ୍ରମାଣିତ କରାଇନେବେ । ନରହନ୍ତାକୁ ବିଶ୍ୱାସ କରିବା ଭୁଲ ।

ଏହିପରି ନିତାନ୍ତ ଏକୁଟିଆ ହୋଇପଡ଼ି ସୁବର୍ଣ୍ଣ ମନେ ପକାଇଲେ ଦାସୀ ମେନକାକୁ । ଜୀବନର ସବୁ ଭଲମନ୍ଦ, ପାପପୁଣ୍ୟର ସାକ୍ଷୀରୂପେ ଏବେ ବି ଏଇ ଘରେ ପଡ଼ି ରହିଛି ମେନକା ଗୃକରାଣୀ । ସଂସାରର ବାରଶହ ପ୍ରକାର ଘଣ୍ଟାଚକଟା ଭିତରେ ଚକଟି ମନ୍ଥି ହୋଇ ମେନକାକୁ ସେ ଏକପ୍ରକାର ଭୁଲି ଯାଇଥିଲେ । ସିଏବି ନାନୀ ଆଜ୍ଞାଙ୍କର ଏପରି ଓଲଟ ପାଲଟ ଭିତରେ ବଳେ ପଶି ମାମଲତି କରିବା ଲାଗି ଆଗେଇ ଆସିନାହିଁ । ଦାସୀ ହେଲେ ବି ସେ ବୁଦ୍ଧିମତୀ ଏବଂ ଚତୁରୀ ।

ଏଇଘରେ ସେ ଅଛି । କିନ୍ତୁ ଦୂରେଇ ଦୂରେଇ ଚାଲୁଛି । ସୁବର୍ଣ୍ଣ ଜଣେ କାହାକୁ ବରାଦଦେଲେ—ମେନକାକୁ ଡାକିଦେ ।

ପାଖକୁ ଆସି ମେନକା ଧୀର-ସ୍ୱରରେ ପଚାରିଲା—କଅଣ କହୁଛନ୍ତି, ନାନୀ ଆଜ୍ଞା ?

ତାକୁ ନିଭୃତକୁ ଡାକିନେଇ ସୁବର୍ଣ୍ଣ କହିଲେ—ତୁଉତ ମୋର ସବୁ କଥାରେ ସାହାଯ୍ୟକାରୀ । ମୁଁ ଏବେ ଦେଖୁଛି ଅତି ବଡ଼ ବିପଦରେ ପଡ଼ି ଯାଇଛି । ରାୟସାହେବଙ୍କୁ ଆଉ ମୋର ବିଶ୍ୱାସ ନାହିଁ । ନାନୀଙ୍କି ସେ ମରାଇଲେ । ମୋତେଡ ମାରି ଦେବାକୁ କେତେବେଳ ଲାଗିବ ? ମୁଁ ମଲେ ମୋ ପିଲାଟିର ଭାଗ୍ୟ କଅଣ ହେବ ?

ସୁବର୍ଣ୍ଣ କାନ୍ଦି ଉଠିଲେ ।

ମେନକା ତାଙ୍କୁ ନିଜ ଛାତି ଉପରକୁ ଆଉଜାଇ ନେଇ ତାଙ୍କ ଆଖି ଦୁଇଟିକୁ ନିଜ ପଣତକାନିରେ ପୋଛି ଦେଇ ଦେଇ କହି ଉଠିଲା—ମୁଁ ବଞ୍ଚିଥିବା ଯାଏ ତୁମର ଆଜ୍ଞା, କିଛି କେହି ଅନିଷ୍ଟ କରି ପାରିବେ

ନାହିଁ ବୋଲି ଜାଣିରଖ । ମନେରଖ, ମେନା ବଞ୍ଚିଛି । ଜାଣିରଖ ଛାଇପରି ତୁମରି ପଛେ ପଛେ ମୁଁ ଘୁରି ବୁଲୁଛି । ଆପଣ ନିଶ୍ଚିନ୍ତ ହୁଅନ୍ତୁ । କଅଣ କରିବ ବରାଦ ଦିଅନ୍ତୁ ।

ସୁବର୍ଣ୍ଣ—ତୁ ଥରେ ମୋ ପାଖକୁ ପ୍ରିୟନାଥବାବୁଙ୍କୁ ଡାକ । ପ୍ରିୟନାଥ ଦାସ, ଡାକ୍ତର । କେହି ଯେମିତି କିଛି ଜାଣି ପାରିବେ ନାହିଁ ।

ମେନକା—ଆଜ୍ଞା ହଉ କାଲି ସଞ୍ଜ ପରେ ତାଙ୍କୁ ମୁଁ ଆପଣଙ୍କ ପାଖକୁ ଡାକି ଆଣିବି ବୋଲି ଭାବିଛି । କାଲି ସକାଳୁ ରାୟସାହେବ ଗାଁକୁ ବାହାରିଛନ୍ତି । କଚୁଆନକୁ ଡାକି ବରାଦ ଦେଇଛନ୍ତି—ଭୋର ଭୋର ଗାଡି ସଜ କରି ଆଣିବାକୁ ।

\+ \+ \+

ତହିଁଆର ଦିନ ଭୋର ଜଣେ ଚାକରକୁ ସଙ୍ଗରେ ନେଇ ରାୟସାହେବ ମଧୁସୂଦନ ପୁରକୁ ଚାଲିଗଲେ । ଲାବଣ୍ୟଦେବୀ ମରିଯିବା ପରଠାରୁ ସେଠାରେ ସବୁ କଥା ଗୋଳମାଳ ହୋଇ ଯାଇଛି । ଲୋକେ ସବୁକଥା ଜାଣିଗଲେଣି ଏବଂ ରାୟସାହେବଙ୍କୁ ଘୃଣା ଓ ଭୟ କରି ଯାଉଛନ୍ତି । ଏଙ୍କ ଘରକୁ ଗ୍ରାମବାସିଏ ଭୂତକୋଠି ପରି ମନେ କରୁଛନ୍ତି । ଅଧିକାଂଶ ଚାକର ବାକର ଛାଡ଼ି ପଳାଇଗଲେଣି । ଯେଉଁମାନେ ବା ପଡ଼ି ରହିଛନ୍ତି, ସେମାନେ ବି ଛାଡ଼ ଛାଡ଼ ଅବସ୍ଥାରେ ଅଛନ୍ତି ।

ସେଇଦିନ ସଞ୍ଜପରେ ସୁବର୍ଣ୍ଣଙ୍କ ଶୋଇଲା ଘର ଭିତରକୁ ମେନକା ଡାକି ଆଣିଲା—ଡାକ୍ତରବାବୁଙ୍କୁ ଡାକ୍ତର ପ୍ରିୟନାଥ ଦାସଙ୍କୁ । ଅନେକ ଦିନରୁ ସେ ବାବୁ ସୁବର୍ଣ୍ଣଦେବୀଙ୍କ ପରିଚିତ ଲୋକ । ଜଣାଶୁଣା ଭାବେ ହେଉ ବା ଅଜଣା ଭାବରେ ହେଉ, ସେ ବାବୁ ଏ ଘରକୁ ବହୁବାର ଆସିବାର ସୁଯୋଗ ପାଇଛନ୍ତି, ଏବଂ ସୁବର୍ଣ୍ଣ ଦେବୀଙ୍କୁ ବଡ଼ ବଡ଼ ବିପଦରୁ ସେଇ ରକ୍ଷା କରିଛନ୍ତି । ତାଙ୍କର ଅତି ବିଶ୍ୱାସୀ ଚିକିତ୍ସକ ହେଲେ ଏଇ ବାବୁ । ପ୍ରଥମେ ପ୍ରଥମେ ରାୟସାହେବ ତାଙ୍କୁ ସୁବର୍ଣ୍ଣଙ୍କ ଚିକିତ୍ସା ପାଇଁ ଡକାଉଥିଲେ । ତା'ପରେ ଥରକୁ ଥର

ଟେ ଆସିଲେ ଏବଂ ସୁବର୍ଣ୍ଣଦେବୀଙ୍କର ଅତି ବିଶ୍ୱାସୀ ବନ୍ଧୁଟିଏ ହୋଇ-ଗଲେ ।

ସୁବର୍ଣ୍ଣଦେବୀ ରାୟସାହେବଙ୍କ ସଂପର୍କରୁ ବାରମ୍ବାର ଗର୍ଭବତୀ ହୋଇ ପଡ଼ିଛନ୍ତି ଏବଂ ଏଇ ବାବୁହିଁ ତାଙ୍କୁ ସେ ବିପଦରୁ ମୁକ୍ତ କରିଛନ୍ତି । ଗର୍ଭପାତ ମହାପାପ ଏବଂ ଅସହ୍ୟ ଦୁଃଖ ଯନ୍ତ୍ରଣା ଦାୟକ । ପ୍ରିୟନାଥବାବୁ ରାୟସାହେବଙ୍କ ଠାରୁ ହଜାର ହଜାର ଟଙ୍କା ନେଇଛନ୍ତି ସତ; ମାତ୍ର ସୁବର୍ଣ୍ଣଦେବୀଙ୍କୁ ତାଙ୍କଛଡ଼ା ଅନ୍ୟ କିଏ ବଞ୍ଚାଇ ରଖି ପାରି ଥାଆନ୍ତା ?

ଡାକ୍ତର ପ୍ରିୟନାଥ ଦାସ । ତାଙ୍କ ପାଖରେ ସୁବର୍ଣ୍ଣଦେବୀଙ୍କର ଲୁଚାଛପା କଅଣ ଅଛି ? ହସି ହସି ଶୋଇଲା ଘର ଭିତରକୁ ପଶି ଆସନ୍ତି । ଖଟ ଉପରେ ବସିପଡ଼ି ରୋଗିଣୀଙ୍କ ବାହା ହାତ ପରୀକ୍ଷା କରନ୍ତି, ନାଡ଼ିଚିପନ୍ତି, ଛାତି ଉପରେ ଷ୍ଟେଥୋ ପକାଇ ଛାତି ଭିତରର ଦୁକ୍‌ଦୁକ ପରୀକ୍ଷା କରନ୍ତି । ଭ୍ରୂଣନଷ୍ଟ କରାଇବାକୁ ସେ ଆସନ୍ତି । ତାଙ୍କ ପାଖରେ ସୁବର୍ଣ୍ଣଙ୍କ ଶରୀର ଓ ମନର କେଉଁ କୋଣଟି ଅଜଣା ? ଏ ଘରେ ତାଙ୍କର ଗତି ଅବାଧ । ଦିନରାତି ଯେତେବେଳେ ଇଚ୍ଛା ସେତେବେଳେ ସେ ଆସି ଯାଆନ୍ତି । ନିଭୃତ କକ୍ଷ ମଧ୍ୟରେ ପଶି ସୁବର୍ଣ୍ଣଙ୍କ ପାଖରେ ବସି ଯାଆନ୍ତି । ହସି ହସି କଥାବାର୍ତ୍ତା ହୁଅନ୍ତି । ଏଇପରି ଅବାଧ ମିଳା ମିଶାରୁହିଁ ପ୍ରଣୟ ଓ ପାପର ଅଭିଯାନ ଅବାଧ ହୋଇ ପଡ଼ିଥାଏ ।

ସେଦିନ ସଞ୍ଜପରେ ଏକୁଟିଆ ଘରେ ସେ ଏବଂ ସୁବର୍ଣ୍ଣ ନିଭୃତରେ ବହୁତ ବିଷୟରେ କଥାବାର୍ତ୍ତା ହେଲେ । ଏବଂ ନକୁଳ ବାବୁ ନଥିବାରୁ ସୁବର୍ଣ୍ଣଙ୍କୁ ସାନ୍ତ୍ୱନା ଦେବାଲାଗି ତାଙ୍କର ଶୟନ କକ୍ଷରେ ରାତିଯାପନ କରିନେଲେ ।

ସେକାଳର ବଡ଼ ବଡ଼ ଘରେ ଏହିଭଳି ଘରେ ବଡ଼ ବଡ଼ ହାଣ୍ଡିସକାଣ୍ଡମାନ ଘଟିଯାଏ । ଚାକର ବାକର ସମସ୍ତେ ଦେଖନ୍ତି, ଶୁଣନ୍ତି ; ମାତ୍ର ନିଜ ନିଜ ଆଖିକାନକୁ ବୁଜି ଦିଅନ୍ତି । ସେମାନେ ଚାକର

କରୁଥିଲେ, ଖାଇବା ପିଇବା ଏବଂ ଦରମାପଣ ପାଇଁ । ମାତ୍ର ଏମାନଙ୍କ ଘରର ଭଲମନ୍ଦକୁ ଦେଖି ମତାମତ ଦେବାପାଇଁ ନୁହଁ । ପୁଣି ତାଙ୍କ ମତାମତକୁ ମାନନ୍ତା ବା କିଏ ?

ଡାକ୍ତର ପ୍ରିୟନାଥ ଦାସ । ଏଘରେ ବସାଉଠା, କଥାବାର୍ତ୍ତା, ତାଙ୍କର ସମ୍ପୂର୍ଣ୍ଣ ଅବାଧ ।

ସୁବର୍ଣ୍ଣ ତୁନି ତୁନି କହିଲେ—ସବୁ ତୁମେ ଜାଣ ଡାକ୍ତର । ରାୟସାହେବଙ୍କୁ ମୋର ଆଉ ବିଶ୍ୱାସ ନାହିଁ । ତୁମେ ମୋର ସବୁ । ଯାହା କରିବ କର ।

ଫୁସ୍ ଫୁସ୍ ହୋଇ ସୁବର୍ଣ୍ଣଙ୍କ କାନରେ ମୁହଁ ଲଗାଇ ଡାକ୍ତର ବାବୁ ଶୁଣାଇଦେଲେ—ନରହନ୍ତା ରାକ୍ଷସଟାକୁ ବିଶ୍ୱାସ ନାହିଁ । ତୁମକୁବି ଦିନେ ସେ ଶେଷ କରିଦେଇ ପାରେ ! କହିବ ତ, ମୁଁ ତାଙ୍କୁ ଶେଷ କରିଦିଏଁ । ଗୋଟିଏ ମଣିଷର ଜୀବନ ଆମପାଖରେ ଗୋଟାଏ ମାଛିମଶାର ଜୀବନ ସଙ୍ଗେ ସମ । ଦୁଇ ତିନି ଗ୍ରେନ ମାତ୍ର ପଟାସିୟମ ସାଇନାଇଡ୍ । ବାସ ସେତିକି ଯଥେଷ୍ଟ । ତୁମେ ଯେବେ ମୋ ସହିତ ଏକମତ ହୁଅ, ତେବେ ମୋ ପକ୍ଷେ ସେ କଥା କିଛିମାତ୍ର ଅସମ୍ଭବ ନୁହେଁ । ନରହନ୍ତା ରାକ୍ଷସକୁ ଚିରଦିନପାଇଁ ଏସଂସାରରୁ ବିଦାୟ କରିଦେବା ଉଚିତ । ଆଉ ଜାଣିରଖ, ଅପରାଧୀକୁ ଯଥାଯୋଗ୍ୟ ଦଣ୍ଡଦେଲେ ଲେଶମାତ୍ର ଦୋଷ ହୁଏନାହିଁ । ମୁଁ ଯାଉଚି । ଆଜିକା ପାଇଁ ବିଦାୟ ନେଉଚି ।

ବିଦାୟ ଦେବାକୁ ଠିଆହୋଇ ଅନ୍ୟମନା ଭାବେ ଭାବି ହେଲେ ସୁବର୍ଣ୍ଣ—ପଟାସିୟମ ସାଇନାଇଡ୍ । ପଟାସିୟମ ସାଇନାଇଡ୍ ।

ଡାକ୍ତର ପ୍ରିୟନାଥ ରାୟସାହେବଙ୍କ ପଡ଼ଶା ।



ରାୟସାହେବ କଟକରୁ ଚାକର ପିଲାଟି ସଙ୍ଗରେ ଧନ ଗାଁକୁ ଯାଇଛନ୍ତି । କିନ୍ତୁ ପୂର୍ବ ଗାଁ ଓ ଘରଦ୍ୱାର ଏବେ ଆଉ ନାହିଁ । ନିଜେ ତୋଳିଥିବା ତିରିଶ ବଖରା ପକ୍କାଘରକୁ ନିଜ ହାତରେ ସେ ଭାଙ୍ଗିଭୁଙ୍ଗି ଚୁରମାର କରିଦେଇ ଯାଇଛନ୍ତି । ସେ ଚକଡ଼ାରେ ବାକିଥିବା ଚାଳଘର ଦି ଚାରି ବଖରାରେ ଏବେ କେତେଜଣ କର୍ମଚାରୀ ରହୁଛନ୍ତି । ସେମାନେ ରାୟସାହେବଙ୍କ ପୂର୍ବ କର୍ମଚାରୀ । ଏବେ ସେ ଟ୍ରଷ୍ଟ ଅଧୀନରେ କାମ କରୁଛନ୍ତି । ଆଗକୁ ବାହାରି ଆସି ମୁଣ୍ଡନୁଆଇଁ ନମସ୍କାରଟିମାନ କଲେ, ମାତ୍ର ତହିଁରେ ସେମାନଙ୍କର ଆନ୍ତରିକତା ଆଦୌ ନଥାଏ । ଏବେ ସେମାନେ ରାୟସାହେବଙ୍କୁ ମନେ ମନେ ଘୃଣା କରୁଛନ୍ତି । ଭୟମଧ୍ୟ କରୁଛନ୍ତି । ସେମାନେବି ଜାଣନ୍ତି ସ୍ତ୍ରୀ ଲାବଣ୍ୟଦେବୀଙ୍କୁ ଏଇ ନଷ୍ଟଚରିତ୍ର ନକୁଳ ଚଉଧୁରୀ ଚାକର ହାତରେ ମରାଇ ଦେଇଛନ୍ତି ।

ଖିମା ଅନେକ ଦିନୁ ଚାକିରି ଛାଡ଼ି ଘରକୁ ଚାଲିଗଲାଣି । ମାତ୍ର ଦିନେ ଦିନେ ସେ କଟକ ଯାଇ ଶଶିବାବୁଙ୍କ ଘରେ ବୁଲି ଆସୁଛି । ପିଲାଟିକି ଦେଖି ସ୍ନେହ କରୁଛି । ତାଆଡ଼କୁ ଚାହିଁ କାନ୍ଦିପକାଉଛି । ଶଶିବାବୁଙ୍କୁ ମୁଣ୍ଡିଆମାରି ବଦାପୁନେଉଛି । ମନଟା ତାର ଲବଣ୍ୟ ଦେବୀଙ୍କୁ ଖୋଜିହେଉଛି ଏବଂ ଝୁରି ହେଉଚି । ରକ୍ତ ତାର ନିଜରକ୍ତରୁ ଜାତ ସନ୍ତାନଟି ପାଇଁ ସ୍ନେହ ମମତାରେ ବ୍ୟଥିତ ହୋଇଉଠୁଛି; କିନ୍ତୁ ଭୁଣ୍ଡିଖୋଲି ନିଜର ବୋଲି କହିବାକୁ ତାର ଉପାୟ ନାହିଁ । ସେଏବି ଜଣେ ମଣିଷ, ଏବଂ ତାହାର ହୃଦୟଟା ମଧ୍ୟ ମଣିଷର ହୃଦୟ ।

ରାୟସାହେବ ପୁରୁଣା ଖଞ୍ଜା ଦୁଆରେ ଗାଡ଼ିରୁ ଓହ୍ଲାଇ ଉଚ ପାହାଚ ଉପରକୁ ଉଠିଲେ । ଲବଣ୍ୟଦେବୀଙ୍କ ମୃତ୍ୟୁପରେ ସେଘର

ଜଣେ ଭୃତ୍ୟର ତତ୍ତ୍ୱାବଧାନରେ ଅଛି । ସେ ଆସି ଦଣ୍ଡବତ କଲା ଏବଂ ଭିତରକୁ ଆଗେଇନେଲା । ଦେଓଙ୍କ ପୂଜାର ଆସି ନମସ୍କାର କଲା । ରାୟସାହେବ ଚାରିଆଡ଼େ ବୁଲି ଏଣେତେଣେ ଆଖି ଫେରାଇ ଦେଖିଲେ— ସବୁ ପ୍ରାୟ ଶେଷ ହୋଇଆସିଲାଣି । ଶୋଇଲା ଘର ଭିତରକୁ ଯାଇ ଦେଖିଲେ—ବିଛଣା ପତ୍ର ଆଣ୍ଠିଏ ଧୂଳିରେ ପୂରିଯାଇଛି ।

ଭୃତ୍ୟପିଲାଟି ପାଣି ଢ଼ାଳେ ଆଣି ତାଙ୍କ ପାଦ ଧୋଇଦେଲା ଏବଂ ଆରାମ ଚଉକିଟାଏ ଆଣି ବସିବାପାଇଁ ଆଗେଇଦେଲା ।

ଚଉକି ଉପରେ ବସିପଡ଼ି ରାୟସାହେବ ଭାବିଲେ—କାହିଁ ସେ ଅଯୋଧ୍ୟା ? କାହିଁ ତାର ଯଶଃ କୀର୍ତ୍ତି ? ସବୁ ସରିଲା । ମୋରି ଦୋଷରୁ ସବୁ ଆସି ଶେଷ ହେବା ଉପରେ । ଲବଣ୍ୟ ଗଲାରୁ ଏ ଘରସଂସାରର ଲବଣ୍ୟ-ଗରିମା ସବୁ ଶେଷ ହୋଇଗଲା । "ସେ" ମଲା ଏବଂ ମୁଇଁ ତାକୁ ମାରିଲି ? ମଣିଷର ବ୍ୟକ୍ତିତ୍ୱ ଓ ମାନମର୍ଯ୍ୟାଦା ସବୁ ଲୋପ ପାଇଯାଏ—ଚରିତ୍ର ହରାଇଲେ । ଭ୍ରଷ୍ଟଚରିତ୍ର ବ୍ୟକ୍ତି ସବୁଦିଗରୁ ନଷ୍ଟଭ୍ରଷ୍ଟ ହୋଇ ଯାଏ ।

ଶଯ୍ୟା ଉପରକୁ ଉଠି ଫେରିଆସିଲେ । ଭୟ ଓ ଆଶଙ୍କାରେ ତାଙ୍କ ପ୍ରାଣ କାତର ହୋଇଉଠୁଛି । ନିଜେ ସେ ମାରିଚନ୍ତି ନିଜ ସ୍ତ୍ରୀ ଲବଣ୍ୟଙ୍କୁ, ଏବଂ ତାଙ୍କର ପ୍ରେତାତ୍ମା ଏବଂ ଅନ୍ତରେ ଅନ୍ତରେ ମୁହୁର୍ମୁହୁ ହତ୍ୟା କରିଚାଲିଛି ।

ପୁରୁଣା କଥା ତାଙ୍କର ମନେ ପଡ଼ି ଯାଉଛି । ସୁବର୍ଣ୍ଣର ସଂସର୍ଗରେ ଆସି ବଡ଼ ହୋଇ ସେ ଧାନକୁ ହାତ ବଢ଼ାଇ ତାକୁ ବିପଥକୁ ନେଲେ । ବଡ଼ର ସମ୍ମାନ ସେ ହରାଇ ବସିଲେ । ସେଇ ସାନ ଶାଳୀ ସୁବର୍ଣ୍ଣ ତାଙ୍କ ଆଡ଼କୁ ଚାଲି ଆସିବାରୁ ତାର ସ୍ୱାମୀ ଆତ୍ମହତ୍ୟା କରି ବସିଲା । ଏ ଘଟନାକୁ ଆତ୍ମ ହତ୍ୟା ନକହି ବରଂ ରାୟ ସାହେବଙ୍କର ପ୍ରଥମ ନରହତ୍ୟା ବୋଲି କହିଲେ ଭୁଲ ହେବନାହିଁ । ତାହାପରେ ସୁବର୍ଣ୍ଣର ପ୍ରଥମ ଜାରଜ ସନ୍ତାନର ଜନ୍ମ । ରାୟ ସାହେବଙ୍କର ଏ କଥାଟି ହେଲା ଅଧଃପତନର ଦ୍ୱିତୀୟ ପର୍ଯ୍ୟାୟ । ତାହାପରେ ବର୍ଷେ ଦୁଇ ବର୍ଷ

ମଧ୍ୟରେ ସୁବର୍ଣ୍ଣ ଥରେ ଥରେ ଗର୍ଭବତୀ ହୁଅନ୍ତି । ଏଇ ରାୟ ସାହେବ ଡାକ୍ତର ପ୍ରିୟନାଥ ଦାସଙ୍କ ସାହାଯ୍ୟରେ ନେଗୋଟିକ ପଛକୁ ଗୋଟିଏ କରି ସେ ସବୁ ଭ୍ରୂଣଙ୍କୁ ମାଆ ପେଟରେ ଥିବା ଅବସ୍ଥାରେ ହତ୍ୟା କରିଛନ୍ତି । ସ୍ତ୍ରୀ ଲାବଣ୍ୟଙ୍କୁ ନିର୍ବାସିତ କରି ରଖିଚନ୍ତି ସେଇ ନିଜେ । ତାଙ୍କୁ ମରାଇଛନ୍ତି ମଧ୍ୟ ସେଇ ନିଜେ । ପାପ-କର୍ମକୁ ଥରେ ଟିକେ ଉତ୍ସାହ ଦେଲେ ଧୀରେ ଧୀରେ ସେ ତୁମକୁ ତଳକୁ ତଳକୁ ଖସାଇ ନେଇ ସବୁ ଶେଷରେ ରସାତଳକୁ ନିକ୍ଷେପ କରିଦିଏ । "ବୁଡ଼ିଯିବା ଗୋଡ଼ ତଳକୁ ତଳକୁ" । ଉପର ଆଡ଼କୁ ଉଠିବାର ଆଉ ତାର ଉପାୟ ନାହିଁ ଯେ !

ଖଟ ଉପରେ ସତେକି ଲାବଣ୍ୟଙ୍କ ପ୍ରେତ ମୂର୍ତ୍ତି ବିକଟାଳ ମୁଖ ବ୍ୟାଦାନ କରି ରାୟ ସାହେବଙ୍କୁ କାମୁଡ଼ି ପକାଇବା ପାଇଁ ଗୋଡ଼ାଇ ଆସୁଚି ! ରାୟ ସାହେବଙ୍କୁ ସେ ସତେକି ଶୁଣାଇ ଶୁଣାଇ କହି ଉଠୁଚି—ଆରେରେ ନରାଧମ, ରାକ୍ଷସ, ବର୍ବର, ନରହନ୍ତା, ତୋର ମୁକ୍ତି ନାହିଁରେ । ନିସ୍ତାର ନାହିଁ ।

ଜଣେ ହେଲେ କେହି ତାଙ୍କ ପାଖକୁ ଆସୁ ନାହାନ୍ତି । ଭକ୍ତି କାହାର ନାହିଁ । ଭୟ କରୁଚନ୍ତି ତାଙ୍କୁ ସମସ୍ତେ । ଲୋକେ ଭାବୁଚନ୍ତି ସତେକି ଏ ଗାଆଁକୁ ଗୋଟାଏ ନରମାଂସଭୋଜୀ ରାକ୍ଷସ ପଶିଆସିଚି ।

ଏକୁଟିଆ ଏକୁଟିଆ ନିଗୁଟିଆ ଘରଟା ଭିତରେ ଦିନେ ଦି ଦିନ ବସି ବସି ରାୟ ସାହେବ ବୁଝିଲେ, ସତେକି ସେ ମଶାଣି ପଦାରେ ପଡ଼ିଛନ୍ତି । କେହି କୁଆଡ଼େ ନାହିଁ । ଗୋଟି ଗୋଟି ହୋଇ ପଛ କଥାସବୁ ମନେ ପଡ଼ିଯିବାକୁ ଲାଗିଲା—ସବୁ ପାପ-କଥା ଓ ସବୁ ଅପକର୍ମ ସବୁ ଶୂନ୍ୟ ମନ ଭିତରେ ଜମାଟ ବାନ୍ଧି ଯାଉଚନ୍ତି । ଶୂନ୍ୟ ମନ ନୁହେଁ,—ଅପରାଧୀର ମନ । ସବୁ ପ୍ରକାରେ ଭୟଗ୍ରସ୍ତ ଓ ସଙ୍କୁଚିତ । ଧୀରେ ଧୀରେ ମସ୍ତିଷ୍କଟା ବିକୃତ ହୋଇ ଆସୁଚି । ରାକ୍ଷସ କଂଶ କୃଷ୍ଣଙ୍କ ଚିନ୍ତାରେ ଯେତିକି ବ୍ୟସ୍ତ ହେଲାପରି-ରାୟସାହେବ ଶୟନ, ସ୍ୱପ୍ନ, ଜାଗରଣ ସବୁବେଳେ ଲାବଣ୍ୟଙ୍କ ପ୍ରେତ ମୂର୍ତ୍ତିଟିକି ଦେଖିବାକୁ ପାଇ ଭୟ ବିହ୍ୱଳ ହୋଇ ଉଠୁଚନ୍ତି । ସତେକି ଲାବଣ୍ୟଙ୍କ କଙ୍କାଳ ମୂର୍ତ୍ତିଟାଏ ବିକଟାଳ ମୁଖବ୍ୟାଦାନ

କରି ସବୁ ଦିଗରୁ ତାଙ୍କର ଆଡ଼କୁ ମାଡ଼ି ଆସୁଛି—କହୁଛି—ହେ ନର-ହନ୍ତା, ନରାଧମ, ନିଜକୁ ତୁ କୋର୍ଟ କଚେରିରେ ନିରପରାଧ ବୋଲି ଯେତେ ପାରୁ ତେତେ ସାବ୍ୟସ୍ତ କରିନେଇ ପାରିଲେ ସୁଦ୍ଧା, ନିଜର ଆଭ୍ୟନ୍ତରିଣ ବିବେକ-ବିଗ୍ରହର ତୋତେହିଁ ଅପରାଧୀ ବୋଲି ଶତବାର ପ୍ରମାଣ କରିଦେଇ ଗ୍ରୁଡ଼ୁଛି । ସ୍ତ୍ରୀ ଲାବଣ୍ୟଙ୍କୁ ମାରି ନିଜେହିଁ ତୁ ମୃତ୍ୟୁ ରାକ୍ଷସର କବଳରେ ପଡ଼ି ଅହରହ ଛଟପଟ ହେଉଛୁ ରେ ଚଣ୍ଡାଳ ।

ନିଜକୁ ସେ ନିଜର ବିବେକ-ଜଜ୍ ସାମନାରେ ଦୋଷୀ ସାବ୍ୟସ୍ତ କରାଇ ନେଲା ପରେ ପଳାତକ ପରି କଟକକୁ ପଳାଇ ଆସିଲେ । ଧୀରେ ଧୀରେ ସେ ପାଗଳ ହେଲା ପ୍ରାୟ ହୋଇଉଠିଲେଣି । ଆତ୍ମୀୟସ୍ୱଜନ ଦୂରେଇ ଗଲେଣି । ଚାକର ବାକର ଗ୍ରୁଡ଼ି ପଳାଇଲେଣି । ବାକି ଅଛି ମାତ୍ର ପୂଜାରି ପିଲାଟି । ନକୁଳ ବାବୁ ଆଉ କୋର୍ଟ କଚେରିକୁ ଯାଉ ନାହାନ୍ତି । ମୋହକିଲ କେହି ତାଙ୍କ ନିକଟକୁ ଆସୁ ନାହାନ୍ତି । ସଭା ସମିତିକୁ ତାଙ୍କୁ ଆଉ କେହି ଡାକୁ ନାହାନ୍ତି । ଚାରିଆଡ଼େ ତାଙ୍କର ଦୁର୍ନାମ । ପ୍ରକାଶ୍ୟରେ ନହେଲେ ସୁଦ୍ଧା ସେ ବର୍ତ୍ତମାନ ସମାଜରେ ସବୁ ପ୍ରକାରେ ଲାଞ୍ଛିତ ହେବାକୁ ଲାଗିଲେଣି । ଏକମାତ୍ର ଆଶା ଭରସା ଥିଲେ ସୁବର୍ଣ୍ଣଦେବୀ । ସେଏବି ଏବେ ଦୂରେଇ ରହିଲେଣି । ତାଙ୍କର ବି ଭୟ ହେଲାଣି ଯେ ରାୟ ସାହେବ ହୁଏତ କେଉଁଦିନ କଅଣ ଭାବିନେବେ । ଡାକ୍ତର ବାବୁ ଆସୁଛନ୍ତି । ତାଙ୍କ ସହିତ ସୁବର୍ଣ୍ଣଙ୍କର ଗୁପ୍ତ ସମ୍ପର୍କ କଥାଟାର ଲେଶ ମାତ୍ର ଆଭାସ ପାଇଗଲେ, ସେଇ ରାୟ ସାହେବ ସୁବର୍ଣ୍ଣଙ୍କୁ ମଧ୍ୟ ଶେଷ କରିଦେଇ ପାରନ୍ତି ବା ଡାକ୍ତର ଦାସଙ୍କୁ ଶେଷ କରିଦେଇ ପାରନ୍ତି ।

ନକୁଳ ବାବୁ କୌଣସି ଆଡ଼େ ଯିବାକୁ ନାରାଜ ହେଲେ । ବୈଠକ ଖାନା ଘରେ ଏକୁଟିଆ ବସି ବସି ବହିପତ୍ର ପଢ଼ିବାକୁ ଚେଷ୍ଟା କରନ୍ତି ମାତ୍ର । କିନ୍ତୁ ପଢ଼ାର ସାରାଂଶ ଗ୍ରହଣ କରିବାକୁ ତାଙ୍କ ମସ୍ତିଷ୍କ କେତେବେଳେ ସମ୍ପୂର୍ଣ୍ଣ ଅକ୍ଷମ ହୋଇ ପଡ଼ୁଥାଏ । ଭିତରୁ ତାଂକର ଅନୁକ୍ଷଣ ଅଗ୍ନ୍ୟୁଦ୍‌ଗୀରଣ ହୋଇ ଚାଲିଥାଏ । ତାକୁ-ବନ୍ଦ କରିବ କିଏ ?

ସେହି ଘରର ଟେବୁଲ ଉପରକୁ ତାଙ୍କ ଖାଦ୍ୟ ଆଣି ଥୋଇ ଦେଇଯାଏ ପୂଜାରି ପିଲାଟି । ସବୁ ଗୃହକର ବାହାର ଗ୍ଭଡ଼ିଯିବା ପରେ ସେଇ କେବଳ ଏକମାତ୍ର ତାଙ୍କର ଅବଲମ୍ବନ । ସଞ୍ଜବେଳେ ସେ ଟେବୁଲ ଉପରେ ବହି ଖଣ୍ଡିକୁ ଗୃହିଁ ଏଣୁ ତେଣୁ ବାରକଥା ଭାବୁ ଥାଆନ୍ତି । ନଅଟା ପରେ ଖାନା ଖାଆନ୍ତି । ତା'ପରେ ବସିବସି କିଛି ସମୟ ଏଣୁ ତେଣୁ ଚିନ୍ତା ଓ ଦୈନିକ ଡାଇରି ଲେଖା ।

ଏଣିକି ଏଣିକି ସେ ଆଉ ଭିତର ପ୍ରସ୍ତକୁ ଶୋଇବାକୁ ଯାଆନ୍ତି ନାହିଁ । ସୁବର୍ଣ୍ଣ ତାଙ୍କ ପାଖକୁ କ୍ୱଚିତ ଆସନ୍ତି । ନିଜେ ନକୁଳ ବାବୁ ମଧ୍ୟ ତାଙ୍କୁ ଆସିବାକୁ ମନା କରିଦେଲେଣି—ଦେଖ ସୁବର୍ଣ୍ଣ, ତୁମକୁ ଦେଖିଲେ ଲବଣ୍ୟ ପରି ଦିଶି ଯାଉଚ । ମତେ ଡର ମାଡ଼ୁଚି । ତୁମେ ଆଉ ମୋ ପାଖକୁ ଆସନାହିଁ ।

ବୈଠକ ଖାନା ପାଖକୁ ଲାଗି ସାହେବଙ୍କ ଶୋଇଲା ଘର । ଖଟ ସଜା ହୋଇଥାଏ । କାନ୍ଥ ଆଲମାରି ଭିତରେ ଗିଲାସେ ଦୁଧ ରଖା ଯାଇଥାଏ । ରାତି ଦଶଟା ଏଗାରଟା ବେଳକୁ ନକୁଳ ବାବୁ ସେତକ ପିଇ ଶେଜ ଉପରେ ଶୋଇ ପଡ଼ନ୍ତି । ସହଜେ ତ ନିଦ ଆସେନାହିଁ । ଲାବଣ୍ୟଙ୍କ ପ୍ରେତାତ୍ମା ସତେକି ଅହରହ ତାଙ୍କ ମନ ଉପରେ ଆକ୍ରମଣ ଚଳାଇ ଥାଏ । ନିଦ ଔଷଧ ଖାଇ ସୁଦ୍ଧା ତାଙ୍କୁ ନିଦ ହୁଏ ନାହିଁ । ରାତି ସାରା ଛଟ ପଟ ହୋଇ ଦିନକୁ ଦିନ ସେ ଦୁର୍ବଳ ହୋଇ ପଡ଼ୁଥାଆନ୍ତି ।

+ + +

ଦିନେ ନିଭୃତ ଶୟନ କକ୍ଷ ମଧ୍ୟରେ ଥାଇ ଡାକ୍ତରବାବୁ ସୁବର୍ଣ୍ଣଙ୍କୁ ପଚାରିଲେ—କଅଣ ଭାବୁଚ ? ନିଜେ ବଞ୍ଚିଲେ ଦୁନିଆ ବଞ୍ଚେ । "ଆତ୍ମାନଂ ସତତଂ ରକ୍ଷେତ୍", ନିଜର ରକ୍ଷା ପାଇଁ ଜଣେ ସ୍ତ୍ରୀହତ୍ୟାକୁ ବରଦାସ୍ତ କରିବାକୁ ହେବ, ଏଥିରେ ଭାବିବାର କଅଣ ବା ଅଛି ? ମଣିଷ ଗୋଟାକର ଜୀବନ, ଆମ ନିକଟରେ ନିହାତି ତୁଚ୍ଛ କଥାଟାଏ । ଏବଂ

ଏଇ ସାମାନ୍ୟ କଥାଟି ଉପରେ ହିଁ ତୁମର ଭବିଷ୍ୟତ ସୁଖ ସ୍ୱାଚ୍ଛନ୍ଦ୍ୟ ନିର୍ଭର କରୁଛି । ନାମ୍ନି ମରିଗଲା ପିଲୁ ତୁମର ରୂପରେଖ କଅଣ ହୋଇ ଗଲାଣି, ସେକଥା ନିଜେ ତୁମେ ବୁଝି ପାରୁନିକି ? ମୁଁ ଚାହେଁ ତୁମର ଭବିଷ୍ୟତ ନିଷ୍କଣ୍ଟକ ହେଉ । ତୁମକୁ ଭଲ ପାଇ ମୁଁ ପାଗଳ ହୋଇ ଗଲିଣି । ଏତେ ଆଉ ଲୁଚଛପି ଯା ଆସ କରି ପାରିବି ନାହିଁ । ତୁମେ "ହଁ" ବୋଲି ପଦେ ଉତ୍ତର ଦେଲେ ସବୁ ସାଫ୍ ହୋଇଯିବ ।

ହାତ ବଢ଼ାଇ ନିଜ ଆଡ଼କୁ ସୁବର୍ଣ୍ଣଙ୍କୁ ଭିଡ଼ି ନେଇ ଗଲେ ଡାକ୍ତର ଦାସ । ଏବଂ ତାଙ୍କ କୋଳ ଭିତରେ ମୁହଁଟିକୁ ଲୁଚାଇ ରଖି ସୁବର୍ଣ୍ଣ କ୍ଷୁଦ୍ର ଉତ୍ତରଟିଏ ଦେଲେ—ଅତି ଗୁରୁତର ଏବଂ ଅତି ମାରାତ୍ମକ । —ହଉ, ଯାହା ତୁମେ କରିବ କର । ମୋର ଆପତ୍ତି ନାହିଁ ।

ବିକୃତ ଅଟ୍ଟହାସ୍ୟ ହସି ଡାକ୍ତର କହିଉଠିଲେ—ମାତ୍ର ଗୋଟିଏ ମଣିଷର ଜୀବନ । ଦୁଇ ତିନି ମିନିଟର ବ୍ୟାପାର । ଦୁଇତିନି ଗ୍ରେନ ପଟାସିୟମ ସାଇନାଇଡ୍ । ଭଗ୍ନୀହନ୍ତାକୁ ଯେତେ ଆପଣାର କଲେ ସୁଦ୍ଧା କେବେ ହେଁ ସେ ତୁମର ଆପଣାର ହେବ ନାହିଁ ।

ସୁବର୍ଣ୍ଣ କହିଲେ—ତୁମ ଇଚ୍ଛା । ବର୍ତ୍ତମାନ ଓ ଭବିଷ୍ୟତରେ ତୁମେହିଁ ମୋର ସବୁ ବୋଲି ଜାଣିବ ।

ଡାକ୍ତର—ତେବେ, ମେନକାକୁ କିଛିଦିନ ପାଇଁ ଏଠୁ ଅନ୍ତର କରାଇ ଦିଅ କି ଭଲ ହେବ ।

+ × +

ଉଦୟ ବେଳେ ଅସ୍ତ ନାହିଁ କି ଅସ୍ତବେଳେ ଉଦୟ ନାହିଁ । ରାୟସାହେବଙ୍କ ଅସ୍ତବେଳ ଅତି ଚଞ୍ଚଳ-ଗତିରେ ଆଗେଇ ଆସୁଛି । ସମ୍ପତ୍ତିବାଡ଼ି ଓ ଯାବତୀୟ ଆୟ ବର୍ତ୍ତମାନ ଟ୍ରଷ୍ଟି ଓ ତାଙ୍କ କର୍ମଚାରୀ-ମାନଙ୍କ ହାତରେ ନଷ୍ଟଭ୍ରଷ୍ଟ ହୋଇ ଯାଉଛି । ମାଲି ମକଦ୍ଦମାରେ ଅହରହ ବ୍ୟସ୍ତ ବିବ୍ରତ ଥାଇ ନକୁଳବାବୁ କିଛିମାତ୍ର ଆୟ କରି ପାରୁ

ନାହାନ୍ତି । ବରଂ ବ୍ୟାଙ୍କମାନଙ୍କରେ ଜମାଥିବା ଟଙ୍କାକଉଡ଼ିତକ ଉଠାଇ ଆଣି ଧୀରେ ଧୀରେ ଖର୍ଚ୍ଚ କରିବାରେ ଲଗିଚନ୍ତି । ଚିନ୍ତାରେ ଘାରି ହୋଇ ତାଙ୍କ ଦେହେର କଳାକାଠ ପଡ଼ି ଗଲଣି ।

ରାୟସାହେବ ଜଣେ ଉଚ୍ଚ କୋଟିର ପ୍ରତିଷ୍ଠିତ ସାହିତ୍ୟିକ ଏବଂ ଭାବ ପ୍ରବଣ ବ୍ୟକ୍ତି । ଭିତରର ଅନୁତାପରେ ସେ ଏବେ ଦଗ୍ଧିଭୂତ ।

ସୁବର୍ଣ୍ଣର ପୁଅଟି ବଡ଼ ହୋଇ ଗଲଣି । ସେ ଏବେ ସବୁ କଥା ବୁଝୁଚି । ଘରଠାରୁ ଦୂରେଇ ରହି ସେ ଥାଏ ସ୍କୁଲ ବୋଡ଼ିଂରେ । ଘରକୁ ପ୍ରାୟ ଆସେ ନାହିଁ । ସେ ମଧ ମନେ ମନେ ସ୍ଥିର କରି ନେଲଣି ଯେ—ସମାଜ ମଧ୍ୟରେ ସେ ଗୋଟିଏ ଅବାଞ୍ଛିତ ସନ୍ତାନ । ଜନ୍ମ କରିଥିବା ମାଆ ତାକୁ ଆପଣାର ସନ୍ତାନ ବୋଲି ସ୍ୱୀକାର କରିବାକୁ ନାରାଜ । ଜନ୍ମଦାତା ପିତା ଆଇନ ସଙ୍ଗତ ଜନକ ନୁହେଁ । ସାଙ୍ଗସାଥିଏ ତାକୁ କଥା କଥାକେ ଅପମାନ ଦେଉଛନ୍ତି । ସେଏବ ଭାବୁଛି—କେମିତି କୌଣସି ପ୍ରକାରେ ସୁବିଧା ପାଇଲେ କଟକ ଛାଡ଼ି; ଓଡ଼ିଶା ଛାଡ଼ି କୌଣସି ଗୋଟିଏ ଅଚିହ୍ନା ସ୍ଥାନକୁ ପଳାଇଯିବ, ଯେଉଁଠିକି ଗଲେ ଲୋକେ ତାର ବାପ ମାଆଙ୍କ ପରିଚୟ ପଚାରି ବସିବେ ନାହିଁ । ଚିହ୍ନିବେ କେବଳ ତାର ବ୍ୟକ୍ତିତ୍ୱ ଓ ବୁଦ୍ଧି ବିଦ୍ୟାକୁ ।

× × ×

ଦିନକର ଘଟଣା । ରାତି ନଅଟା କି ଦଶଟା । ଟେବୁଲ ଉପରେ ଖାନା ଖାଇ ବରଣ୍ଡା ଉପରେ ଥାଇ ରାୟସାହେବ ହାତ ଧୋଇଲେ । ଶୋଇବା ଘରକୁ ଆସି ଆଲମାରୀ ଭିତରୁ ଦୁଧଗିଲାସକ ନେଇ ପିଇଲେ । ଟିକେ କାହିଁକି ଚୂନପାଣି ପରି ଖାଇଆ ଖାଇଆ ଲାଗିଲା ଏବଂ ସଙ୍ଗେ ସଙ୍ଗେ ଜିଭ, ତଣ୍ଟି, ଛାତି ଭିତର ଓ ପାକସ୍ଥଳି ଜଳି ଉଠିବାକୁ ଲାଗିଲା । ଯନ୍ତ୍ରଣାରେ ଛଟପଟ ହୋଇ ବିକଳରେ ରାୟବାହାଦୂର ଡାକି ପକାଇଲେ—ମରିଗଲି, ମରିଗଲି ।

ତାପରେ ଛଟପଟ ହୋଇ ତଳେ ସେ କଟ୍‌ଡ଼ ହୋଇ ପଡ଼ିଗଲେ । ଏଣେ ବାନ୍ତି ହୋଇ ଯାଉଥାଏ, ତେଣେ ପରିଷ୍ରା ହୋଇ ଯାଉଥାଏ । ପୂଜାରି ପିଲାଟା ଧାଇଁଆସି ଏ ଅବସ୍ଥା ଦେଖି ଡାକ ପକାଇଲା—କିଏ କୋଉଠି ଅଛ, ଧାଇଁ ଆସ !

ଦୁଇ ତିନି ମିନିଟ ମଧ୍ୟରେ ଅଜ୍ଞାନ ହୋଇ ରଘୁସାହେବ ନିଶ୍ଚଳ ଅବସ୍ଥାରେ ପଡ଼ିରହିଲେ । ପାଖକୁ ଆସି ସୁବର୍ଣ୍ଣଦେବୀ ମନକୁ ମନ ପ୍ରେତ-ହାସ୍ୟ ହସି ଉଠି ନିଜକୁ ନିଜେ କହିବାକୁ ଲାଗିଲେ—ହେଇଚି ଏଥର । ପ୍ରତିଶୋଧ, ଉପଯୁକ୍ତ ଶାସ୍ତି । ସ୍ତ୍ରୀହନ୍ତା ରାକ୍ଷସ, ବର୍ବର, ନାମାର୍କି ମୋର ମାରିଲା ବେଳକୁ ତୋର ଭାବିବା ଉଚିତ ଥିଲା ଯେ, ତୋ ଜୀବନଟା ମଧ୍ୟ ପାଣି ଫୋଟକା ଠାରୁ ହୀନ ।

ପୂଜାରି ପିଲାଟି ଆଲମାରି ଭିତରେ ଦୁଧ ଗିଲାସକ ଥୋଇଦେଇ ଯିବା ପରେ ପରେ ଏଇ ସୁବର୍ଣ୍ଣହିଁ ଲୁଚି ଲୁଚି ଆସି ତା ଭିତରେ ଡାକ୍ତର ଦାସ ଦେଇଥିବା ଧଳା ଗୁଣ୍ଡିଟିକକ କେତେବେଳେ କେଜାଣି ପକାଇ ଦେଇଯାଇଥିଲେ । ଭୟରେ ସୁବର୍ଣ୍ଣଙ୍କ ଛାତିଭିତରଟା ଦୁଲୁକି ଉଠୁଥାଏ । ତଥାପି ସେ ନିଜକୁ ସମ୍ଭାଳି ନେଇ ଛାତ ଉପରକୁ ଉଠି ଡାକ ପକାଇଲେ – ଧାଇଁ ଆସହୋ କିଏ କୁଆଡ଼େ ଅଛ । ଗୋଟାଏ ବଡ଼ ତାରା ଖସି ପଡ଼ୁଛି । ଉଜ୍ଜ୍ୱଳ ନକ୍ଷତ୍ରଟାଏ ଶେଷ ହୋଇଯାଉଛି । ଦେଖିବ ତ ଆସ । ଶେଷ ଦର୍ଶନ କରିଯାଅ । ରଘୁ ବାହାଦୂର ଚାଲି ଯାଉଚନ୍ତି ।

ଲାବଣ୍ୟଦେବୀଙ୍କ ମୃତ୍ୟୁପରେ ଏ ଘରକୁ ଆସିବାକୁ ସାଇ ପଡ଼ିଶାଏ ଡରୁଥିଲେ । ତଥାପି ସୁବର୍ଣ୍ଣଙ୍କ ଚିତ୍କାର ଶୁଣି କେହି କେହି ଧାଇଁ ଆସିଲେ । ସମସ୍ତେ ଭାବିଲେ – ପାଗଳ ରଘୁ ବାହାଦୂର ହୁଏତ କିଛି ଗୋଟାଏ କାଣ୍ଡ କରି ବସିଛନ୍ତି ।

କିନ୍ତୁ ପାଖକୁ ଆସି ତାଙ୍କ ଅବସ୍ଥା ଦେଖି ସମସ୍ତେ ତାଟକା ହୋଇଗଲେ । ହାତଗୋଡ଼ ନୀଳବର୍ଣ୍ଣ ପଡ଼ିଗଲାଣି । ଆଖି ଡୋଳା ଦୁଇଟା ବଡ଼ ବଡ଼ ହୋଇ ବାହାରକୁ ବାହାରି ପଡ଼ିଲାଣି । ଘରଯାକ ମୂତଗୁହ ଅଣ୍ଡିଏ । ଗୁରୁକାତ ମେଲି ରଘୁବାହାଦୁର ଘର ଚଟାଣ

ଉପରେ ପଡ଼ିଛନ୍ତି । ନାଡ଼ି ଚାଲୁନାହିଁ । ପ୍ରିୟବାବୁ ଡାକ୍ତରଙ୍କୁ ଖୋଜିଲା ବେଳକୁ ତାଙ୍କ ଘରେ କହିଲେ—ଡାକ୍ତରବାବୁ ଘରେ ନାହାନ୍ତି । ତିନି ଦିନ ହେଲା କଲିକତା ଯାଇଛନ୍ତି ।

ଥାନାକୁ ଖବର ଗଲା । ଥାନା ବାବୁମାନେ ବି ଡେରି କଲେ । ରାତି ବାରଟା ବେଳକୁ ଆମ୍ବୁଲେନ୍ସ ଦ୍ୱାରା ନକୁଳ ବାବୁଙ୍କ ନିଶ୍ଚଳ ଶରୀରଟାକୁ ଡାକ୍ତରଖାନାକୁ ନିଆଗଲା । ଡାକ୍ତର ପରୀକ୍ଷା କରି ଜାଣିଲେ—ଅପମୃତ୍ୟୁ । ପୋଟାସିୟମ ସାଇନାଇଡ୍ ଖାଇ ମରିଛନ୍ତି । ବହୁ ତଦନ୍ତ ପରେ ପୋଲିସ ରିପୋଟ ଦେଲେ ଯେ, ତାଙ୍କ ଡାଇରି ଭିତରେ ଦିନେ ସେ ଲେଖିଛନ୍ତି—ଲାବଣ୍ୟଦେବୀଙ୍କ ମୃତ୍ୟୁର କାରଣ ମୁହିଁ ନିଜେ । ମୁଁ ଆଉ ବେଶିଦିନ ବଞ୍ଚି ରହିବାକୁ ଚାହେଁନାହିଁ । ହୁଏତ ଦିନେ ଆତ୍ମହତ୍ୟାର ସାହାଯ୍ୟ ନେଇ ଶେଷ ହୋଇଯିବି ।

ମାମଲାମକଦ୍ଦମାରେ ସେ ବହୁବର୍ଷଧରି ବ୍ୟସ୍ତ ବିବ୍ରତ ହୋଇ-ପଡ଼ିଥିଲେ । ସ୍ତ୍ରୀଙ୍କ ମୃତ୍ୟୁପରେ ଖୁଣୀମକଦ୍ଦମା ଚାଲିଲା । ତାର ରାୟ ବାହାରିଯିବା ପରେ ପରେ ତାଙ୍କ ମୁଣ୍ଡ ବିଗିଡ଼ିଗଲା । ଶେଷକୁ ନିଜେ ନିଜେ ଆତ୍ମହତ୍ୟା କରିଛନ୍ତି । ତାଙ୍କୁ କିଏ ବିଷଦେଇଛନ୍ତି ବୋଲି ପ୍ରମାଣ ନାହିଁ । ହୁଏତ ସେ ନିଜେ କୌଣସି ସୂତ୍ରେ କାହାରିଠାରୁ ପଟାସିୟମ ସାଇନାଇଡ୍ ସଂଗ୍ରହ କରି ଦୁଧରେ ମିଶାଇ ଖାଇଦେଇଛନ୍ତି । ତାହାର ଫଳରେ ଏ ଅପମୃତ୍ୟୁ ଘଟିଛି ।

ପୋଷ୍ଟମର୍ଟମବେଳେ ରାୟସାହେବଙ୍କ ମୃତ ଶରୀରଟା ଛିନଭିନ୍ନ-ହୋଇ ଚିରାଗଲା । ତାଙ୍କ ପଚାସଡ଼ା ହାଡ଼ମାଂସତକ ଖାନ୍ନଗର ମଶାଣିରେ ପୋଡ଼ିଦିଆଗଲା । ଲୋକଲଜ୍ଜାକୁ ଡରି ସୁବର୍ଣ୍ଣର ପୁଣି ଆସିଲା ନାହିଁ । ଖୋଜିଲେ ମଧ ମିଳିଲା ନାହିଁ । ସେ ସୁଯୋଗ ଦେଖି ଶଶିଭୂଷଣ ବାବୁ ଲାବଣ୍ୟଙ୍କ ପୁଅ ହରିଶଙ୍କରକୁ ଆଣି ମଶାଣିରେ ଛିଡ଼ା-କରାଇଦେଲେ । ସେଇ ଦେଲା ମୁଖାଗ୍ନି ଏବଂ ସେଇ ଶୁଦ୍ଧିକ୍ରିୟାରେ କ୍ରିୟା ଧରିଲା ।

ହରିଶଙ୍କର ରାୟବାହାଦୂରଙ୍କ ଔରଷର ସନ୍ତାନ କି ନା ଜାଣିଥିଲେ ଜାଣିଥିବ ଲାବଣ୍ୟଦେବୀଙ୍କ ପ୍ରେତାତ୍ମା । ସେଇ ମଶାଣିର ବାଲିମାଟି ଉପରେ ହୁଏତ ରାୟ ସାହେବଙ୍କ ଦରପୋଡ଼ା ହାଡ଼ ଖପୁରି କେଇଖଣ୍ଡି ଏବେ ସୁଦ୍ଧା ଗଡ଼ୁଥିବ ।

ବଡ଼ ଘର ଭିତରର ବଡ଼ ବଡ଼ କଥା ବଡ଼ଘରକୁ ହିଁ ମାଲୁମ । ନୈତିକତାର ଅଭାବ ଓ ଉଚ୍ଛୃଙ୍ଖଳତା ସେମାନଙ୍କର ସର୍ବନାଶ ଘଟାଇଥାଏ । ଲୋକେ କୁହା କୁହି ହେଲେ—ରାୟବାହାଦୂର ନିଜ ସ୍ତ୍ରୀଙ୍କୁ ମରାଇଦେବା ପରେ ଅନୁତାପରେ ·ପାଗଳ ହୋଇଗଲେ । ଏବଂ ଶେଷକୁ ଆତ୍ମହତ୍ୟା କରି ମଲେ ।



ସୁଭଦ୍ରାଦେଇପୁରର ଠାକୁରାଣୀ ମନ୍ଦିର ଭିତରର ଅଗଣା । ତାଆରି ଭିତରେ ସେ ଚମ୍ପାଗଛଟି ପୂର୍ବପରି ଠିଆହୋଇ ରହିଛି । ମୂଳକୁ ତାର ସେଇ ପକ୍‌କା ଚଉତରାଟି ସେମିତି ଅଛି । ତାଆରି ଉପରେ ସଉପ ଖଣ୍ଡିଏ ପାରି ଶୋଇ ଶୋଇ ଅଳସ ଭାଙ୍ଗୁଛି ମେନକା । ଗତ ରାତିରେ ସେ ଭଲ ଶୋଇ ପାରି ନଥିଲା । ଢୁଳ ମାଡ଼ୁଛି ଏବଂ ଗୁଁଉ ଗୁଁଉଁଆ ନିଦ ଭାଙ୍ଗି ଯାଉଛି । ନିଘୋଡ଼ ନିଦରେ ଶୋଇ ପଡ଼ିବାକୁ ମନ, କିନ୍ତୁ ଦିନ ବେଳଟା ବୋଲି ଶୋଇପାରୁ ନାହିଁ । ତା ଉପରେ ପୁଣି ରାମଦାଶ ପୂଜାରୀ ଠାକୁରାଣୀଙ୍କ ପିଣ୍ଡା ଉପରେ ବସି ବସି ଭାଗବତ ପୋଥି ବୋଲୁଛି ଯେ ମଝିରେ ମଝିରେ କୁହାଟି ଉଠୁଛି—କିଲୋ ମେନା, ଶୋଉଛୁ କଅଣମ, ଆସୁନଉଁ ଭାଗବତ ଶୁଣିବୁ ।

ଭାଗବତ ଦଶମସ୍କନ୍ଧରୁ ଅଧ୍ୟାଏ ପଢ଼ୁଛି ରାମଦାଶ । କିନ୍ତୁ ଭାଗବତରେ ମନଟା ବୁଡ଼ି ଯାଉନାହିଁ । ମନଟା ଉଡ଼ି ଆସୁଛି ଚମ୍ପାଗଛ ମୂଳ ଚୂଢ଼ମା ଉପରକୁ, ମେନକା ପାଖକୁ ।

ଧେନୁଚରେ, ହୁଁ ହୁଁ କରେ

ଚିତ୍ତ ରଖେ ବତ୍ସଆସ୍ୟ ।

ବାକୁଲି ହେଲା ମେନକା । ରାମ ଦାଶର ଚିତ୍ତ ତାଆରି ଆଡ଼େ ।

ଡାକ୍ତର ପ୍ରିୟନାଥ ଦାସ ସୁବର୍ଣ୍ଣଙ୍କୁ ପରାମର୍ଶ ଦେଲା ପରେ ମେନକାକୁ ସୁବର୍ଣ୍ଣଦେବୀ ନିଜ ଗାଁ ସୁଭଦ୍ରାଦେଇପୁରକୁ ପଠାଇ ଦେଇଛନ୍ତି —ଏବଂ କହିଛନ୍ତି ସେଠି ତୁ କିଛିଦିନ ରହିବୁ । ସେଠା ଘରଦ୍ୱାରର ଅବସ୍ଥା ବର୍ତ୍ତମାନ କେମିତି ଅଛି, ଚିଠି ଦ୍ୱାରା ଲେଖି ଜଣାଇବୁ । ଉତାଲି ହୋଇ ପଳାଇ ଆସିବୁ ନାହିଁ ।

ମେନକା ସୁଭଦ୍ରାଦେଇପୁରକୁ ଆସିବାର କିଛିଦିନ ପରେହିଁ ରାସୁସାହେବଙ୍କ ମୃତ୍ୟୁ ଘଟିଲା ।

ମେନକା ଯେଉଁ ଦିନ ସେ ଗାଁରେ ଆସି ପହଞ୍ଚି ଗଲା, ସେଦିନ ରାମଦାସର ଆନନ୍ଦର ସୀମା ରହିଲା ନାହିଁ । ଏ ଗାଁ ଛାଡ଼ି ସୁବର୍ଣ୍ଣଦେଈ ଅନେକ ଦିନ ହେଲା କଟକ ଗଲେଣି । କଟକ ଠାରେ ସେ ରାସୁସାହେବଙ୍କୁ ନିଜ ସମ୍ପତ୍ତିବାଡ଼ିର ରକ୍ଷଣା ବେକ୍ଷଣ ଓ ପରିଚାଳନା ପାଇଁ କ୍ଷମତା ପତ୍ର ଟିଏ ରେଜିଷ୍ଟ୍ରି କରି ଦେଇଥିଲେ । ତାହାର ବଳରେ ନକୁଳ ବାବୁ ସୁବର୍ଣ୍ଣଙ୍କୁ ନ ଜଣାଇ ପ୍ରାୟ ସବୁ ସମ୍ପତ୍ତି ଏକୁ ତାକୁ ବନ୍ଦିବସ୍ତ କରି ଦେଇ ଯାହାକିଛି ପାଇଲେ ଟଙ୍କା କଉଡ଼ି ରୂପେ ସଂଗ୍ରହ କରି ନେଇ ଗଲେ । 'ବୁଲେଇ ବିକଲେ ମାଣିକ ଭାଣ୍ଡି' । ହଜାର ହଜାର ଟଙ୍କାର ସମ୍ପତ୍ତି ବାଡ଼ି ଦୁଇ ତିନିଶହ ଟଙ୍କାରେ ପରହସ୍ତଗତ ହୋଇ ଗଲାଣି । ମେନକା ଦେଖିଲା, ରାଜଗୁରୁ ବଂଶର ଗୌରବ-ରବି ପ୍ରାୟ ବୁଡ଼ିଯିବା ଉପରେ । ସାମାନ୍ୟ ଅଳ୍ପ କେତୋଟି ବର୍ଷ ମଧ୍ୟରେ ସବୁ ଛାରଖାର ହୋଇ ଗଲାଣି । ଘର ଗୁଡ଼ିକ ଭାଙ୍ଗି ରୁଜି ଗଲାଣି । ଠାକୁରାଣୀଙ୍କ ପୂଜା ବିଧି ପଦ୍ଧତିର ନାହିଁ । ସେଇ ରାମଦାଶ ଅଛି, ମାତ୍ର ବୁଢ଼ାଳିଆ ଦେଖା ଗଲାଣି । ଲୋଭ ପରବଶ ହୋଇ ନିଜ ଘରକୁ ସେ ବହି ନେବାରେ ଲାଗିଛି । ସବୁ ପ୍ରାୟ ସରିଗଲାଣି । ଅଛି ମାତ୍ର କେତେ ଏକର ଶୁଷ୍କ ଜମି ଓ ଠାକୁରାଣୀଙ୍କ ଦେବୋତ୍ତର ସମ୍ପତ୍ତି କେଇମାଣ । ବାଗ ବଗିଚା ତକ କିଏ କୁଆଡ଼େ ହାଣି କାଟି ନେଇ ଗଲେଣି । ହତଶ୍ରୀ ଘର ଦ୍ୱାର ଖାଁ ଖାଁ ଗୋଡ଼ାଉଛି । ଚାକର କୋଠିଆ ହୋଇ କେହି ଜଣେ ହେଲେ ନାହାନ୍ତି । ଦରମା ପତ୍ର ନପାଇଲେ କିଏ କେତେଦିନ ରହିବ ?

ରାମଦାସ କହିଲା—କିଲୋ ମେନକା, ଏମିତି ମୁହଁ ଶୁଖାଉଚୁ କାହିଁକି ? ଭଙ୍ଗା ଖଞ୍ଜା ଭିତରେ ରହିବାକୁ ଡରୁଚୁ ତ ଏଠି ଆସି ଠାକୁରାଣୀଙ୍କ ଅଗଣାରେ ରହୁନାହୁଁ ? ମୁଁ ତ ପୁଣି ରହୁଚି । ସେଠି ହାତରେ କିଆଁ ରନ୍ଧାବଢ଼ା କରି କଷ୍ଟ ପାଇବୁ ? ଏଠି ତ ପ୍ରସାଦ ପାଇ ଶୋଇ ବସି ଦିନ କଟାଇବୁ । ମୋ ଛଡ଼ା କିଏ ଆଉ ଏଠି ଅଛନ୍ତି ?

ଦିନ ଆଉ ରାତି, ମୁଠିଏ ପ୍ରସାଦ ପାଇ ସାରଦେଇ ଖାଲିଁତ—
ବଗ ମୁହଁ ଗୁହିଁ ବଗୁଲି ବସେ,
ତୋ ମୁହଁ ମୋ ମୁହଁ କେମିତି ଦିଶେ—ଦେଖଉଥିବୁ ।

ମେନକା ହସିଉଠି ଗମ୍ଭାଡ଼ଆ ନିଶ୍ୱାସଟିଏ ଟାଣିଲି ।

ରାମଦାସ ପାଖକୁ ମାଡ଼ିଆସି ହସିହସି ପିଠିକି ତାର ଗୁପୁଡ଼େ କସିଦେଲା ।

ମେନା କହି ଉଠିଲା—କରେ କରେ ନନା, କେଡ଼େଟାଣ କର ଗୁପୁଡ଼ାଟାଏ କସି ଦେଲୁରେ? ଧିର ଜୋର କାଟିଲି । ବୁଢ଼ାଟାଏ ହେଲୁଣି, କେତେ ଟାଣ ଦେଖଉଚ୍ଚୁରେ ?

ରାମଦାସ ଗୁଳି ଯାଉଯାଉ କହି ଉଠିଲା—ଦେଖିବୁ ଲେ ମେନକା, ଦେଖିବୁ ଦେଖିବୁ, କେଡ଼େ ଟାଣ ?'ବୁଢ଼ା ହେଲିଣି ? ନାଉ ବୁଢ଼ା ନା କଖାରୁ ବୁଢ଼ା ?

ମେନା ହସି ହସି ଆଖି ଡୋଳା ଖେଳେଇ ଖେଳେଇ ଦୁରକୁ ଠିକେ ଦୁରେଇ ଗଲା ।

ରାମଦାସ ନିଜ ମୁଖମଣ୍ଡଳରେ ମଧୁର ହସ ଖେଳାଇ ଗାଇଉଠିଲା—
ଦିନ୍‌ ମେ ମୋହିନୀ ରାତ୍‌ ମେ ବାଘିନୀ
ପଲକ ପଲକ ନହୁ ଚୁସେ
ସାରା ଦୁନିଆ ଭଲୁଆ ହୋକେ
ଘର, ଘର, ବାଘିନୀ ପୁଷେ ।

ମେନକା ଲେଉଟି ପଡ଼ିଲା । କହିଲା—କଅଣ କହିଲୁ ଦାସନନା ? "ଘର ଘର ବାଘିନୀ ପୁଷେ" ? କରେ ତୋ ଘରେ ତୁ କେଇଟା ବାଘିନୀ ପୋଷିଚୁ ?

ରାମଦାସ—ଫେଶରୁହିଁ ହସିପକାଇ କହିଉଠିଲା—ଘରେ ଗୋଟାଏ —ଆଉ— !

ମେନା କହିଉଠିଲା—ରହିଗଲୁ କାହିଁକି, କହିପକା ।

ରାମଦାସ—ଆଉ ବାହାରେ ।

ମେନା—କେଉଁଠା ?

ରାମଦାସ—କେଉଁଠା ତାର କଅଣ ଠିକ୍ ଠିକଣା ଅଛି ?

ଅଜଗରକୁ ଦାତାରାମ
ମୁଖେ ପଡ଼ିଲେ ରାମ ରାମ

ନଜେ ତୁ କଅଣ ଜାଣୁ ନାହିଁ ନିଜ କଥାରୁ ? ଯେଉଁଠି ଯିଏ ମିଳିଗଲା ।

ଅନ୍ଧାରେ ଭଲ ମନ୍ଦ ନାହିଁ
ଯେ ସ୍ଥାନେ ଯେମନ୍ତ ମିଳଇ ।

ମେନା ପାଖକୁ ଲଗି ଆସି ହସି ହସି ପଚାରି ଦେଲା ଆରେ ହେ ରାମନନା—ବୁଢ଼ାତ ହୋଇ ଆସିଲୁଣି, ଆଉ କେଉଁ ଦିନେ ଶୁଣିବୁ—

ରାମନାମ ସତ୍ୟ ହେ
ହରି ନାମ ସତ୍ୟ ହେ ?

ରାମଦାସ ଚମ୍ପାମୂଳ ପକା ମଣ୍ଡପ ଆଡ଼କୁ ଗୁଲି ଗୁଲି ଯାଇ ଡାକିଲା ମେନାକୁ—ଶୁଣ, ଶୁଣ । ଏଇ ମଣ୍ଡପ ଉପରକୁ ସେଦିନ ଜଣେ ବାବାଜି ଆସିଥିଲେ । ସଂସାର-ତ୍ୟାଗୀ ସନ୍ନ୍ୟାସୀ, ହେଲେ ପେଟ ଭିତରଟା ଗୋଟିପଣେ ଅମିଷରେ ଭରା । ମନବୋଧିଆ ଗଞ୍ଜା ଟାଣିନେଇ ଉପସ୍ଥିତ ଭକ୍ତ ମାନଙ୍କୁ ଗପଟିଏ କହୁଥାଆନ୍ତି । ଆମେ ତ ହସି ହସି ଥେଇଆ, ତୁଉବ ଶୁଣିଲେ ହସି ପକାଇବୁ ।

ମେନକା ପାଖକୁ ଆସି ଠିଆହେଲା । କହିଲା—ରାମଦାସ, ନନା, ତୁ ମତେ ବାୟା କରିଦେବୁ ଦେଖୁଚି । କହିବୁଟି ଗପଟା ।

ରାମଦାସ କହିବାକୁ ଲଗିଲା—ବାୟାହେଇ ସାରିଲୁଣି ନା ହବାକୁ ବାକିଅଛି । ଯାରଣ, ମାରଣ, ମୋହନ, ଉଚ୍ଚାଟନ ସବ ବିଦ୍ୟାରୁ କିଛି କିଛି ମତେ ଆସେଲେ ମେନା ।

ମେନା—ହଉ କହ ଗପଟା କଅଣ ।

ରାମଦାସ କହିଲା—ରଜାଟିଏ ଆଉ ମନ୍ତ୍ରୀଟିଏ ।

ମନ୍ତ୍ରୀଟି ବୁଢ଼ାହୋଇଥିବାରୁ ମରିଗଲା । ରାଜାଙ୍କ ଭାବନା ପଡ଼ିଗଲା—କାହାକୁ ମନ୍ତ୍ରୀ କରିବେ । ସଭାରେ ଥାଆନ୍ତି ପଣ୍ଡିତମାନେ । କହିଲେ କାହିଁକି ଚିନ୍ତା, ମନ୍ତ୍ରୀଆଣୀତ ଅଛନ୍ତି । ତାଙ୍କ ପୁଅଟିକୁ ମନ୍ତ୍ରୀ କରନ୍ତୁ । ମାଆଠାରୁ ପରାମର୍ଶ ନେଇ ସେ ଚଳାଇବେ ।

ରାଜା କହିଲେ—ସାନ ପିଲାଟିଏ । ବୟସ ଖୁବ୍‌ବେଶୀ ହେଲେ କୋଡ଼ିଏ କି ବାଇଶ ହେବ ତ ।

ପଣ୍ଡିତେ—ପରବାୟୁ ନାହିଁ ପ୍ରଭୁ । ତାଙ୍କ ମାଆ ଉପଦେଶ ଦେବେ ଯେ ।

ଦିନେ ରଜା ମନ୍ତ୍ରୀପୁଅଟିକି ଡକାଇଲେ ଏବଂ ପଚାରିଲେ—ତୁମେ ମନ୍ତ୍ରୀ ହୋଇ ପାରିବକି । ଆଚ୍ଛା ତେବେ ମାଆଙ୍କଠାରୁ ବୁଝିଆସି ମୋତେ ଉତ୍ତରଦେବ—ଏ ବୟସରେ ତାଙ୍କ ମନରେ କାମ-ପ୍ରବୃତ୍ତି ଯାଇଛି କି ନାହିଁ ।

ରଜାଗୋଜା, ବୁଝନ୍ତି ଅଖାଡ଼ । ମନ୍ତ୍ରୀପୁଅ ବିଚରା ମୁହଁ ଶୁଖାଇ ଘରକୁ ଫେରି ଶୋଇଲା । ଖାଇଲା ନାହିଁ; କି ପିଇଲା ନାହିଁ । ଅତି ଅସୁନ୍ଦର ପ୍ରଶ୍ନ । ପୁଣି ପୁଅ ହୋଇ ଏଭଳି ଗୋଟାଏ ପ୍ରଶ୍ନର ଉତ୍ତର ମାଆଙ୍କ ଠାରୁ ସଂଗ୍ରହ କରି ରଜାଙ୍କୁ ଶୁଣାଇବାକୁ ପଡ଼ିବ ଯେ !

ମନ୍ତ୍ରୀ-ପୁଅ ଭାବିଲା—କୁଆଡ଼େ ଗୁଡ଼ ପଳାଇଯିବ ।

ବୋହୂଜରିଆରେ ମାଆ ସବୁ କଥା ଶୁଣିଲେ ଏବଂ ପୁଅକୁ କହି ପଠାଇଲେ—ରଜାଗୋଜା, କାଲି ମୁଁ ତାଙ୍କ ପାଖକୁ ଉତ୍ତରଟା ପଠାଇଦେବି ଯେ ସେ ବୋଧ ହୋଇ ଯିବେ । ପୁଅକୁ କହ, ଉଠି ମନ ଖୁସିରେ ଖିଆ ପିଆ କରୁ ।

ତହିଁଆରଦିନ ସଥାବେଳକୁ ପୁଅ ଗାଧୁଆ, ଖିଆ ସାରି ସଜ ହେଲା । ବୋହୂ ହାତରେ ମାଆ ରୁମାଲ ପୁଡ଼ିଆଟିଏ ପଠାଇଦେଲେ ।

ବୋହୂ ଆଣି ତାକୁ ମନ୍ତ୍ରୀପୁଅ ହାତରେ ଦେଇ କହିଲା—ମାଆ କହିଛନ୍ତି ଏ ପୁଡ଼ିଆଟାକୁ ରଜାଙ୍କ ହାତକୁ ଧରାଇ ଦେବ ।

ମାଆଙ୍କ ଆଜ୍ଞା ପାଳନ କରି ପୁଅ ପୁଡ଼ିଆଟିକ ନେଇ ରଜାଙ୍କୁ ଦେଲା । ରଜା ଫିଟାଇ ଦେଖିଲେ—ପାଉଁଶଗୁଡ଼ାଏ । ଏବଂ ସେ ପାଉଁଶ ଗୁଡ଼ିକ ଭିତରେ ଆଉ ଗୋଟିଏ ଛୋଟିଆ ପୁଡ଼ିଆ ଅଛି । ତାକୁ ଫିଟାଇ ଦେଖିଲେ ଯେ ତା ଭିତରେ ମାଟିରୁ ଗଣ୍ଡାଏ ବନ୍ଧା ହୋଇଛି ।

ରଜା ପଣ୍ଡିତମାନଙ୍କୁ ପଚାରିଦେଲେ—ଇଏ ସବୁ କଅଣ ହେ ପଣ୍ଡିତେ ? ପାଉଁଶ ପୁଡ଼ିଆ ଭିତରେ ମାଟି ପୁଡ଼ିଆଟିଏ ?

ଜଣେ ବୁଢ଼ା ପଣ୍ଡିତ ହସରେ ତାଳମାରି କହି ଉଠିଲେ—ମନ୍ତ୍ରୀଆଣି ଅତି ବୁଦ୍ଧିମତୀ । ମଣିମାଙ୍କ ପ୍ରଶ୍ନର ଠିକ୍ ଉତ୍ତର ଦେଇ ପଠାଇଛନ୍ତି । ମଣିଷର ସେ ଲାଳସା ମଣିଷ ମଲାପରେ ପୋଡ଼ି ପାଉଁଶ ହୋଇ ମାଟି ହୋଇଯିବା ଯାକେ ବି ଥାଏ ।

ରଜା ମନ୍ତ୍ରୀଆଣୀଙ୍କ ବୁଦ୍ଧିରେ ଖୁସିହୋଇ ମନ୍ତ୍ରୀପୁଅଟିକ ମନ୍ତ୍ରୀ କରିଦେଲେ ।

ମେନା ହସିପକାଇ କହି ଉଠିଲା—ତୁ କି ନନା, ତୋ କଥା ସେଇଆ ବୋଲି ତ କହିବାକୁ ଚାହୁଁ ?

ହସି ଉଠିଲା—ରାମଦାସ ।

ମେନକା ହସ ଖୁସିରେ ସେଇ ଠାକୁରାଣୀଙ୍କ ଅଗଣାରେ ଚୋଟାଏ କୁଟୁଙ୍ଗି ଘରେ ରହିଗଲା । ହନଗାଡ଼ି ପ୍ରସାଦ ପାଏ ଏବଂ "ହନମେ ମୋହିନୀ···ରାତମେ ବାଘିଣୀ" ହୋଇ ରାମଦାସଙ୍କ ଆଶ୍ରାଧରି ପଡ଼ି ରହିଥାଏ । ବେଳେ ବେଳେ ମନ ଖୁସିରେ ରାମଦାସକୁ ପଚାରିଦଏ—ହଇହେ ନନା ? ତୁମ ପାଉଁଶ କେବେ ମାଟି ହଉଛି ?

ରାମଦାସ ବି ତେଣେ ଠାକୁରାଣୀଙ୍କ ପୂଜାବିଧି କରୁ କରୁ ଏବଂ ଭାଗବତ ପୋଥିରୁ ଅଧ୍ୟାୟ ଅଧ୍ୟାୟ ବୋଲୁଁ ବୋଲୁଁ 'ଶତ୍ତରଖେ

ବଢୁଆସ୍ତୁ'' କରି ଦିନ କଟାଉଥାଏ । ଦିନେ ଦିନେ ମେନକାକୁ ସେ ଶୁଣେଇଦିଏ—ଶୁଣ ଲୋ ଟୋକି ? ମୁଁ ହେଲି କେଉଟୁଣୀ । ଏଣେ ନଆଁ ଉପରେ ବସିଥିବା ହାଣ୍ଡି ଟା ଭିତରେ ଭଜା ହେଉଥିବା ଧାନକୁ ମୁଁ ବାଁ ହାତରେ ଖଡ଼ିକାମୁଠା ଧରି ଖରଡ଼ୁଛି, ତେଣେ ଚୂଡ଼ାଡ଼ିଙ୍କି ପଡ଼ୁଛି ଯେ ଭରଣ୍ଡି ଭିତରେ କୁଟା ହେଉଥିବା ଧାନକୁ ମୁଁ ଡାହାଣ ହାତ ପୂରେଇ ଖେଳଉଛି । ତେଣେ ଢିଙ୍କିକୁଟାଳୀ ସଙ୍ଗରେ ହସି ଖେଳ କଥାଭାଷା ହେଉଛି, ଆଉ ଏଣେ କୋଳ ଭିତରେ ପଶି ରହି ଛୁଆଟା ମୋର ଦୁଧ ଚୁଚୁମୁଛି ଯେ ତାଆଡ଼େ ମନ ରଖିଛି । ଟିକିଏ ବେଖିଆଲ ହେଲେ ହାତ ଉପରେ ଢିଙ୍କି ପାହାର ପଡ଼ିଯିବ ।

ମେନକା ହସି ପକାଇ କହିଲା—କହିବଟି—''ଚିତ୍ତ ରଖେ ବଢୁଆସ୍ତୁ ।''

ରାମଦାସ—ଆଲୋ ଠିକ୍ କଥାଟି କହିଲୁ । ସବୁ କାମ କରି ଯାଉଛି ମୁଁ—ତାଅ‌ନ୍ତ ଭିତରେ ମୋ ମନଟା ଖାଲି ତୋଓରି ଚଉ-କତିରେ ଘୂରି ବୁଲୁଛି ବୋଲି ଜାଣିବୁ ।

ଖଡ଼ିକାଝାଡ଼ୁ ମୁଠାଟାକୁ ଧରି ଅଗଣାଟାକୁ ଓଳୋଉ ଓଳୋଉ ଜବାବ ଦେଇଦିଏ ମେନକା—

ବଡ଼ କୁହାଳିଆ ହୋଇଛୁରେ ରାମଜନା ।
ବୋଇଲା— କହି କମଳା
କହି ଜାଣିଥିଲେ ମକର ମେଳା

ଏହିଭଳି ଦିନରାତି ହସି ଖେଳ ମେନକା ଦିନ କଟାଏ । ସବୁ ନଈରେ ପାଣି ଧାର ଥିଲା ପରି ସବୁ ପୁରୁଷ ଠାରେ ରଙ୍ଗରସ ଥାଏ । ବଡ଼, ସାନ ସବୁ କିସମର ମିଣିପଙ୍କୁ ମେନକା ଦେଖି ଆସିଲାଣି । ମନେ ମନେ ଠିକ୍ କରି ନେଲାଣି, ସମସ୍ତେ ସମାନ । ଗୋଟିଏ ଗୁଣ୍ଡରୁ ଉଠିଛନ୍ତି । ମାଇପି ଲୋକ ହେଲେ—ବାଟା ହଳଦି, ଆଉ ମିଣିପି ଲୋକ ହେଲେ—ରନ୍ଧାଚୂନ । ଦିହେଁ ମିଶିଗଲେ—ନାଲି ହୋଇ ଉଠିଲେ—ଆନନ୍ଦ ଆଉ ପ୍ରେମରେ । ଦିହିଙ୍କ ମନ-ପ୍ରାଣରେ ମହକା ଉଠିଲା—ନାଲି ହୋଇ ।

ହସଖେଳ, ରଙ୍ଗରସ । ଭସିଗଲେ ହଦେଁ ଯାକ ମାତାଲ ହୋଇ—ପ୍ରଖର କାମ-ତରଙ୍ଗରେ । ଭଲମନ୍ଦ, ଆକାଶ ପାତାଳ କିଛି ଠିକ୍ ରହିଲ ନାହିଁ । ଉନ୍ମାଦବେଗ ତାଙ୍କୁ ପାଗଳ କରଦେଲ ଏବଂ ସେମାନେ ପାତାଳଯାକେ ଯାଇ ଉପରକୁ ଫେର ପଡ଼ିଲ ବେଳକୁ ନୂଆ ଛୁଆ କୋଳକୁ ଆସି ଡାକୁଛି—କୁଆଁ, କୁଆଁ ।

ଦୁନଆଁଟା ଏଇଆ । ସୃଷ୍ଟିତତ୍ତ୍ୱ ହେଲା ଏଇଆ । ପ୍ରାଣୀମାନେ ଏଇ ଲୀଳା ଖେଳା ଲଗିଛି । ଗଛଗଛଟା ବଡ଼ ହେଉଛି, ଫୁଲ ଫୁଟାଉଛି । ଫଳ ଧରୁଚ । ମଞ୍ଜି ବୁଣୁଛି ନୂଆଗଛଗଛ ଅଙ୍କୁର ଉଠୁଛି । ପହିଲ ଗଛଟା ବୁଢାହୋଇ ଝାଉଁଳ ପଡ଼ୁଛି । ମର ଯାଉଛି । ଦୁନଆର ସବୁକଥା ହେଲ ଏଇଆ ।

ହନେ ଖରାବେଳେ ବରଣ୍ଡା ଉପରେ ବସି ବସି ମେନକା ଭାଙ୍ଗୁଚ ପାନ । ନଜ ପାଇଁ ଆଉ ରାମନାନା ପାଇଁ । ହସି ହସି ରାମଦାଶ ଆସି ତା ପାଖରେ ବସି ପଡ଼ କହୁଚ—ତୁ ମେନକା ଆଜ ମୋ ପାନ ଖଣ୍ଡିକ ମୋଓଠ ପାଟିରେ ଖୋଇଦେ ।

ମେନକା ପାନଖଣ୍ଡିକ ଖିଲ କର ତା ପାଟିରେ ଖୁଆଇ ଦେଉଛି । ଠିକ୍ ଏତକ ବେଳକୁ କଏ ଜଣେ ଛୁଆଟାଏ କାଖେଇ ଅଗଣା ଭିତରକୁ ପଶି ଆସି, ଚିତ୍କାର କର ଉଠିଲ—ଆରେ ରେ ଖଣ୍ଡିଆ, ଯୋଗନଖିଆ, ନଷ୍ଟ ଶୁଆଟା । ଘରକୁ ନଯାଇ ଏଠି ରାହାସ ଲୀଳା ଲଗେଇଛୁ, ତତେ ମୁ ଦଉଛି ଦେଖ । କାହିଁ ଗଲ ଝାଡ଼ୁ ମୂଠାଟା ।

ଅଗଣାର ଗୋଟାଏ କଣକୁ ଖଡ଼ିକା ଛାଞ୍ଚୁଣିଟାଏ ପଡ଼ିଥିଲ ସେ ତାକୁ ଡାହାଣ ହାତରେ ଗୋଟେଇ ଆଣି ରାମନନା ପାଖକୁ ଧାଇଁ ଆସି ତା ପିଠି ଉପରେ କସିଦେଲ ଦି ପାହାର —ଧାଉଁ ଧାଉଁ କର ।

'ବାଡ଼ପଡ଼ା ଘରକୁ ନଯାଇ ଏଠି ସୁଆଙ୍ଗ ନଚେଇଛୁ । ଛୁଆପିଲ ତେଣେ ଖାଇବା ବନା ମଲେଣି । କୋଉଠି ଗୋଟାଏ ସୁନ୍ଦୁରିଆ

ମାଇକନିଆ ଦେଖିଦେଲ ତ ସବୁ ଭୁଲିଗଲ । ସତ୍ୟାନାଶିଆ ଦଅଁ ପୂଜା ଦରକାର ନାହିଁ । ଯେଉଁ ଦଅଁ ନା, ତାର ପୁଣି ପୂଜା । ଛାଡ଼ ଚାଲକରକ ଆଜ । ଘରକୁ ଚାଲ । ସେଇଠି ମୁ ତତେ ଚୂଲରେ ପୂରେଇ ଦେବ ଯେ ତୋ ମୁହଁରେ ନିଆଁ ଲଗିଯିବ । ଜଳାଜଳା ଖପରା—ଏଇକ୍ଷୁଣି କା ଚାଲ ଘରକୁ ।

ଚଣ୍ଡି ଅବତାର । ଝାଞ୍ଜୁଣି ପଞ୍ଜକ ଧର ପ୍ରହାର କର ଚାଲିଛନ୍ତି । ରଙ୍ଗ ଶ୍ୟାମଳ । ମୁଣ୍ଡ ଉପରୁ ଓଢ଼ଣା ଖସି ପଡ଼ିଲାଣି । ଅଙ୍ଗ ହଲିଗଲେ ଫିଁଟା ମୁଣ୍ଡ-ବାଳଟକ ଏଣେତେଣେ ନାଚି ଯାଉଛି । ହାତରେ ଖଣ୍ଡେ ଶାଢ଼ୀ ପିନ୍ଧିଛି ଯେ, ଛାଡ଼ା ଲୁଗାକୁ ଆଟେଇ ପକେଇ ଲମ୍ବ ଲମ୍ବ ମୁକୁଳା କୁଟୁଦୁଇଟା ନାଥୁରୁ ନାଥୁରୁ ହୋଇ ଏଣେ ତେଣେ ବାଡ଼େଇ ହୋଇ ଯାଉଛି । କାଖରୁ ସାନ ଛୁଆଟା ତଳକୁ ଖସିପଡ଼ି ଭେଁ ଭେଁ ରଡ଼ି ଛାଡ଼ୁଚି । ଲମ୍ବା ମୁହଁଟାରେ ଗ୍ରହଣଖଣ୍ଡି ଓଠ । ପାଟି ଭିତରୁ କେତୁଟା ଦାନ୍ତ ବାହାରକୁ ଦେଖାଯାଉଚି—ମୁଣ୍ଡା ସାବଳ ପରି । ଆଖି ଦୁଇଟା ଖୋଲା ଖୋଲା । ଗାଲ ଦିଇଟା ବସି ଯାଇଚି ଯେ, ହନୁ ଦୁଇଟା ଉଞ୍ଚା ଉଞ୍ଚା ପାହାଡ଼ କୁନ୍ଦ ପରି ଦିଶୁଚି । ପାଟିଟା ଘାଗଡ଼ା ।

ଆରେ ଆରେ ରଇଜଳା, ଉଠୁଣିକା ଘରକୁ ଚାଲ । ତତେ ମୁଁ ବଣାବଳ ଦେବ ଯେ ଦେଖିବୁ । ଘରଦୁଆର ଛାଡ଼ି ଏଠି ତାମସା କରୁଚ । ସବନାଶିଆଟା ଘରେ ତତେ ମୁଁ ଦେଖିନେବରେ ଦେଖିବୁ ।

ଇଏ ହେଲ ରାମନନାର 'ଇସ୍ତିରି' । ତାକୁ ରାମଦାସ ଭାରି ଭୟ କରେ । କୋଉ ଲୋକଟା ତାକୁ ନ ଡରିବ ? ଅନ୍ଧାର ରାତିରେ ଦୈବାତ୍ ଭେଟ ହୋଇଗଲେ, ଯିଏ କେହି ହେଲେ ତ ବେହୋସ ହୋଇଯିବ !

ପାନଭଙ୍ଗା ଛାଡ଼ ମେନକା ଉଠି ପଳାଇଗଲ । ଓଳଟାପାକ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଠାକୁରାଣୀ ଅଗଣାରେ ବାଡ଼ଆପିଟା, ଆଜ କାନ୍ଦ-

ବୋବାଳି ଗୁଲଲା । ଶେଷକୁ ସାମଦାସର ହାତଟାକୁ ଭିଡ଼ ଭିଡ଼ ଘୋସାରି ନେଇଗଲା ତା 'ଇସ୍ତିଶ' ଘରପାକେ । ସେ ଦିନ ଆଉ ଚହ୍ଣିଆର ଦିନ ଠାକୁରାଣୀଙ୍କ ପୂଜାବିଧି ବନ୍ଦ ହୋଇଗଲା ।

ଏକା ଥାଏ ମେନକା । ଦେଖୁ ଦେଖୁ ଇଏସିଏ ଆସିଗଲେ । ଦିନେ ହଠାତ୍ ଚଇନବାବୁ ଅଗଣା ଭିତରକୁ ପଶିଆସି କହିଉଠିଲେ— ଆରେ ଇଏତ ମେନକା, ତୁ କେବେ ଏଠିକି ଆସିଲୁ ?

ମେନକା ଉତ୍ତର ଦେଲା—ଆସିଲଣି ବାବୁ, କେତେଦିନ ହେଲା ।

ଚଇନ ବାବୁ କହିଲେ—ମତେ ତୁ ଖବର ଦେଲୁ ନାହିଁ ? ମୁଁ କଣ ତୋର ପର ! ରାୟସାହେବଙ୍କୁ ତୋ ସାନ ନାନା କ୍ଷମତା ଦେଲେ ଯେ, ମତେ ତ ପଚାରିଲେ ନାହିଁ । ହେଇଟି ସେଏତ ସବୁ ସାରି ଦେଇଛନ୍ତି । ଆଉ କଣ ଅଛି ! ବେଏଁ ଲମ୍ବର କାଠତ ଆସି ବସା ତାଙ୍କରେ ରହିଲଣି । ସତ୍ଯାନାସିଆଟାକୁ ନାନା ତେ ର କ୍ଷମତା ଦେଲେ ଯେ, ସବୁ ଖାଇଖାଇ ଦେଇ ସାରିଦେଲା । ଏଠି ଆଉ କଅଣ ଅଛି ? ହେଇଟି ଦେଖ, ଖବର କାଗଜଟା; କଣ ବାହାରିଚି ପଢ଼ ।

ମେନକା ତାଙ୍କ ହାତରୁ ଖବରକାଗଜ ନେଇ ପଢ଼ିଲା— "ରାୟବାହାଦୁରଙ୍କ ହଠାତ୍ ମୃତ୍ୟୁ । ନକୁଳଚନ୍ଦ୍ର ଚୌଧୁରୀ ବିଷ ଖାଇ ମରିଚନ୍ତି ।"

"ହେଁ, କଅଣ ହେଲା ।" କହିଉଠି ଗ୍ଲୁନଆରେ କାଠ ପାଲଟି-ଗଲା ମେନକା । ହାତରୁ ତାର ଖବର କାଗଜଟା ଖସିପଡ଼ିଲା ।

"ବଡ଼ ନାନା ମଲେ, ରାୟସାହେବ ବି ମଲେ ? ଚଇନ ଆଜ୍ଞା । କଅଣ ହେଲା ତାଙ୍କର ? ପଢ଼ିବଟିକି ।"

ଚଇନ—ମୁଁ ପଢ଼ିଛି । ବିଷ ଖାଇ ମରିଛନ୍ତି । ଧାପ ନଭ ଯାଇଛି । ହରିଶଙ୍କର ଆସି ମୁଖାଗ୍ନି ଦେଇଚି ।

"ହଁ, କଅଣ ହେଲା ।" କହିଉଠି ମେନକା ତଳେ ବସିପଡ଼ିଲା ।

ଏ ଘଟଣା ପରେ ପରେ ଖବରକାଗଜ ମାନଙ୍କରେ ନାନାପ୍ରକାର ଚମକପ୍ରଦ ସମ୍ବାଦମାନ ପ୍ରକାଶ ପାଇବାକୁ ଲାଗିଲା । ସତ, ମିଛ, କପୋଳକଳ୍ପିତ ରଚନାମାନ ତହିଁରେ ସନ୍ନିବେଶିତ ହେଲା । ପାଠକ ମାନେ ସମସ୍ତେ ଏଥିରେ ଅଳ୍ପ ବହୁତେ ଦୁଃଖ ଓ ଆନନ୍ଦ ଅନୁଭବ କରିବାକୁ ଲାଗିଲେ । ଜାଣିବା ଲୋକେ କହିଲେ—ସତ୍ୟର ଚିରକାଳ ଜୟ ହୋଇଥାଏ । ଅତ୍ୟାଚାରୀମାନଙ୍କର କ୍ଷୟପ୍ରାପ୍ତ ହୋଇ-ଥାଏ । ମଣିଷ ମାତ୍ର ଭଗବାନଙ୍କ ବିଚାର-ବେଦୀ ତଳେ କେହି କେବେ ମୁକ୍ତ ପାଇ ପାରନାହିଁ । ଅତ୍ୟାଚାରୀ ରାବଣ, କଂସ ଆଦିଙ୍କ ଅଂଶରେ ରାଜା ଜମିଦାରମାନଙ୍କର ଜନ୍ମ । ଧର୍ମଦେବହିଁ ସେମାନଙ୍କର ବିଲୋପ ସାଧନ କରିଥାଆନ୍ତି ।

ହଜାର ଭଲଗୁଣ ଥିଲେ ସୁଦ୍ଧା ତାଙ୍କର ଅମାନ୍ତର କାଳିମା ମଧ୍ୟରେ ସବୁଯାକ ଲୋପ ପାଇଗଲା । ଚରିତ୍ର ଦୋଷଠୁଁ ବଡ଼ ଦୋଷ ନାହିଁ । ଆଜି ରାୟସାହେବଙ୍କର ସେଇ ଦୋଷରୁ ଏତେବଡ଼ ଘରଟା ପୂରାପୂରି ଶେଷ ହୋଇଯିବାକୁ ବସିଲାଣି ।

କେହି କେହି କହିଲେ—ସ୍ତ୍ରୀ ବିରହରେ କାତର ହୋଇପଡ଼ି ଭାବପ୍ରବଣ ସାହିତ୍ୟିକ ନିଜ ହାତରେ ମୃତ୍ୟୁବରଣ କରିନେଇଛନ୍ତି । ହୁଏତ ନିଜର ଅର୍ଦ୍ଧାଙ୍ଗିନୀ ନିକଟକୁ ନିଜକୁ ନିଜେ ସେ କଡ଼ାଇ ନେଇ ଯାଇଛନ୍ତି ।

ଆଉ ଗୋଟିଏ ପତ୍ରିକା ଲେଖିଲା—ସ୍ତ୍ରୀଙ୍କ ମୃତ୍ୟୁପରେ ସ୍ୱାମୀଙ୍କ ଅଭିସାର ଯାତ୍ରା ।

ଅନ୍ୟ ପତ୍ରିକା ଲେଖିଲା—କଥାକାର, ଗାଳ୍ପିକ, ରସିକ କବିଙ୍କ ଆତ୍ମୋତ୍ସର୍ଗ ।



ସୁଭଦ୍ରାଦେଈପୁର ଉଠିଲା କି ପଡ଼ିଲା । ଶେଷକୁ ସମ୍ଭାଳି ନ ପାରି ମେନକା କଟକ ଫେରିଆସିଲା । ଦେଖିଲା ସୁବର୍ଣ୍ଣଦେଈ ପାଗଳ ପରି ହୋଇପଡ଼ିଲେଣି । ରାୟସାହେବଙ୍କ କଟକ ଘରଟା ଛାର-ଖାର ହୋଇଗଲାଣି । ପୁଅଟି କୁଆଡ଼େ କାହିଁ, ଘରକୁ ଆସୁନାହିଁ । ଲଜ୍ଜାରେ ଲୁଚିଲୁଚି ଏଣେତେଣେ ବୁଲୁଛି । କାହାକୁ ଲାଗି ଗୁହାଳ । କାହାକୁ କାହିଁ । ସମସ୍ତେ ତାଙ୍କୁ ଘୃଣା କରୁଚନ୍ତି । ଚାକର ବାକର ଛୁଡ଼ିଛୁଡ଼ି ପଳାଇ ଗଲେଣି । ମେନକା ଫେରିଆସି ସୁଭଦ୍ରାଦେଈ ପୁର ଛାରଖାର ହୋଇଯାଇଥିବା କଥା କହିଗଲା । ଅନ୍ଧକାର ମାଡ଼ିଆସିଲେ ସବୁଆଡ଼ ଅନ୍ଧାର ହୋଇଯାଏ । ପାଗଳପରି ଗୁଣୁଗୁଣୁ ହୋଇ ସେ କେବଳ ଭାବି ହେଉଛନ୍ତି—ମୋରି ପାଇଁ ସ୍ୱାମୀ ଆତ୍ମ-ହତ୍ୟା କଲେ । ମୋରି ପାଇଁ ରାୟବାହାଦୁର ମୋ ବଡ଼ଭଉଣୀଙ୍କୁ ମରାଇଲେ । ମୋରି ହାତରେ ମୁଁ ରାୟସାହେବଙ୍କୁ ବିଷଦେଇ ମାରିଲି । ପୁଣି ମୋଓରି ଦୋଷରୁ ପିତୃକୁଳର ସର୍ବନାଶ ହୋଇଗଲା । ମୋରି ପାଇଁ ମଧୁସୂଦନପୁରବି ଛାରଖାର ହୋଇଗଲା । ଆରମ୍ଭରୁ ଶେଷ ଯାଏ ମୁଇଁ ଚଣ୍ଡାଳୁଣୀ ଅଗ୍ନିଶିଖାପରି ଜଳୁଛି ଏବଂ ପତଙ୍ଗ ପରି କିଏ କେତେ ଉଡ଼ି ଉଡ଼ି ଆସି ପଡ଼ି ମରୁଛନ୍ତି ମୁଁ ଆଉ କେତେଦିନ ?

ପ୍ରିୟବାବୁ ଡାକ୍ତର କୁଆଡ଼େ ଆଉ ଆସୁନାହାନ୍ତି । କାହିଁକି ତେବେ ସେ ରାୟସାହେବଙ୍କୁ ମରାଇଲେ ?

ଘରୁ ଗୋଟି ଗୋଟି ହୋଇ ସମସ୍ତେ ଛାଡ଼ିଛୁଡ଼ି ଦେଇ ଗଲେ । ଶେଷକୁ ପୂଜାରୀ ପିଲାଟି ଗଲା ଏବଂ କଚୁଆନଟିବି ଗଲା । ଘୋଡ଼ା ଦୁଇଟା ବିକ୍ରି ହେଲେ ଏବଂ ବଗିଗାଡ଼ିଖଣ୍ଡିକ ଭାଙ୍ଗିଭୁଙ୍ଗି ଗଲା । ସାଇଲୋକେ ଏ ଘରକୁ ଆସିବାକୁ ଡରୁଛନ୍ତି । ନିର୍ଜନ କୋଠା-

ଘରଟା ଏ ମୁଣ୍ଡରୁ ସେ ମୁଣ୍ଡପାକେ ମେଲା ହୋଇ ପଡ଼ିଛି । ଭୂତ ଭୟରେ କେହି ଏଣିକି ପାଦପକାଉ ନାହାନ୍ତି; ତେଣୁ ଘରୁ କିଛି ପ୍ରାୟ ଚୋରି ଯାଉନାହିଁ । ଚୋରି ଯାଉଛି କି ନାହିଁ, ସେକଥା ଦେଖିବାକୁ ମଧ୍ୟ କେହି କୁଆଡ଼େ ନାହିଁ । ଅଛନ୍ତି କେବଳ ଦୁଇଟି ସ୍ତ୍ରୀଲୋକ— ସୁବର୍ଣ୍ଣ ଆଉ ମେନକା ।

ଦିନେ ହଠାତ୍ ଶଶିବାବୁ ଆସି ସୁବର୍ଣ୍ଣଙ୍କୁ ସାକ୍ଷାତ କଲେ । ଦେଖିଲେ ସୁବର୍ଣ୍ଣଦେବୀ ସମସ୍ତଙ୍କଦ୍ୱାରା ଘୃଣିତ ଓ ଅପମାନିତ ହୋଇ ବଡ଼ କଷ୍ଟରେ ଦିନାତିପାତ କରୁଛନ୍ତି । ଶୁଣିଲେ ଏତେ ବିପଦ ପରେ ସୁଦ୍ଧା ଶଶିବାବୁ ଓକିଲ ମକଦ୍ଦମା ଛଳାଇଛନ୍ତି ।

ଚଇନବାବୁ ଘରଭିତରକୁ ପଶିଯାଇ ଶୋଇବା ଖଟ ଉପରେ ସୁବର୍ଣ୍ଣଙ୍କୁ ଭେଟିଲେ । ଚିନ୍ତା, ଅନୁଶୋଚନା ଓ ଭୟରେ ସୁବର୍ଣ୍ଣ ଏକ ପ୍ରକାର ଅଚଳ ହୋଇ ପଡ଼ିଥାଆନ୍ତି । ତାଙ୍କ ହାତଟାକୁ ଧରିପକାଇ ଚଇନବାବୁ କହିଲେ—କଅଣ ହୋଇଛି ତୁମର ? ନିଜ ନିଜର କର୍ମାକର୍ମର ଫଳାଫଳ ଭୋଗ କରିବାପାଇଁ ଯିଏ ଯାହାର ଚାଲିଗଲେ । ତୁମେ କିଆଁ ଏମିତି ପଡ଼ିରହିଛ ? ମୁଁ ଅଛି । ତୁମର କିଛି ଅଭାବ ଅସୁବିଧା ରହିବ ନାହିଁ ; ଉଠ ।

ସୁବର୍ଣ୍ଣ କଡ଼ ଲେଉଟାଇ ଅନାଇଲେ । ଉଠିବସି ଦୀର୍ଘନିଃଶ୍ୱାସ ଟାଣିଲେ । ଚଇନଙ୍କୁ ଦେଖି ସାହସ ଆସିଲା । ପଚାରିଲେ—କେତେ ଦିନ ତୁମେ ଏଠି ରହିପାରିବ ?

ଚଇନ ଉତ୍ତର ଦେଲେ--ଯେତେଦିନ ଦରକାର ।

ବୁଡ଼ିଗଲା ପ୍ରାଣୀ କୁଟାଖିଅଟିକୁ ବି ଧରି ପକାଏ । ନିଃଶ୍ୱାସ ଥିବା ଯାକେ ମଣିଷର ଆଶା ଥାଏ । ଆଶାହିଁ ପ୍ରାଣୀର ଜୀବନ । ଚତୁର୍ଦ୍ଦିଗ ଜ୍ଞାନଶୂନ୍ୟ ହୋଇ ସୁବର୍ଣ୍ଣଦେବୀ ଚଇନଙ୍କ ହାତଟାକୁ ଧରିପକାଇଲେ । କହିଲେ—

ଶେଷକୁ ତୁମେହିଁ ମୋପାଖକୁ ଆସିଲ ? ସମସ୍ତେ ଚାଲିଗଲେ । ଏକା ପଡ଼ିଛି ମୁଁ । ଅଗାଧ ସମୁଦ୍ରରେ ଭାସୁଛି । ଏ ବିପଦବେଳେ ତୁମେ ମୋତେ ଦେଖିବାକୁ ଆସିଲ ?

ଚଇନ ଖଟ ଉପରକୁ ବସି ପଡ଼ିଲେ । ଏବଂ ସୁବର୍ଣ୍ଣଦେବୀ ତାଙ୍କ ଛାତି ଉପରକୁ ଢ଼ଳିପଡ଼ିଲେ । ଏତେବଡ଼ ପ୍ରେତ ପୁରିରେ ଏକା ସେଇ ଜୀଇ ରହିଛି । ନିଜ ବକ୍ଷ ଉପରକୁ ଟାଣିଆଣି ଦୁଇ ବାହୁ ବେଢ଼ା ଭିତରେ ଜାବୁଡ଼ି ଧରି ଚଇନ କହିଲେ—ପରିବୋଲି ଭାବୁଚକି ସୁବର୍ଣ୍ଣ ? ତୁମେ ପରି ଦିନେ ତୁମର ସର୍ବସ୍ୱ ମୋନିକଟରେ ଓଜାଡ଼ି ଦେଇଥିଲ ! ମୁଁ କଅଣ କେବେ ତୁମକୁ ପର କରିଦେଇ ପାରେଁ ?

ଚଇନଙ୍କ ଛାତିରେ ମୁଣ୍ଡଗୁଞ୍ଜି ସୁବର୍ଣ୍ଣ ଅଶ୍ରୁ ବିସର୍ଜନ କରୁଛନ୍ତି । ଚଇନ କହିଲେ—ଯାହା ହେବାର ହେଲଣି, ସବୁ ଭୁଲିଯାଅ । ପଛକଥା ପାସୋରିଦେଇ ଆଗକୁ କଅଣ କରିବା, ସେଇକଥା ଠିକ୍ କର । ଏଠି ଯେବେ ଭଲଲାଗୁନାହିଁ, ଭୟ ହେଉଚି, ତେବେ ସୁଭଦ୍ରାଦେଇ ପୁରକୁ ଚାଲ ।

ସୁବର୍ଣ୍ଣ କିନ୍ତୁ ସୁଭଦ୍ରାଦେଇପୁରକୁ ଯିବାକୁ ଚାହାନ୍ତି ନାହିଁ । କହିଲେ—ଯାହା ହେବାର ହେଲଣି, ଯିଏ ଯିବାର ଗଲେଣି । ମକଦ୍ଦମା ଚାଲିଚି ଓ ଚାଲିବ । ଏକ ପକ୍ଷରେ ମୋର ପୋଷ୍ୟପୁତ୍ର ନିକୁଞ୍ଜକିଶୋର ଏବଂ ଅନ୍ୟପକ୍ଷରେ ନାମାଙ୍କ ପୁଅ ହରିଶଙ୍କର; ଶଶିବାବୁ ଓକିଲ ଆଇନ-ଖେଳ ଚଳେଇଚନ୍ତି । ନିକୁଞ୍ଜର ଚିନ୍ତାହିଁ ମୋତେ ଆଜଯାକେ ବଞ୍ଚାଇରଖିଛି । ଟଙ୍କାକଉଡ଼ି କିନ୍ତୁ ମୋହାତରେ ଆଉ କିଛିନାହିଁ । ଯଦି କିଛି ଯୋଗାଡ଼ କରାଇ ଦେଇ ପାରନ୍ତ, ତେବେ ମୋର ବହୁତ ଉପକାର ହୁଅନ୍ତା ।

ଚଇନ ହେଲେ ମକଦ୍ଦମା ଲୋକ । ମାମଲତକାରୀ ବୁଦ୍ଧି ତାଙ୍କ ମୁଣ୍ଡଭିତରେ ଚୁଉଁକନା ଗୋଟାଏ ଖିଆଲ ଖେଳେଇ ଦେଲା ।

ଚଇନଙ୍କଠାରୁ ସୁବର୍ଣ୍ଣଙ୍କ ସଖିତ୍ତିବାଡ଼ ବନ୍ଦି ହୋଇଯାଇଥିବା କଥା ମେନକା ଶୁଣି ଆସିଥିଲା ଏବଂ ସୁବର୍ଣ୍ଣ ଆଗରେ କହିଥିଲା ।

ଘଡ଼ରେ ଚଇନଙ୍କଠାରୁ ଟିକିନକି ସବୁ ହାଲଚାଲ ଶୁଣିପାରି ସୁବର୍ଣ୍ଣ କାଠ ପାଲଟିଗଲେ । ତଥାପି ତାଙ୍କର ଟଙ୍କା ଦରକାର । ରାୟ ବାହାଦୂରଙ୍କ ସମ୍ପତ୍ତି ଓ ଘରବାଡ଼ିର ଆଶା ସେ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । ଚଇନନ୍ଥି କହିଲେ—ମୁଁ ଟଙ୍କା ଦେବି । ଚିନ୍ତା କରନାହିଁ ।

କାମିନୀ ଆଶାରେ କଟକ ଆସି ଚଇନବାବୁ ପ୍ରଚୁର କାଞ୍ଚନ ଲାଭର ସନ୍ଧାନ ପାଇଗଲେ କି ଆଉ ? ବୃହସ୍ପତି ତାଙ୍କର ପଞ୍ଚମରେ ଅବସ୍ଥିତ । ଏକଶଯ୍ୟାରେ ଶୁଆଇ ସେ ବୁଝାଇଲେ—ତୁମେ ଚିନ୍ତା କରନାହିଁ ସୁବର୍ଣ୍ଣ । ତୁମେ ବର୍ତ୍ତମାନ ମୋର ସର୍ବସ୍ୱ । ମୁଁ ମଧ୍ୟ ତୁମରି ସବୁ । ରାୟବାହାଦୁର ଏକପ୍ରକାର ତୁମକୁ ଦାଣ୍ଡରେ ଛିଡ଼ା କରାଇଦେଇ ଚାଲିଯାଇଛନ୍ତି । ଏଠାରେ ସମ୍ପତ୍ତିବାଡ଼ି ନକୁଞ୍ଜ ନିଶ୍ଚୟ ପାଇଯିବ । ହୁଏତ ଅଳ୍ପକିଛି ଟଙ୍କା ଆଉ ଦରକାର—ମାମଲା—ଖରଚ ପାଇଁ । ମୁଁ ତାର ବନ୍ଦୋବସ୍ତ ନିଶ୍ଚୟ କରିଦେବି । ତୁମେ ନିଶ୍ଚିନ୍ତ ହୋଇ ଶୋଇପଡ଼ ।

ଅନ୍ୟର ଅବଲମ୍ବନ ପାଇଗଲେ ନାରୀର ପ୍ରାଣରେ ନବୀନ ପ୍ରେରଣା ଜାଗି ଉଠିଥାଏ । ଚଇନ ସହିତ ଏକାଠି ଶୋଇ ହତାଶ ପ୍ରାଣରେ ତାର ନବୀନ ଆଶାର ସଞ୍ଚାର ହୋଇଛି । ଅନେକ ଦୁଶ୍ଚିନ୍ତା ଦୂରହୋଇ ଯାଇଛି । ତିନିଚାରିଦିନ ପରେ ଗାଁକୁ ଯାଇ ଚଇନବାବୁ ନିଜଘରୁ ତିନିଚାରି ହଜାର ଟଙ୍କା ଅଣାଇଲେ । ସୁବର୍ଣ୍ଣଙ୍କୁ କହିଲେ— ଚାଲ ତୁମେ । ମୋର୍ଣ୍ଣିଆରେ ଗୋଟାଏ ବେନାମୀ ଦଲିଲ ରେଜିଷ୍ଟ୍ରି କରିଦେଇ ଆସିବା । ମାଲି ମାମଲା କଥାରେ ଏପଟ ସେପଟ କିଛି ଠିକ୍ ଠିକଣା ନଥାଏ । ହୁଏତ କେତେ ବେଳେ କିଏ ତୁମନାମରେ କିଛି ଗୋଟାଏ କ୍ଷତିପୂରଣ ଦାବୀ କରିବସିବ । ତୁମ ନାମରେ ସମ୍ପତ୍ତି ଥିଲେ କ୍ଷୋଭ ଉଠାଇବ । ସମୟ ଖରାପ ପଡ଼ିଛି ସୁବର୍ଣ୍ଣ ; ବେଳହୁଁ ସାବଧାନ ହୋଇଗଲେ ଭବିଷ୍ୟତ ବିପଦକୁ ଏଡ଼େଇ ଦେଇହେବ । ରାୟ ବାହାଦୂର ସିନା ବିଚକ୍ଷଣ ଓକିଲ ଥିଲେ ବୋଲି ବିପଦ ପଡ଼ୁନଥିଲା । ଶଶିବାବୁ କିନ୍ତୁ ସାଙ୍ଘାତିକ ଲୋକ ।

ଚଇନଙ୍କୁ ପୁରାପୁରି ବିଶ୍ୱାସକରି ସାମାନ୍ୟ ତିନିଚାରି ହଜାର ଟଙ୍କା ପାଇଁ ସୁଭଦ୍ରାଦେଇପୁରରେ ଥିବା ଅବଶିଷ୍ଟ ଘରବାଡ଼ି ଓ

ଜମିଜମା ସବୁ ଚକ ଭିଷ୍ଣୁକବାଲା ରୂପେ ଚଇନ ବାବୁଙ୍କ ନାମରେ ରେଜିଷ୍ଟ୍ରି କରିଦେଲେ ସୁବର୍ଣ୍ଣ । ସେ ଜାଣିଲେ ଯେ ଏ କବାଲାଟି ବେନାମୀ କବାଲା ମାତ୍ର । କିନ୍ତୁ କବାଲା ଖଣ୍ଡିକ ହସ୍ତଗତ କରିସାରିଲା ପରେ ଚଇନ ବାବୁ ଚମ୍ପଟ ଦେଲେ । କହିଗଲେ ଆଠଦିନପରେ ଫେରିବେ ବୋଲି, ମାତ୍ର ଆଉ ଆସିଲେ ନାହିଁ ।

ସୁବର୍ଣ୍ଣ ମେନାକୁ କିଛିଦିନ ପରେ ଆଉଥରେ ଗାଁକୁ ପଠାଇଲେ । ମାତ୍ର ମେନା ଦିନେ ଅଧେ ଠାକୁରାଣୀଙ୍କ ମେଲରେ ଶୋଇ ପ୍ରସାଦ ଖାଇ ନିରାଶ ହୋଇ ଲେଉଟି ଆସିଲା । ଚଇନଙ୍କ ସାକ୍ଷାତ ମଧ୍ୟ ମିଳିଲା ନାହିଁ । ମେନକା ଦେଖିଲା ସବୁଘରେ ଚଇନବାବୁ ତାଲାବନ୍ଦ କରିଦେଇ ସ୍ୱତନ୍ତ୍ର ଜଗୁଆଳ ରଖାଇ ସାରିଲେଣି । ଖଞ୍ଜାଭିତରକୁ ପଶିବାକୁ ମେନା ବାଟ ପାଇଲା ନାହିଁ । ଜଗୁଆଳ କହିଲା—ସେ ହୁକୁମ ଆଉ ନାହିଁ ।

ନିରାଶ ହୋଇ ସେ କଟକ ଫେରିଆସିଲା । ତାଠାରୁ ସବୁ କଥା ଶୁଣି ସୁବର୍ଣ୍ଣ ହତଜ୍ଞାନ ହୋଇ ପଡ଼ିଲେ । ଦୁନିଆରେ କାହାରିକି ବିଶ୍ୱାସ ନାହିଁ ।

ସୁବର୍ଣ୍ଣ ଦେଖି ନିକୁଞ୍ଜ କିଶୋରକୁ ଖୋଜାଖୋଜିକରି ବୋର୍ଡ଼ିଂରୁ ଘରକୁ ଡକାଇ ଆଣିଲେ । ସେ ଆସି ଘରେ କିଛିଦିନ ରହିଲା । ମାତ୍ର ମାଆଙ୍କ ସହିତ ସମ୍ପର୍କ ରଖିବାକୁ ସେ ଚାହେଁ ନାହିଁ । ଏଙ୍କୁ ସେ ଘୃଣାକରେ । ଏଠାଘର ଦ୍ୱାରକୁ ଘୃଣାକରେ । ନିଜକୁ ସେ ସବୁ ପ୍ରକାରେ ଅପମାନିତ ମନେକରେ । କୌଣସି ଏକ ଅଜ୍ଞାତ ସ୍ଥାନକୁ ପଳାଇଯାଇ ନିଜକୁ ସେ ଲୁଚାଇ ଦେବାକୁ ଚାହେଁ । ଏ ପରିଚିତ ସମାଜରୁ ଚିରଦିନପାଇଁ ପଳାଇ ଯିବାକୁ ସେ ବାଟ ଖୋଜୁଥିଲା । ସୁବର୍ଣ୍ଣ ଯେତେ ଆଶା ଦେଲେସୁଦ୍ଧା ରାୟବାହାଦୂରଙ୍କ ସମ୍ପତ୍ତିବାଡ଼ି ପାଇବବୋଲି, ସେ କେବେହେଲେ ଆଶା କରିପାରି ନାହିଁ । ଦେଶ ସାରା ଲୋକେ ରାୟବାହାଦୂରଙ୍କୁ ଘୃଣା କରୁଛନ୍ତି । ସୁବର୍ଣ୍ଣ ନାମରେ ଯାବନ୍ତୀୟ କଳଙ୍କ ରଟୁଛନ୍ତି । ତେଣୁ ସେ ଏ ଅଭିଶପ୍ତ ପରିବାରର ଉତ୍ତରାଧିକାରୀ

ରୂପେ ଭବିଷ୍ୟତରେ ନିଜକୁ ପରିଚିତ କରାଇବାପାଇଁ ସେ ଆଦୌ ଇଚ୍ଛା କରୁନଥାଏ ।

ଦିନେ ହଠାତ ଦେଖାଗଲା—ନିକୁଞ୍ଜ ନାହିଁ । କୁଆଡ଼େ ଚାଲିଯାଇଛି । ସୁବର୍ଣ୍ଣଙ୍କ ଲୁହା ସିନ୍ଦୁକର ତାଲା ଖୋଲାପଡ଼ିଛି ଏବଂ ରଜନିବାବୁ ଦେଇଥିବା ଜରସମନ ଟଙ୍କାତକ ନାହିଁ । ଶୂନ୍ୟ ସିନ୍ଦୁକଟିକୁ ଅନାଇଦେଇ ସୁବର୍ଣ୍ଣ ଦେବୀ 'ତୁନ୍ତୁ' କରି ମୁଣ୍ଡ ବାଡ଼େଇ ଦେଲେ । ମେନକା ଆସି କୁଣ୍ଢେଇ ପକାଇ ଚିତ୍କାର କରିଉଠିଲା । କିନ୍ତୁ ଏଘରର ଚିତ୍କାର ଶୁଣି ଦୌଡ଼ି ଆସିବାକୁ କୌଣସି ଲୋକ ପ୍ରସ୍ତୁତ ନୁହେଁ । ଗୋଟିଏ ନା ଗୋଟାଏ ଅଦ୍ଭୁତ ଘଟନା ଏଘରେ ନିତିପ୍ରତି ଘଟିଯାଉଛି । ଏଘରୁ କନ୍ଦାକଟା ଶୁଣି ଲୋକେ କୁହାକୁହି ହେଉଚନ୍ତି—ଆଜି ପୁଣି କିଏ ମଲାରେ, କିଏ କାହାକୁ ମାଇଲା ?

ଏ ଘରକୁ ଲୋକେ ନରକ-କୁଣ୍ଡ ପରି ଘୃଣାକରନ୍ତି । ଏବଂ ପ୍ରେତପୁରୀ ପରି ଭୟ କରନ୍ତି ।

ଯାହାହେଉ ଉପର ଓଳିକି ନିକୁଞ୍ଜ ହାତର ଖଣ୍ଡିଏ ଚିଠି ମିଳିଗଲା—ଟେବୁଲ ଉପରେ ରଖାଯାଇଥିଲା । ନିକୁଞ୍ଜ ଲେଖିଛି—ତୁମେ ମାଆ ହୁଅ କି ମାଉସୀ ହୁଏ ମୋର କିଛି ଯାଏଆସେ ନା । ଯେଉଁ କଳଙ୍କିତ ପଥ ଦେଇ ତୁମେ ମୋତେ ସଂସାରକୁ ଆଣିଛ, ତାହାହିଁ ମୋର ଏ ଜୀବନ ପ୍ରତି ପ୍ରାଣାନ୍ତ ଅପମାନ । ମୁଁ ଏ ସମ୍ପତ୍ତି ଚାହେଁ ନାହିଁ କି ତୁମ ସହିତ କୌଣସି ସମ୍ପର୍କ ରଖିବାକୁ ଚାହେଁ ନାହିଁ । କୌଣସି ଏକ ଅଜ୍ଞାତ ସ୍ଥାନକୁ ଚାଲିଯାଇ ମୁ ମୋର ଏ କଳଙ୍କ ବୋଳା ମୁଖଟିକୁ ସାରାଜୀବନ ପାଇଁ ଲୁଚାଇ ଦେବାକୁ ଚାହେଁ । ବାଟ-ଖରଚ ପାଇଁ ତୁମ ସିନ୍ଦୁକରେ ଥିବା ଟଙ୍କାତକ ନେଇଗଲି । ଆଉ ମୋର କିଛି ଲୋଡ଼ା ନାହିଁ । ବୃଥାରେ ଖୋଜା-ଖୋଜି କରିବ ନାହିଁ । ଖୋଜିଲେ

ଯେ ମୋତେ ଆଉ ପାଇବ  ଏ ଆଶା ବୃଥା । ତେଣୁ କାହିଁକି  ବୃଥାରେ ମୋ ପାଇଁ ତୁମର ମୂଲ୍ୟବାନ୍ ସମୟ ନଷ୍ଟ କରିବ ? ଆଜି ମୁଁ ଏ ସହର ଛାଡ଼ି ଚାଲି ଯାଉଛି ବୋଲି ଜାଣିବ ।

। ଇତି ।

ନିକୁଞ୍ଜ

ଚିଠି ଖଣ୍ଡିକ ପଢ଼ି  ସୁବର୍ଣ୍ଣଦେବୀ କାଠ ପାଲଟି  ଗଲେ । ଭୂଇଁ ଉପରେ କଚଡ଼ି ହୋଇ ପଡ଼ିଲେ । ମେନକା ପାଣି ଛିଞ୍ଚି  ବଞ୍ଚାବଞ୍ଚି କରିବାକୁ ଲାଗିଲା ।



ଏତେବଡ଼ ଘରଟା ଭିତରେ ଦୁଇଟି ନାରୀ ଛଡ଼ା ଆଉ କେହି ନାହିଁ । ଘରଦ୍ୱାରଗୁଡ଼ାକ ଖାଇଗୋଡାଉଛି । ଅଭାବ, ଉତ୍ତେଜନା ଓ ଚିନ୍ତାରେ ସୁବର୍ଣ୍ଣର ଶରୀରଟା ଅତି ଶୀଘ୍ର ଝଡ଼ିଯାଉଚି । ମେନକା ବି ଅଭାବ ଅସୁବିଧା ଭିତରେ ଦରମରା ହୋଇ ଗଲଣି । ଗୁଡ଼ ପଳାଇ ଯିବାକୁ ଭାବୁଛି । ଭାବୁଛି—ଏଇ ରାକ୍ଷସୀ ସ୍ୱାମୀଙ୍କ ମରାଇଛି । ଇଆରି ପାଇଁ ରାୟ ବାହାଦୂର ନିଜ ସ୍ତ୍ରୀଙ୍କୁ ମରାଇଲେ । ଇଏ ପୁଣି ରାୟ ସାହେବଙ୍କୁ ମାଇଲା । ମୋତେ କେତେବେଳେ ମାରିଦେବା ତା ପକ୍ଷେ ଅସମ୍ଭବ ନୁହେଁ ତ !

ଭାବୁଛି—କୁଆଡ଼କୁ ଚାଲିଯିବ ।

ଫେର ଭାବୁଛି—ଆପଣାର ହୋଇ କିଏ କେଉଁଠି ଅଛି ତାର ?

ସୁବର୍ଣ୍ଣ ପଚାରିଲେ—ମେନକା ଲୋ, ଏ ନିଲଠା ଜୀବନଟା କେବେ ଯିବ କହିଲୁ ।

ମେନା—କାହିଁକି ଏତେ ବିଚଳିତ ହେଉଛ ସାଆନ୍ତାଣି ? ସବୁଦିନେ ଏ ଦୁଃଖ ନଥିବ । ଗଡ଼ିହେଲେ, ଦିନବି ହେବ । ଦୁଃଖପରେ ସୁଖ ବି ନିଶ୍ଚେ ଫେରି ଆସିବ ।

ସୁବର୍ଣ୍ଣ—ଆଉ କିଏ ଦେବଲୋ ? ନିକୁଞ୍ଜର ଚିଠିଟା ପଢ଼ିଲୁ-ଟିକି ? ଟଙ୍କାତକ ନେଲା, ନେଲା ପରବାୟୁ ନାହିଁ, ପଳାଇ ଗଲା କାହିଁକି ? ଗଲାବା କୁଆଡ଼େ ? ତାଆରି ପାଇଁ ସିନା ମାଲ ମାମଲା ! ତାଆରି ପାଇଁ ସିନା ଏତେ ଦୁଃଖ କଷ୍ଟ ମୁଁ ସହୁଚି ! ତାଆରି ପାଇଁ ସିନା ସେଠିକାର ସବୁ ସମ୍ପତ୍ତି ମୁଁ ହରାଇ ବସିଲି ! ସବୁ ତ କଲି

ତାଆର ପାଇଁ । ସେ ମରି ପଳାଇଗଲା କୁଆଡ଼େ ? କାହିଁକି ? ତାକୁ ଖୁଣ୍ଡି ମୁଁ ବଞ୍ଚିବି କାହିଁକି ? ଏବଂ କେମିତି ବା ବଞ୍ଚିବି ?

ମେନା—ହତାଶ ହୁଅନାହିଁ ନାନୀ । ଦିନେନାଦିନେ ନିକୁଞ୍ଜବାବୁ ନେଉଟି ଆସିବେ । ମକଦ୍ଦମା ଡିଗ୍ରି ହେବାର ଖବର ପାଇ ନିଶ୍ଚେ ସେ ଫେରି ଆସିବେ ।

ସୁବର୍ଣ୍ଣ ପ୍ରାଣରେ ଆଶାର ସଞ୍ଚାର ହେଉଛି । ଝାଉଁଳି ପଡ଼ିବା ଗଛରେ ପତ୍ର କଅଁଳି ଉଠୁଛି । କହିଲେ—ମେନା ନେ, ଆଉଥରେ ତୁ ସୁଭଦ୍ରାଦେଈ ପୁରକୁ ଯା । ଚଇନ ବାବୁଙ୍କୁ ମୁଁ ଖଣ୍ଡେ ଚିଠି ଲେଖୁଛି । ଦେଖାଇବୁ । କହିବୁ—ଏ ଜୀବନଟାକୁ ରକ୍ଷା କରନ୍ତୁ । ଦୁନିଆରେ ତାଙ୍କ ଛଡ଼ା ମୋର ଆଉ କେହି କୁଆଡ଼େ ନାହିଁ ଠିକ ! ଶେଷକୁ ତାଙ୍କୁ ହିଁ ବିଶ୍ୱାସ କରି ପନ୍ଦର କୋଡ଼ିଏ ହଜାର ଟଙ୍କାର ସମ୍ପତ୍ତିକୁ ମୁଁ ତାଙ୍କୁ ସାମାନ୍ୟ କେତେ ଟଙ୍କାରେ କବଲା କରିଦେଲି । ଯାହା କିଛି ଟଙ୍କା ସେ ଦେଇଥିଲେ, ତାକୁବି ନିକୁଞ୍ଜ ଚଣ୍ଡାଳ ନେଇ ପଳାଇ ଗଲା । ଆଉ କିଛି ଚଇନ ବାବୁ ନଦେଲେ ମୁଁ ନିଶ୍ଚେ ମରିଯିବି । ତାଙ୍କର ନାମରେ ନାରୀ-ହତ୍ୟା ଦୋଷ ଲାଗିବ ।

ମେନା ଅନେକ ଭାବି "ହଉ" ବୋଲି କହିଲା ।

ସୁବର୍ଣ୍ଣ ଅତି କରୁଣ ଭାବେ ଚିଠି ଖଣ୍ଡିଏ ଲେଖିଲେ । ଅଳ୍ପକିଛି ବାଟ ଖରଚ ହାତରେ ଧରି ମେନକା ଏତେ ବାଟ ଗଲା ସତ, ମାତ୍ର ଚଇନବାବୁ ଯାହା କହିଲେ, ସେତିକିରେ ତାର ମନକଷ୍ଟ ବୋଧ ହୋଇଗଲା । କହିଲେ—ମେନା, ଶୁଣ । ତୁ କଅଣ ଭାବିଚୁ ମୋର ଛୁଆ ପିଲା, ଘର ଦ୍ୱାର କିଛି ନାହିଁ ଯେ ମୁଁ ତାଙ୍କୁ ନେଇ ଘର ସଂସାର କରିବି ? ସଉକରେ ସେତିକି ଯାହା ହୋଇଗଲା, ଗଲା । ଏଣିକି ସେ କିଏ ମୁଁ କିଏ ? ମୋ ପାଖରେ ଟଙ୍କା କଉଡ଼ି ଯାହା କିଛି ଥିଲା, ସବୁତକତ ତାଙ୍କୁ ଦେଇ ଆସିଲି । ସୁବିଧା ହେଲେ ମୁଁ ତେଣେ ସିନା କେବେ ଯିବି ! ଏବେ ଆଉ ବେଳେ କାହିଁ ? ସୁବର୍ଣ୍ଣ ଯାହା ଯାହା କରି ଯାଇଛନ୍ତି, ତାହାର ଫଳାଫଳ ତାଙ୍କୁ ହିଁ ସହିବାକୁ

ପଡ଼ିବ । ଜଣେ ବୁଢ଼ା ମରୁଛି । ମୁଁ କଅଣ ତାପାଇଁ ପାଣିକି ଡେଇଁ ପଡ଼ି ନିଜେ ବୁଡ଼ି ମରିବା ଠିକ୍ ହେବ ? ଯେତିକି ଗଙ୍ଗାଗଲା, ସେତିକି ଫଳ ପାଇଲା ।

ମେନା ମୁହଁ ଶୁଖାଇ ଲେଉଟି ଆସିଲା । ବାଟରେ ଭାବୁଥିଲା—ଆଉ କଟକ ଫେରିବ ନାହିଁ । କିନ୍ତୁ କାହିଁକି କେଜାଣି ସୁବର୍ଣ୍ଣପ୍ରତି ମମତା ଜନ୍ମିଲା । ବିଶ୍ୱାସଘାତକତା କରିବା ପାଇଁ ମନ ତାର ବଳିଲା ନାହିଁ । ଶୂନ୍ୟ ହସ୍ତରେ ଲେଉଟି ଆସିବାର ଦେଖି ଦୀର୍ଘଶ୍ୱାସ ଟାଣି ସୁବର୍ଣ୍ଣଦେଵୀ ବସି ପଡ଼ିଲେ । ଚତୁର୍ଦ୍ଦିଗ ଶୂନ୍ୟ ଦେଖାଯାଉଛି । ହାତରେ ଧନ ନାହିଁ । କୌଣସି ଆଡ଼ୁ କିଛି ଆସିବାର ଆଶାନାହିଁ । ଟ୍ରଷ୍ଟିମାନେ କିଛି ନ ଦେଇ ଠକୁଛନ୍ତି । ମାସେ ପନ୍ଦର ଦିନ ପରେ ମକଦ୍ଦମା ତାରିଖ ପଡ଼ିବାରୁ ଓକିଲ ବାବୁ ଟଙ୍କା ମଗାଇ ପଠାଉଛନ୍ତି । ଖଣ୍ଡିଏ ଖଣ୍ଡିଏ ହୋଇ ଘରର ସବୁ ଚିଜ ବିକି ହୋଇ ଗଲାଣି ଗୋଟିଏ ଗୋଟିଏ ଅଳଙ୍କାର ପର ଦୋକାନକୁ ଚାଲିଗଲାଣି ।

ଏକୁଟିଆ ବସି ସୁବର୍ଣ୍ଣଦେଵୀ ଭାବ ହେଉଛନ୍ତି—ଏମିତି ଆଉ କେତେଦିନ ଚଳିବ ?

ଗୋଟି ଗୋଟି ହୋଇ ପଛକଥାଯାକ ମନେ ପଡ଼ୁଛି । ସୁଭଦ୍ରା ଦେଇ ପୁରରେ କେତେ ସମ୍ପତ୍ତିବାଡ଼ି ଥିଲା—ସବୁଗଲା । ରାୟବାହାଦୁର ଦେଇଥିବା ଟଙ୍କା-କଉଡ଼ିତକ ସବୁ ସରିଲା । ଗୋଟି ଗୋଟି ହୋଇ ସମସ୍ତେ ଗଲେ । ଦିହରୁ ବଳଗଲା । ବପୁ ଗଲା, ରୂପଯୌବନ ଗଲା, ଶ୍ରୀ ସମ୍ପଦ ଗଲା । ସମସ୍ତେ ଛାଡ଼ିଛୁଡ଼ିଦେଇ ଗଲେ । ମରି ଆସୁଥିବା ଗଛ ଉପରକୁ ବସିପଡ଼ିବା ପାଇଁ ଚଢ଼େଇଟିଏ ବି ଆସନ୍ତି ନାହିଁ । ଶୁଖିଲା ଗଙ୍ଗାରେ ଜଳୁଆର ନାହିଁ କି ଭଟ୍ଟା ନାହିଁ ।

ଖିର ଶୁଖିଲେ କି କରେ ମାଆ

ନଈ ଶୁଖିଲେ କି କରେ ନାଆ ?

ଦର୍ପଣ ଆଗରେ ଛିଡ଼ା ହୋଇଗଲେ ଯେଉଁ ମୁହଁଟିକୁ ଚାହିଁ ରହିବାକୁ ଲୋଭ ହେଉଥିଲା, ସେଇ ମୁହଁଟିକୁ ଚାହିଁଦେଲେ ଭୟରେ

ଆଜ ବହ ସୀତେଇ ଉଠୁଛି । ଆଖି ଖୋଲା ଖୋଲା, ହନୁହାଡ଼ ଉଞ୍ଚା ଉଞ୍ଚା, ଗୋଲ ଗୋଲ ଗାଲ ଦୁଇଟି କାହିଁ ଯାଇ ଭିତରେ ପଶିଗଲଣି । ଦାନ୍ତଗୁଡ଼କ ଗିଜ ଗିଜ ହଣିଲଣି । ମୁଣ୍ଡର ବାଳତକ ଧଳା କସର ହୋଇ ଗଲଣି । ହାତ ଗୋଡରେ ଶିରପ୍ରଶିର ଗୁଡ଼ିକ ଗଣି ହୋଇ ଯାଉଛି । ଉଞ୍ଚା ଗୁଡଟା ପଛା ପାଲଟି ଗଲଣି । ଏ ରୂପରେ କାହାକୁ ଆକର୍ଷଣ କରିବାକୁ ଆଉ କଅଣ ଅଛି ?

ରୂପଗଲା, ଭେକଗଲା, ଧନ ସମ୍ପତ୍ତି ସରିଲା । ତେବେ ବି ଆଶାଟା ଛାଡ଼ ଯାଉନାହିଁ ।

ଦାଣ୍ଡରେ ଭିକାରି ଭିକ ମାଗୁ ମାଗୁ ମୋହ-ମୁଦ୍‌ଗରରୁ ପଦେ ବୋଲି ଦେଉଛି—

ଅଙ୍ଗଂ ଗଳିତଂ ପଳିତଂ ମୁଣ୍ଡଂ
ଦନ୍ତବିହୀନଂ ଜାତଂ ତୁଣ୍ଡଂ
କରଧୃତ କମ୍ପିତ ଶୋଭିତ ଦଣ୍ଡଂ
ତଦପି ନମୁଞ୍ଚତ୍ୟାଶା ପିଣ୍ଡଂ ।

ପିଲାଦିନେ ପଢ଼ିଥିବା ଭକ୍ତକବି ମଧୁସୂଦନଙ୍କ କବିତା ପଦେ ମନେ ପଡଯାଉଛି—

ଯୁବତୀସ୍ୱ ରକ୍ତାଧାର
ରମ୍ୟ ଜ୍ୟୋତି ନୟନର
ସ୍ୱର୍ଣ୍ଣ-ଘନ-ସମ-ବକ୍ଷ ରୁଚିରୁ ପଦ୍ମାନନ
ଇନ୍ଦ୍ରଧନୁ ଶୋଭାସମ ପଳାନ୍ତି ବହନ ।

"ପଳାନ୍ତି ବହନ" ସମସ୍ତେ ପଳାନ୍ତି । ସୁବର୍ଣ୍ଣ ଭାବିଲା—ସବୁତ ପଳାଇ ଗଲଣି । ସବୁତ ସରିଗଲଣି । ତେବେ ଏ ଜୀବନଟା ଯାଉନାହିଁ, ଅଛି କାହିଁକି ?

ମଣିଷର ଜୀବନଟା ସହଜେ ଯାଏ ନାହିଁ । ସୁବର୍ଣ୍ଣ ଭାବିଲା—ଅପକର୍ମ କରି କରି ଯାହାର ଜୀବନଟା ଲୌହ-କଠିନ ହୋଇ ସାରିଛି,

ସେତ ସହଜେ ଗୁଡ଼ିପିବ ନାହିଁ । ମଣିଷକୁ ମାର ସୁଦ୍ଧା ବଜ୍ରଭଳି କଠୋର ହୋଇ ବଞ୍ଚି ରହିଛି ଯିଏ, ସେ କଅଣ ମରିବ ଏତେ ସହଜରେ ? ତାକୁ ଯେ ଅନେକ ଦୁଃଖ ଭୋଗିବାକୁ ପଡ଼ିବ ! ହଜାର "ଜୀବନଚିନ୍ତା" ବା 'ଅନୁଚିନ୍ତା' ତାକୁ ସହଜେ ନେଇ ଜୀବନର ଶେଷ ସୀମାରେ ପହଞ୍ଚାଇ ଦେଇ ପାରିବ ନାହିଁ ତ !

× × ×

ନିରାଶ ଭାବେ ଏଣେତେଣେ ଅନ୍ତାନ୍ତ ଅନ୍ତାନ୍ତ ଲାଇବ୍ରେରି ଘରେ ସୁବର୍ଣ୍ଣ ଦେଖିଲେ ଅନେକଗୁଡ଼ିଏ 'ଶବ୍ଦରତ୍ନାକର" ବହି ପଡ଼ିରହିଛି । ବଜାରରେ ଗୋଟିଏ ଗୋଟିଏ ସେଠି ବହିର ଦାମ ଦୁଇଶହ ଟଙ୍କା । ମାତ୍ର କୋର୍ଟ ତରଫରୁ ଏ ବହି ବିକ୍ରି ଉପରେ "ନିଷେଧ ଆଜ୍ଞା" ଜାରି ହୋଇ ଯାଇଛି । ହୁଏତ ଗୋପନରେ ବିକ୍ରି କରାଇବାକୁ ପଡ଼ିବ । ହେଲେ ଏତେ ଚଡ଼ାଦରରେ ନେବ କିଏ ?

ସୁବର୍ଣ୍ଣଦେବୀ ଗୋପନରେ ଜଣେ ପୁସ୍ତକ ବିକ୍ରେତାଙ୍କୁ ଆସିବା ପାଇଁ ଅନୁରୋଧପତ୍ର ପଠାଇଲେ । ମହାଶୟଙ୍କର କଲିକତାଠାରେ ବହି ଦୋକାନ ଥାଏ । ବିକ୍ରେତା ଭଦ୍ରବ୍ୟକ୍ତି ଜଣେ ସୁଶ୍ରୀ ଯୁବକ । ସନ୍ତର୍ପଣରେ ସେ ଆସି ସାକ୍ଷାତ କଲାବେଳକୁ ସୁବର୍ଣ୍ଣଦେବୀ ନିଜକୁ ଅତି ଯତ୍ନରେ ସଜାଇ ରଖିଥିଲେ ।

କହି ବୋଲି ପାରେ ଯିଏ
ପରୁ ଚିଙ୍ଗୁଡ଼ି ବିକେ ସିଏ ।

କଥାଟା କିନ୍ତୁ ବହୁ ଚେଷ୍ଟା ସତ୍ତ୍ୱେ ସେ ହାତକୁ ଆଗେଇ ପାରିଲି ନାହିଁ ।

ବୁଲେଇ ବିକଲେ ମାଣିକ ଭଣ୍ଡ
ଲୁଚେଇ ବିକଲେ ତହୁଁ ବଳି କାଣ୍ଡ ।

ସୁବର୍ଣ୍ଣଦେବୀ ଗ୍ରାହକ ମହାଶୟଙ୍କୁ ସରବତ ଯାଚିଲେ ସୁଦ୍ଧା ସେ ଗ୍ରହଣ କଲେ ନାହିଁ । ଏଙ୍କ ହାତରୁ ପାନଖଣ୍ଡିଏ ଗ୍ରହଣ କରିବାକୁ

ଲୋକେ ଭୟ କରୁଛନ୍ତି । କୋର୍ଟରେ ଏଙ୍କର ନାମଗନ୍ଧ ନଉଠି ଥିଲେ ସୁଦ୍ଧା, ଲୋକେ ଠିକ୍ ଜାଣନ୍ତି ଯେ ଏଇ ନାରୀଙ୍କ ରାୟବାହାଦୁରଙ୍କର ପ୍ରକୃତ ହତ୍ୟାକାରିଣୀ ଅଟନ୍ତି ।

ଗ୍ରାହକଙ୍କୁ ଘରଦ୍ୱାର ଓ ଲାଇବ୍ରେରୀ ଆଦି ବୁଲାଇ ଦେଖାଇବା ଛଳନାରେ ସଙ୍ଗରେ ନେଇ ସୁବର୍ଣ୍ଣଦେବୀ ଶେଷକୁ ନିଜର ଶୟନ-କକ୍ଷରେ ପହଞ୍ଚିଲେ ଏବଂ ଇଙ୍ଗିତରେ ନିଜ ଶଯ୍ୟା ଉପରକୁ ଡାକିଲେ । ବିକୃତ ମସ୍ତିଷ୍କ ବ୍ୟକ୍ତି ନିକଟରେ ପ୍ରକୃତ ଓ ପ୍ରବୃତ୍ତି ଅନ୍ତମାନାରେ ଲାଳସା-ଗ୍ରସ୍ତ ହୋଇ ଉଠିଥାଏ । ଅନେକ ଦିନ ଯାବତ୍ ସୁବର୍ଣ୍ଣଦେବୀ କୌଣସି ପୁରୁଷକୁ ଏକୁଟିଆ ପାଇ ନଥିଲେ ।

ମାତ୍ର ଉପସ୍ଥିତ ଭଦ୍ରବ୍ୟକ୍ତି ତାଙ୍କଠାରୁ ଏକ ପ୍ରକାର ପଳାଇ ଗଲେ । ଗଲାବେଳକୁ କହିଗଲେ—ଆପଣ ହୁଏତ ଯେତୋଟି ସେଟ୍ ଅଛି ସବୁଗୁଡ଼ିକ ଆମଘରକୁ କାହା ହାତରେ ପଠାଇଦେବେ । ମୁଁ ପ୍ରତି ସେଟ୍ ପାଇଁ ପଚାଶଟଙ୍କା ହିସାବରେ ଯାହା ଆପଣଙ୍କ ପ୍ରାପ୍ୟ ହେବ, ତାହା ପଠାଇଦେବି ।

ବୁଲେଇ ବକଲେ ମାଣିକ ଭଣ୍ଡ ।

ସେ ଚାଲାପରେ ସୁବର୍ଣ୍ଣଦେବୀ ବଡ଼ ଦର୍ପଣଟା ସାମନାରେ ଠିଆହୋଇ ଆପଣା ଦେହର ହିସାବକିତାପ ତନଖି ଦେଖିବାକୁ ଲାଗିଲେ —ଏଇ ଦେହ, ଏଇ ରୂପ; ଥିଲା କଅଣ ଆଉ ହେଲା କଅଣ ? ସେଦିନ ପରି ଲାଗେ । ପତଙ୍ଗ ଭଳି କିଏ କେତେ ଝାଁକୁଛି । ଯେଉଁ ରୂପଶିଖା ଉପରକୁ ଡେଇଁପଡ଼ୁଥିଲେ, ସେ ବହ୍ନି ଆଜି ପୁଣି ଏଭଳି ଅବସ୍ଥାରେ ପହଞ୍ଚିଲା ! ନାରୀର ରୂପ ତେବେ କଣ କ୍ଷଣସ୍ଥାୟୀ ମାତ୍ର ।



କିଛି ଆୟ ନାହିଁ, ଅଥଚ ଖରଚ ଚାଲିଛି । ଚାରିଆଡ଼ୁ ଟଣା ଓଟରା । ମକଦ୍ଦମା ଖରଚଟା ଚଳାଇବାକୁ ହିଁ ପଡ଼ିବ । ଗୋଟିଗୋଟି ହୋଇ ଚଳାଚଳ ବାସନକୁସନ ଓ ଆସବାବପତ୍ର ଏବଂ ଗହଣାଗାଣ୍ଠି ସବୁ ବିକ୍ରି ହୋଇଗଲା । ତଥାପି ନିଜକୁ ବଞ୍ଚାଇ ଚଳିବାକୁ ପଡ଼ିବ ଯେ ! ମକଦ୍ଦମା ନିଶା କମ୍ ନିଶା ନୁହେଁ । ସେହି ବାଟ ଦେଇ ବାଦୀ ପ୍ରତିବାଦୀ ଉଭୟ ପକ୍ଷର ଲୋକଙ୍କୁ ଆଇନଜୀବୀ ଓ ତାଙ୍କ ଲୋକମାନେ ଶୋଷଣ କରି ଶେଷ କରି ଚାଲିଛନ୍ତି । ହାରିବା ଲୋକ ଦେଖୁଛି ତାର ସର୍ବନାଶ ଘଟିଲା । ଜିତିଲା ଲୋକଟି ଜୟ କରି ସାରିବା ପରେ ଦେଖୁଛି, ଯାହାକିଛି ସେ ପାଇଛି, ତାହାଠାରୁ ଶତଗୁଣବଳି ତାର ଖରଚ ହୋଇଯାଇଛି ।

ଶଶିବାବୁଟି ପକ୍କା ଓକିଲ । ବିଶାଖାପାଟଣା ଅତିଥିଶାଳାର ଜଗୁଆଳିକୁ ସାକ୍ଷ ଦେବା ଲାଗି କୋର୍ଟକୁ ଟାଣିଆଣିଲେ । ସେଠା ପ୍ରସୂତିଶାଳାର ଧାଈଙ୍କୁ ମଧ୍ୟ ଆଣାଇଲେ । ସେମାନଙ୍କଦ୍ୱାରା ପ୍ରମାଣ କରାଇନେଲେ ଯେ, ସୁବର୍ଣ୍ଣଦେବୀହିଁ ପୁଅ ପିଲାଟିଏ ପ୍ରସବ କରିଥିଲେ ।

ଶେଷକୁ କୋର୍ଟର ରାୟ ବାହାରିଲା ଯେ ନିକୁଞ୍ଜକିଶୋର ରାୟସାହେବଙ୍କ ପୋଷ୍ୟପୁତ୍ର ନୁହେଁ । ସେ ସୁବର୍ଣ୍ଣଦେବୀଙ୍କ ଯାରଜ ସନ୍ତାନ । ତେଣୁ ରାୟ ବାହାଦୁରଙ୍କ ପୈତୃକ ଏବଂ ନିଜସ୍ୱ ସମ୍ପତ୍ତି ଉପରେ ତାର କୌଣସି ସ୍ୱତ୍ତ୍ୱ ନାହିଁ । ଲାବଣ୍ୟଦେବୀ ରାୟବାହାଦୁରଙ୍କ ବିବାହିତା ସ୍ତ୍ରୀ ଥିଲେ ଏବଂ ତାଙ୍କର ଜନ୍ମିତ ପୁତ୍ର ହରିଶଙ୍କର ହିଁ ସମସ୍ତ ସମ୍ପତ୍ତିର ଆଇନସଙ୍ଗତ ଉତ୍ତରାଧିକାରୀ ।

କୋର୍ଟ ତରଫରୁ ଆଜ୍ଞା ପତ୍ରିକା ଧରି ହରିଶଙ୍କରକୁ ସଙ୍ଗରେ ଆଣି ଶଶିବାବୁ ଆସି ରାୟ ବାହାଦୂରଙ୍କ ଘର ସାମନାରେ ଡବ ଡବ ନାଗରା ବଜାଇଦେଲେ ଏବଂ ଘର ସମ୍ପତ୍ତି ଦଖଲ ନେଲେ । ସୁବର୍ଣ୍ଣଙ୍କୁ କହିଲେ—ତୁମର ଏଠି କିଛି ମାତ୍ର ଅଧିକାର ନାହିଁ । ମାନ ମହତ୍ତ୍ୱକୁ ଜଗି ତୁମେ ନିଜେ ନିଜେ ଦାଣ୍ଡକୁ ବାହାରି ଆସ । ଏ ଘରୁ କୌଣସି ଗୋଟିଏ ମାତ୍ର ପଦାର୍ଥ ତୁମେ ସଙ୍ଗରେ ନେଇ ଯାଇ ପାରିବ ନାହିଁ ।

ଦାସୀ ମେନକାକୁ ପଚାରିଲେ—ତୁ ତାଙ୍କ ସଙ୍ଗରେ ଯିବୁ, ନା ରହିବୁ ?

ମେନକା କହିଲା—ମୁଁ ନାନୀଙ୍କ ସଙ୍ଗରେ ଯିବି ।

ମେନକା କାନ୍ଧରେ ଭରଦେଇ ଦୁଃଖ, ଦୈନ୍ୟ, ଓ ହୃଦୟ ବିଦାରକ ହତାଶାକୁ ଭିତରେ ଭିତରେ ଚାପିଧରି ଚଳି ଚଳି ସୁବର୍ଣ୍ଣଦେବୀ ନିଜର ଜୀର୍ଣ୍ଣଶୀର୍ଣ୍ଣ ଶରୀରକୁ ଛିନ୍ନବସ୍ତ୍ର ତଳେ ଆବୃତ କରି ଧୀରେ ଧୀରେ ସଦର ରାସ୍ତା ଉପରକୁ ପାଦ ବଢ଼ାଇଲେ । ଅସହ୍ୟ ଲଜ୍ଜା ଓ ଅପମାନ ମଧ୍ୟରେ ଛିନ୍ନ ଓଢ଼ଣା ତଳେ ନିଜର ବିଶୁଷ୍କ ବିବର୍ଣ୍ଣ ମୁଖଟିକୁ ଯଥା ସମ୍ଭବ ଘୋଡ଼ାଇ ପକାଇ ରେଲଷ୍ଟେସନ ଆଡ଼କୁ ପାଦ ବଢାଇଲେ । ଗାଡ଼ି ଖଣ୍ଡିଏ ଭଡ଼ା କରି ଯିବେ, ସେଥିପାଇଁ ମଧ୍ୟ ପଇସାଟିଏ ହାତରେ ନ ଥାଏ । ମନେ ପଡ଼ୁଯାଉଥାଏ—ସୁଭଦ୍ରାଦେଇ ପୁରର ଘରଦ୍ୱାର ଓ ସମ୍ପତ୍ତି ବାଡ଼ି । ସେସବୁ କେବଳ ସ୍ୱପ୍ନରେହିଁ ଶେଷ ହୋଇଗଲା।

ବାଟଯାକର ଲୋକେ ଚାହିଁ ଥାଆନ୍ତି, ହସୁ ଥାଆନ୍ତି, ଛି ଛି କରି କହୁ ଥାଆନ୍ତି—"ରାକ୍ଷସୀ ଅଇଲା, ପୋଡ଼ନା ଯାଉଛି । ମଣିଷମାରୁ ଡାଆଁଣୀ ଯାଉଛି" ବୋଲି କହି ବାଟଛାଡ଼ି ପଳାଇ ଯାଉଥାଆନ୍ତି । କାହାରିକି କିଛି ନକହି, କାହାରି ଅଡ଼କୁ ନ ଚାହିଁ, ରେଲଷ୍ଟେସନ ଆଡ଼କୁ ସୁବର୍ଣ୍ଣଦେବୀ ଓ ମେନକା ଧରାଧରି ହୋଇ ଧୀରେ ଧୀରେ ଚଳି ଚଳି ଚାଲିଗଲେ । ଷ୍ଟେସନ ହତା ଭିତରକୁ ପଶିଯାଇ ଠିଆହୋଇଥିବା ରେଲଗାଡ଼ିର ଗୋଟିଏ ଡବା ଭିତରକୁ ଗଲେ । ଶୂନ୍ୟ ପଡ଼ିଥିବା ଖଣ୍ଡିଏ

ଲମ୍ବା ବେଞ୍ଚ ଉପରକୁ ଦଇଜଣଯାକ ଉଠି ବସିଲେ । ସୁବର୍ଣ୍ଣଙ୍କ ସାରା ଦେହଟି ବରଡ଼ାପତ୍ର ପରି ଥରୁଥାଏ । ବସି ନପାରି ଧୀରେ ଧୀରେ ସେ ଲମ୍ବ ହୋଇ ଶୋଇପଡ଼ିଲେ । ହୁଇସିଲ୍ ଦେଇ ଗାଡ଼ିଟା ଚାଲିବାକୁ ଆରମ୍ଭ କଲା । ତାଙ୍କ ଗୋଡ଼ ପାଖକୁ ବସି ପଡ଼ିଲା ମେନକା ।

ଶୋଇ ଶୋଇ ସୁବର୍ଣ୍ଣ ମନେ ମନେ ହତାଶଭାବେ ଭାବିବାକୁ ଲାଗିଲେ—ବଳ, ବୟସ, ମାନ, ସମ୍ମାନ, ସୁଖ, ଶାନ୍ତି ସବୁ ତାଙ୍କର ଶେଷ ହୋଇ ଯାଇଛି । ବାକି ଅଛି କେବଳ ଏ ଦୁଃଖମୟ ଜୀର୍ଣ୍ଣଶୀର୍ଣ୍ଣ ଦୁର୍ବଳ ଦେହ ଖଣ୍ଡିକ । ଆଉ କେତେ ଦୂର ଅଛି ମରଣ ?

ମନେ ମନେ ବିକଳ ହୋଇ ଭଗବାନଙ୍କ ନିକଟରେ ସେ ପ୍ରାର୍ଥନା କରୁଥାଆନ୍ତି—ପ୍ରଭୁହେ, ଆଉ ମୋର କିଛି ମାଗିବା ଲୋଡ଼ାନାହିଁ । ମୋତେ ମରଣ ବାଟଦେଇ ଘେନିଯାଅ ଏ ସଂସାରରୁ । ଆସୁ ଯମରାଜ । ବେକରେ ମୋର ଫାସ ଲଗାଇ ମୋତେ ଏ ଦୁନିଆରୁ ନେଇ ଯାଉ ପଛକେ, ମୁଁ ଆଉ ଏ ଜୀବନରେ କାହାରିକୁ ମୁହଁ ଦେଖାଇ ଦାଣ୍ଡ ଘାଟରେ ଚାଲି ପାରିବି ନାହିଁ ଯେ ! ଜୀବନ ଯାକ ଅନେକ ଭୁଲ କରିଛି । ଅନେକ ପାପ କରି ଆସିଛି । ଯମ ମୋତେ ନେଇ ତାର ନରକ କୁଣ୍ଡରେ ବୁଡ଼ାଇ ଦେଉ ପଛକେ, ମୋ ପରି ପାପିନୀକୁ ଏ ସଂସାରରେ ମୁହୂର୍ତ୍ତେ ଆଉ ନରଖୁ ହେ ! ଦୁନିଆର ଦୁଃଖ ଅପମାନ ଘେନି ମୁଁ ଆଉ ଠିଆ ହୋଇ ପାରିବି ନାହିଁ ହେ ଭଗବାନ ।

ଗାଡ଼ିଟା ଯାଉଥିଲା ପୁରୀଯାକେ । ମାଳତୀ ପାଟପୁର ଛାଡ଼ି ଆଗକୁ ଚାଲିଲା ବେଳକୁ ଦୁଇକଡ଼ରେ ବାଲିବନ୍ତମାନ ଦେଖାଗଲା । ତା'ଆର ଉପରେ ସାଉଁ ସାଉଁ ଝାଉଁ ବଣ । ସମୁଦ୍ରୀ ହାଉଆ ଦେହକୁ ଶୀତଳ ଲାଗୁଛି, ମନଟା ଧୀରେ ଧୀରେ ସତେଜ ହୋଇ ଉଠୁଛି । ଜଗନ୍ନାଥଙ୍କ ବଡ଼ଦେଉଳର ଅଗ୍ରଭାଗ ଦେଖାଗଲାଣି । ନୀଳଚକ୍ର ଉପରେ ପତିତପାବନ ବାନା ଉଡ଼ୁଥିବାର ଦେଖାଯାଉଚି । ସୁବର୍ଣ୍ଣଦେବୀଙ୍କର ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଲା । ଉଠି ବସି ହାତଯୋଡ଼ି ସେ କାତର

ସ୍ୱରରେ ମନେ ମନେ ଡାକ ଛାଡ଼ିଲେ—ଆହେ ପତିତପାବନ ପ୍ରଭୁ, ମୋ ପରି ପାତକୀକୁ ସତେ କଅଣ ତୁମେ ପରିତ୍ରାଣ କରିବ ?

ପରମୁହୂର୍ତ୍ତରେ ମନଟାକୁ ଭରିଦେଲା—ନିରାଶା ଓ ହତାଶା । ଅନୁଚିନ୍ତାରେ ଭିତରେ ଭିତରେ ସେ ଦଗ୍ଧ ହୋଇ ଯାଉଛନ୍ତି । ମନକୁ ମନ ସେ କହୁଛନ୍ତି—ତା କେମିତି ହେବ ? ଅପରାଧୀ ତେବେ ଦଣ୍ଡ ପାଇବ କପରି ? ସମସ୍ତଙ୍କୁ କ୍ଷମାଦେଲେ, ନ୍ୟାୟଦଣ୍ଡ ତେବେ କାହାପାଇଁ ?

ଶେଷକୁ ଗାଡ଼ି ଆସି ପୁରୀଷ୍ଟେସନରେ ଛିଡ଼ା ହେଲା । ଧୀରେ ଧୀରେ ଯାତ୍ରୀମାନେ ସମସ୍ତେ ଓହ୍ଲାଇଗଲେ । ମେନକାର ହାତଧରି ସୁବର୍ଣ୍ଣବି ଓହ୍ଲାଇ ପଡ଼ିଲେ । ବେଶଭୂଷାରେ ସେ ପାଗଳୀ ଭିକାରୁଣୀ ପରି ଦିଶୁଥାଆନ୍ତି । ମେନକାର ରୂପ ଆଜି ଦିଶୁଥାଏ—ନିତାନ୍ତ ନିଃସହାୟା ନିରାଶ୍ରୟାଟିଏ ପରି । ବାହାରକୁ ଆସିଲାବେଳକୁ ଫାଟକ ପାଖରେ ଟିକଟ କଲେକଟର ତାଙ୍କ ପ୍ରତି ନଜର କୋହଳ କରି ଛାଡ଼ିଦେଲେ । ପୁରୀଷ୍ଟେସନର ଗେଟ ପାଖରେ ନିତିପ୍ରତି ଏହିଭଳି ବିନା ଟିକେଟ ଯାତ୍ରୀ ବହୁ ସଂଖ୍ୟାରେ ଯାଆଆସ କରନ୍ତି । ସେମାନଙ୍କ ଭିତରେ ଛତାଚଇତନଧାରୀ ବାବାଜି ମାତାଙ୍କ ସଂଖ୍ୟା ସବୁଠାରୁ ଅଧିକ । କାଳେ କିଏ ଚିହ୍ନି ପକାଇବ, ସେଥିପାଇଁ ସୁବର୍ଣ୍ଣଦେବୀ ଚିରାପଣନ୍ତ ତଳେ ନିଜ ମୁହଁଟାକୁ ଏକ ପ୍ରକାର ଘୋଡାଇ ପକାଇ ଥାଆନ୍ତି । କେତେଦିନରୁ କମରଟା ତାଙ୍କର ବଙ୍କେଇ ଯାଇଛି । ମେନକାର ହାତଟାକୁ ଧରି ଧରି ସେ ଧୀରେ ଧୀରେ ଚାଲୁଛନ୍ତି । ବାଟଯାକ ଭାବୁଛନ୍ତି—କାହାଘରେ ଜନ୍ମ ହେଲେ, କାହାର ହାତଧରି ବାହା ହେଲେ, କେତେ କାହା ସଙ୍ଗରେ ପ୍ରୀତି କଲେ, ରାୟବାହାଦୂରଙ୍କ ସଙ୍ଗରେ ଏଣେତେଣେ ବୁଲି କେତେ ରାଜା ମହାରାଜା ଓ ବଡ଼ଲୋକ ଜମିଦାରଙ୍କ ଅତିଥି ଶାଳରେ ମାନ-ସମ୍ମାନ ପାଇ ଚଳିଲେ, ଶେଷକୁ ସବୁକଥା ଉଭେଇଗଲା ? ସତରେ କଅଣ ସେଗୁଡ଼ାକ ମରୀଚିକାର ଖେଳପରି ମିଥ୍ୟା ଓ ଭ୍ରମ ମାତ୍ର ?

ଦିଜଣଯାକ ଧୀରେ ଧୀରେ ଚାଲି ଚାଲି ବଡ଼ଦାଣ୍ଡ ଉପରକୁ ଆସିଲେ । ସେତେବେଳକୁ ସଞ୍ଜ ହୋଇ ଯାଇଥାଏ । ପଶ୍ଚିମାଯାତ୍ରୀମାନେ

ମନ ଆନନ୍ଦରେ ଗୀତ ଗାଇ ଗାଇକା ଚ୍ଚଲିଥାଆନ୍ତ । ଯାତ୍ରୀ ନବାଅଣା ବ୍ୟବସାୟୀ ପଣ୍ଡାମାନେ ଏମାନଙ୍କୁ ଧର୍ମଶାଳା ବା ପୁଷ୍ପ-ପଣ୍ଡାଙ୍କ ଯାତ୍ରୀଘର ଯାକେ କଢ଼ିଇ ନେଉଥାଅନ୍ତ । କେତେ ପ୍ରକାରର ଭାଷା ଏ ପଣ୍ଡାମାନେ ଜାଣନ୍ତ । ଠାକୁରଙ୍କ ନାମରେ ଏମାନେ ସୁନା ରୂପାର ଅଳଙ୍କାର ଠାରୁ ଆରମ୍ଭ କରି ଭୋଗବାଗ ପାଇଁ ଟଙ୍କା କଉଡ଼ି ସଂଗ୍ରହ କରି ନିଜ ନିଜର ଘରକୁ ନେଇ ପଳାନ୍ତ ।

ବଡ଼ଡାକ୍ତରଖାନାର ସାମନା ସାମନି ରାସ୍ତା କଡ଼କୁ ଗୋଟାଏ ଝଙ୍କାଳିଆ ବରଗଛ ଥାଏ । ତାହାର ତଳକୁ ପକ୍କାର ଚଉତରା ଗୋଟିଏ । ତାହାରି ଉପରେ ଥକ୍କାମାରି ବସିପଡ଼ି ସୁବର୍ଣ୍ଣ କହିଲେ— ଏଇଠି ବସିପଡ଼ ଲୋ ମେନକା । ଏଇଠି, ଏଇଠି । ଏହାଠାରୁ ଭଲ ଥାନ ମୋତେ ଆଉ ମିଳିବ ନାହିଁ ଲୋ ।

ମନେ ପଡ଼ିଗଲା ସମୁଦ୍ର କୂଳରେ ଥିବା ରାୟସାହେବଙ୍କ ପକ୍କା ଘର ଖଣ୍ଡିକ କଥା । ନକୁଳ ବାବୁଙ୍କ ସଙ୍ଗରେ ସେଘରକୁ ଆସି ଏଇ ସୁବର୍ଣ୍ଣଦେବୀ କେତେଥର ମଉଜରେ ରହିଯାଇଛନ୍ତି । ମେନକା ବି ସେଠିକି ଆସିଥିଲା । ସେ ପଚାରିଦେଲା—ନାନି, ସେ ଘରକୁ ଯିବାକି ?

ସୁବର୍ଣ୍ଣ ମୁଣ୍ଡ ହଲାଇ ମନା କରିଦେଲେ । କହିଲେ— ସେ ସମୟ ଆଉ ନାହିଁ ଲୋ ମେନା । ହୁକୁମ ବଦଳି ଯାଇଛି । ରାୟ ସାହେବ ଆଉ ଏ ଜଗତରେ ନାହାନ୍ତି, କି ତାଙ୍କ ଅଧିକାର ଆଉ ନାହିଁ । ସେଠିକି ଗଲେ ଘର ଜଗୁଆଳି ଅପମାନ ଦେଇ ଘଉଡ଼ାଇ ଦେବ ଯେ ! ଏଇଠି ମେନା, ଏଇ ଗଛମୂଳଟା ମୋର ଆଶ୍ରୟ ।

କହୁ କହୁ ସୁବର୍ଣ୍ଣଦେବୀ ସେଇ ଚଟାଣଟା ଉପରେ ଲମ୍ବ-ହୋଇ ଶୋଇଗଲେ । ଅନ୍ଧକାର ମାଡ଼ି ଆସୁଥାଏ । ଗୁଡ଼ିଡ ପାଖକୁ ତାଙ୍କର ଘୁଞ୍ଚି ଆସି ମେନକା ହାତବଢ଼ାଇ ସୁବର୍ଣ୍ଣଦେବୀଙ୍କ ମୁହଁଟିକି ଆଉଁସି ଦେଉ ଦେଉ ଜାଣିପାରିଲା ଯେ ସେ କାନ୍ଦୁଛନ୍ତି । ଲୁହଧାର ଆଖିରୁ ତାଙ୍କର ବହିଆସୁଚି । ପୋଛି ଦେଉଁ ଦେଉଁ ମେନା ବି ନିଜେ

କାନ୍ଦପକାଇଲା । ମନେ ମନେ ସେ ଭାବିଲା—ଏଇ ସାନ ସାଆନ୍ତାଣୀ ଆଣ୍ଡିଏ ବହଳ ବିଛଣା ଉପରେ ଫୁଲ ବିଞ୍ଚି ଶୋଉଥିଲେ । ଆଜି ତାଙ୍କର ଏ ଦଶା ! ଖାଲି ଚଟାଣଟା ଉପରେ ପଡ଼ିଚନ୍ତି, ହାଡ଼ ଗିଜଗିଜ ହାତଟାକୁ ହୁଏତ ବେକତଳେ ଥୋଇ ତକିଆ ଭଳି ବ୍ୟବହାର କରିବେ । ଦେହରେ ଖଣ୍ଡିଏ ଚିରାଲୁଗା ଛଡ଼ା ସଙ୍ଗରେ ଆଉ ତ କିଛି ନାହିଁ ! ହାତରେ ଗୋଟିଏ ବୋଲି ପଇସା ନାହିଁ ଯେ, କିଛି କିଣି ଖାଇବେ ।

ଭୁଣ୍ଡ ଖୋଲି ମେନା କହି ପକାଇଲା—ଠିକ ନାନ, ତୁମେ କଅଣ ଥିଲ, ଆଉ ଆଜି କଅଣ ହୋଇଗଲ ? ତୁମ ଦୁଃଖ ଦେଖି ମୋତେ କାନ୍ଦ ମାଡ଼ୁଚି ଯେ ।

ସୁବର୍ଣ୍ଣ କହିଲେ—କାନ୍ଦ ନା ଲୋ ମେନା, କାନ୍ଦନା, ଯାହା ଯାହା ମୁଁ କରିଆସିଛି, ତାଆର ଫଳାଫଳ ଭୋଗ କରିବାକୁ ଏତିକରେ ସରୁନାହିଁ । ଢେର ଢେର ଦୁଃଖ ମୋତେ ସହିବାକୁ ପଡ଼ିବ ଲୋ ମେନା ।

ସୁବର୍ଣ୍ଣ କଡ଼ ଲେଉଟାଇ ଚିତ୍ ହୋଇ ଶୋଇଲେ । ଘରି ଆଡ଼ ଅନ୍ଧକାର ହୋଇଗଲା । ଅତି ଦୂରକୁ ଲମ୍ବା କାଠଖୁଣ୍ଟିଟା ଉପରେ ସେ କାଳର କିରାସିନ ଲଣ୍ଠନଟାଏ ମିଞ୍ଜି ମିଞ୍ଜି ହୋଇ ଜଳୁ-ଥାଏ । ଘରିଆଡ଼ର ଅନ୍ଧକାରକୁ ଏ କ୍ଷୀଣ ଆଲୁଅ ଟିକକ ଅଧିକ ଭୟଙ୍କର କରି ଦେଉଥାଏ । ଧୀରେ ଧୀରେ ରାତି ବଢ଼ି ଚାଲିଲା । ଖାଡ଼ାଖାଡ଼ି ଉପାସରେ ହିଁ ଯାକ ସେଇ ଚଉତରାଟି ଉପରେ ଶୋଇ ପଡ଼ିଲେ । ସୁବର୍ଣ୍ଣଙ୍କ ଆଖିକି ନିଦ ଆସୁ ନ ଥାଏ । ଘରିଆଡ଼ ଜନ ଶୂନ୍ୟ । ଅସ୍ପଷ୍ଟ ସ୍ୱରରେ ସୁବର୍ଣ୍ଣ କହୁଛନ୍ତି—ହେଇ ଦେଖ ମେନା—ହରମ୍ବର ବାବୁ ମାଡ଼ି ଆସୁଚନ୍ତି । ହେଇ ଲୋ, ନାମଟା ମୋଓରି ଆଡ଼କୁ ଧାଇଁ ଆସୁଚି । ହେଇଟି ଲୋ ମେନା, ରାୟବାହାଦୂର ଦାନ୍ତ କଡ଼ମଡ଼ କରି ମୋଓରି ଉପରକୁ ଉଠୁଛନ୍ତି ଆସୁଛନ୍ତି । ମୋଓରି ମୁହଁକୁ ସମସ୍ତେ ଅନାଇ ରହିଛନ୍ତି । ସମସ୍ତଙ୍କ ଆଖିରେ ନିଆଁ ହୁଳା ଜଳୁଥିବାର ଦେଖାଯାଉଚି । ହେ ମେନା, କି ବିକଟାଳ ସେମାନଙ୍କ ମୁହଁ ଗୁଡ଼ାକ !! ଦେଖ ଦାନ୍ତଗୁଡ଼ାକ କେଡେ ବଡ଼ ବଡ଼ । ହାତର

ଆଙ୍ଗୁଠିଗୁଡାକୁ ସେମାନେ ବଢ଼ାଇ ରଖିଛନ୍ତି ମୋଓର ଆଡକୁ । ମୋର ତଣ୍ଟି ଚିପିଦେବା ପାଇଁ ସମସ୍ତେ ଧାଇଁ ଆସୁଛନ୍ତି । ମୁଁ କୁଆଡ଼କୁ ପଳାଇ ଯିବ ଲେ ? କଏ ମୋତେ ରକ୍ଷା କରିବ ?

ମେନା ଉଠିବସି ତାଙ୍କୁ ଆଉଁସିଲା, ଘଷିଲା ଓ ବୁଝାଇଲା ଯେ ଏ ସବୁ କିଛି ନୁହେଁ । ତୁମରି ମନର ଭୂତ ତୁମକୁ ଏମିତିଆ ଦୃଶ୍ୟ-ସବୁ ଦେଖାଉଛି । ଡର ନାହିଁ ନାନୀ, ଭୟ କରନାହିଁ ।

ପାଗଳୀ ସୁବର୍ଣ୍ଣଦେବୀ ନିଜକୃତ ଦୁଷ୍କର୍ମର ଅନଳଶିଖା ମଧ୍ୟରେ ନିଜେ ହିଁ ସେ ଦଗ୍ଧ ହେଉଛନ୍ତି । ଏଇହେଲା ଅନୁତାପ ନରକର ଗରଳ ଦଗ୍ଧ କୁଣ୍ଡର ସ୍ୱରୂପ ଏବଂ ଏହାରି ମଧ୍ୟରେ ଆକଣ୍ଠ ନିମଜ୍ଜିତ ହୋଇ ଅପରାଧୀ ମାନେ ସମସ୍ତେ କଳ୍ପିତ ଯମଦଣ୍ଡ ଭୋଗ କରୁଥାଆନ୍ତି ।



ସକାଳୁ ଦେଖାଗଲା—ବରମୂଳ ଚଉତରା ଗୁରପଟେ ପିଲା-ଛୁଆ ବୁଢ଼ାବୁଢ଼ୀ ହୋଇ ବହୁଲୋକ ରୁଣ୍ଡ ହୋଇ ଯାଇଛନ୍ତି । ଲଜ୍ଜା ଓ ସଙ୍କୋଚକୁ ସୁବର୍ଣ୍ଣ ଭୁଲିଯାଇଛି । ମୁଣ୍ଡରେ ତାର ଲୁଗା ନାହିଁ । ମେନକାର ହାତଧରି କଅଣ ନାହିଁ କଅଣ ବକି ଯାଉଛି । କାହୁଁ ଗୋଟାଏ ପାଗଳୀ ଆସିଛି ବୋଲି ଲୋକେ ଭିଡ଼ ଆସୁଛନ୍ତି । କିଏ ହସୁଚି ତ କିଏ ଦୁଃଖ କରୁଚି । କେହି ଚିଡ଼ଉଛନ୍ତି ତ କେହି ଠାହିଠାପରି କରୁଛନ୍ତି । କେହି କେହି ନିରେଖି ଚାହିଁ ପରସ୍ପର କଥାବାର୍ତ୍ତା ହେଉଛନ୍ତି—ଚହ୍ନା ଚହ୍ନା ଜଣାପଡୁଛି ହେ । ଭଲ ଘରର ଝିଅ ବୋହୂ ହେବ ପରି ! କେହି କେହି କହୁଥାଆନ୍ତି—ଜଣାଶୁଣା ଲୋକ, ସତେତ ସେଇ ଚେହେରା ! ସେଇ ନାକ, ସେଇ କାନ, ସେଇ ମୁହଁ, ଶଙ୍କରନାକର ବହିରେ ଏଙ୍କର ଫଟୋ ବାହାରିଚି । ଇଏ ସୁବର୍ଣ୍ଣ ଦେବୀ ହେବେ ପରି ! ରାୟବାହାଦୂର ନକୁଳବାବୁଙ୍କ ଶାଳୀ ଇଏ ?

ଜାଣିବା ଲୋକେ କହିଲେ—ହଁ ହୋ ସେଇ । ଠିକ ସେଇ ଫଟୋ ସଙ୍ଗରେ ଚେହେରା ଠିକ ମିଳିଯାଉଚି ହୋ !

ଆଉ ଜଣେ କହିଲେ—ତେବେ ସେ ରାୟବାହାଦୁରଙ୍କ କୋଠିକି ଯାଉନାହାନ୍ତି କାହିଁକି ?

ଆଉଜଣେ—ଦେଖି ନାହଁକି ? କାଲି ପରା ଖବର କାଗଜରେ ବାହାରିଚି, ଲବଣ୍ୟଦେବୀଙ୍କ ପୁଅ ହରିଶଙ୍କର ସବୁ ସଂପତ୍ତିର

ଉତ୍ତରାଧିକାରୀ ହେଲା । ଆଉ ଏକ ପୁଅ ନିକୁଞ୍ଜ କିଶୋର ପୂରାପୂରି ବେଦଖଲ ହେଲେ । ସେଇ ସୁବର୍ଣ୍ଣଦେବୀ ନିଃସ୍ବ ସବୁ ହରାଇ ପାଗଳୀ ହୋଇ ବଡ଼ଦାଣ୍ଡ ଉପରକୁ ଆସି ଯାଇଚନ୍ତି ।

କେହି କେହି କହିଲେ—ଆହା, କଅଣ ହେଲା ହୋ ? କେଉଁ ବଡ଼ ଘରର ବୋହୂ ; ପୁଣି କେତେ ବଡ଼ ଲୋକର ଶାଳୀ—ଆଜି ଦାଣ୍ଡର ଭିଖାରୁଣୀ ?

ସୁବର୍ଣ୍ଣ ସମସ୍ତଙ୍କ ଆଡ଼କୁ ଚାହିଁ ଏଣୁତେଣୁ ବକିବାରେ ଲାଗିଛନ୍ତି । କ୍ରମେ କ୍ରମେ ଘଟନାଟା ପୂରା ସହରର ଚାରିଆଡ଼େ ବ୍ୟାପିଯାଉଚି । ନିକଟରେ ଅଳ୍ପଦୂର ଉତ୍ତରକୁ ସିଭିଲ ସର୍ଜନ ବିନାୟକ ନନ୍ଦଙ୍କ ବସା । ସେ ମହାଶୟ ନିକଟକୁ ଆସି ସୁବର୍ଣ୍ଣଙ୍କୁ ଚିହ୍ନିପାରି ଦୁଃଖ ପ୍ରକାଶ କଲେ ଏବଂ ମେନକା ଦ୍ୱାରା ତାଙ୍କୁ ଡାକ୍ତରଖାନାକୁ ନେଇଗଲେ । ସଙ୍ଗେ ସଙ୍ଗେ ତାଙ୍କର ରହିବା, ଖାଇବା ପିଇବା ଓ ଚିକିତ୍ସାର ବ୍ୟବସ୍ଥା କରାଇ ଦିଆଗଲା ।

ମାସେ ଦିମାସ ପର୍ଯ୍ୟନ୍ତ ଏ ଚିକିତ୍ସା ଚାଲିଲା । ଏକୁଟିଆ କୋଠରୀଟି ଭିତରେ ତାଙ୍କୁ ରଖାଯାଇଥାଏ । ଜୀବନରେ ଅନେକ ଥର ଧକ୍କା ଖାଇ ଖାଇ ସୁବର୍ଣ୍ଣଙ୍କ ମନଟା ଟାଣ ହୋଇଯାଇଥିଲା । କିନ୍ତୁ ଶେଷ ଧକ୍କାଟା ସମ୍ଭାଳି ନେବା ତାଙ୍କ ପକ୍ଷେ ଆଦୌ ସହଜ ହେଲା ନାହିଁ । ଦୁଇମାସ ଚିକିତ୍ସା ପରେ କିଞ୍ଚିତ ପରିମାଣରେ ସେ ସୁସ୍ଥ ହେଲେ । ତାଙ୍କୁ ଦେଖିବା ପାଇଁ ଏତେ ଲୋକ ଆସୁଥାଆନ୍ତି ଯେ ହାସପାତାଲ କର୍ମଚାରୀମାନେ ବ୍ୟତିବ୍ୟସ୍ତ ହୋଇ ଯାଉଥାଆନ୍ତି । ଏଇଠି ମେନକା ତାଙ୍କ ଠାରୁ ବିଦାୟ ନେଇ ଜଣେ କାହା ଘରେ ଆଶ୍ରୟନେଲା । ମଝିରେ ମଝିରେ ଏଙ୍କୁ ଦେଖିବା ପାଇଁ ହାସପାତାଲକୁ ଆସୁଥିଲା । କିନ୍ତୁ କିଛିଦିନ ପରେ ଆଉ ସେ ଆସିଲା ନାହିଁ ।

ଶେଷକୁ ଦିନେ ସୁବର୍ଣ୍ଣଦେବୀ କାହାରି କି କିଛି ନ ଜଣାଇ ହାସପାତାଲ ଛାଡ଼ି କୁଆଡ଼କି ଚାଲିଗଲେ । କେତେକ ଭଦ୍ରମହିଳା ତାଙ୍କୁ ପାଇ ସଙ୍ଗରେ ନେଇ ଅନାଥାଶ୍ରମରେ ଛାଡ଼ିଲେ । ସେଇଠି ସେ କିଛିଦିନ

ରହିଲେ । ସେଥିଠାରୁ ସେ କଟକର ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନିକଟକୁ ଖଣ୍ଡିଏ ଚିଠି ଦେଇଥିଲେ :—

ଈଶ୍ୱର ଭରଷା

ପୁରୀ
୨୦-୨-୬୩

ମାନନୀୟ ମହାଶୟ,

ଶବ୍ଦ ରତ୍ନାକରରେ ଲେଖାଅଛି ମୁଁ ଜଣେ ସହକର୍ମିଣୀ ଶ୍ରୀମତୀ ସ୍ୱର୍ଣ୍ଣମୟୀ ଦେବୀ ବୋଲି । ଯେ ହେଉ, ଶନି ଦାଣ୍ଡରେ ନାନା ହଇରାଣରେ ପଡ଼ି ଆଜି ସର୍ବହରା । କେତେ ଦିନ ତଳେ ଆପଣଙ୍କ ସଙ୍ଗେ ଦେଖାହୋଇଥିଲି । ଆପଣଙ୍କ କଥା ଭାବି ନିରାଶପ୍ରାଣରେ ବହୁତ ଦମ୍ଭବଳ ଆସି ଯାଉଛି । ସରକାରଙ୍କ ଠାରୁ ମୋ ଲାଗି କିଛି ସାହାଯ୍ୟଭିକ୍ଷା କରିବେ କି ? ଆପଣଙ୍କ ଉପରେ ସବୁମତେ ନିର୍ଭର କରି ବସିଛି । ଟିକିଏ ନିରାଶ୍ରୟା ପ୍ରତି ଦୟା କରନ୍ତୁ । ସ୍ୱର୍ଗୀୟ ନକୁଳ ଚନ୍ଦ୍ର ଚଉଧୁରୀଙ୍କ ସ୍ୱର୍ଗରୁ ଆଶୀର୍ବାଦ-ଭାଜନ ହେବେ । ମୁଁ ବହୁତ ଲେଖାଲେଖି କରୁଥିଲି । କିନ୍ତୁ ଟଙ୍କା ଅଭାବରୁ କିଛି କରି ପାରୁନାହିଁ । ମିନତି ଦେବୀଙ୍କୁ ଆପଣତ ଜାଣିଥିବେ । ତାଙ୍କର ଠିକଣାରେ ମୋତେ ପତ୍ର ଦିଅନ୍ତୁ । ଗୃହକ ପରି ଗୃହ ରହିଲି ।

ଏ ସଂସାରଟାରେ ଏହାହିଁ ଲଗିଛି । ଚିଠି ଦେବେ । ଆଶା କରେଁ ପ୍ରଭୁଙ୍କ ଦୟାରୁ କୁଶଳରେ ଥିବେ । ଆଶା ତ ନାହିଁ; ମୁଁ କେବେ କଟକ ଗଲେ ଦେଖା । । ଇତି ।

ଆପଣଙ୍କ
ଶୁଭକାଂକ୍ଷୀଣୀ
ସ୍ୱର୍ଣ୍ଣମୟୀ ।

ସର୍ବହରାର ଶେଷ-ପତ୍ର ଖଣ୍ଡିକ ଏବେ ବି ବୋଧହୁଏ ସେ ଭଦ୍ରଲୋକ ସାଇତି ରଖିଛନ୍ତି । ଅନାଥାଶ୍ରମରେ କିଛିକାଳ ଅବସ୍ଥାନ

କିଛିଦିନ ପରେ ସ୍ୱର୍ଣ୍ଣମୟୀ ପୁଣିଥରେ ବାହାରକୁ ଆସିଲେ । ଦେଖିଲେ, ଲୋକେ ତାଙ୍କ କଥା ଯେମିତି ଆଉ ଏବେ ଆଲୋଚନା କରୁ ନାହାନ୍ତି । ପୁରୁଣା କଥା ଲୋକଙ୍କ ମନରୁ ଏକ ପ୍ରକାର ପାଶୋର ହୋଇ ଗଲାଣି । କାହା କଥାକୁ ଧରି ବସି ଚିରଦିନ ଆଲୋଚନା କରିବାକୁ କାହାର ବା ସମୟ ଅଛି ? ଧୀରେ ଧୀରେ ସ୍ୱର୍ଣ୍ଣମୟୀ ନିଜକୁ ଜନ ସମାଲୋଚନା-ମୁକ୍ତ ବୋଲି ମନେ କଲେ । ବେଳେ ବେଳେ ଦେଉଳ ବେଢ଼ା ଭିତରକୁ ଯାଇ ବୁଲିବାକୁ ଲାଗିଲେ । ତଥାପି ତାଙ୍କ ମନଭିତରେ "ନକୁଳ ବାବୁଙ୍କୁ ତୁ ମାରିଛୁ, ତୁ ମାରିଛୁ" ରବ ଅହରହ ଉଠୁଥାଏ । ଅପରାଧୀର ମନ, ବିଶେଷତଃ ନରହନ୍ତାର ମନ, ସହଜେ ତାକୁ ମୁକ୍ତ ଦିଏ ନାହିଁ ।

କିଛିଦିନ ପରେ ଦେଖାଗଲା—ନରେନ୍ଦ୍ର କୂଳରେ ଗୋଟିଏ ହୋଟେଲରେ ସେ ଆଶ୍ରୟ ନେଇଛନ୍ତି । ଛିନ୍ନବସ୍ତ୍ର ପରିହିତା ବିଷନ୍ନ—ବିବର୍ଣ୍ଣ ବଦନା, ଆଲୁଳାୟିତକେଶା ଜଣେ ମହିଳା, ଲୋକେ ଖାଇଗଲା ପରେ ଟେବୁଲ ଉପରୁ ଅଇଁଠା ବାସନ ତକ ଉଠାଇ ନେଇ ଧୁଆ-ଧୋଇ କରୁଛି ଏବଂ ଓଦା କନାରେ ଟେବୁଲ ପୋଛି ସଫା କରୁଛି ।

ଏମିତି କିଛିଦିନ ଗଲା ପରେ ହୋଟେଲରେ ବି "ହୋ" ଉଠିଲା—ଏଇ ସେ, ସ୍ୱର୍ଣ୍ଣମୟୀଦେବୀ । ଜୀବନ ସାରା କେତେ ଅପକର୍ମ କରି ଶେଷକୁ ନକୁଳ ବାବୁଙ୍କୁ ବିଷ ଦେଇ ମାରିଛି ଇଏ । ଏକୁ ବିଶ୍ୱାସ ନାହିଁ ହୋ, ହୁଏତ ହୋଟେଲରେ କେତେବେଳେ କେଉଁ ଖଞ୍ଜରେ କାହା ଖାଦ୍ୟ ପାତ୍ରରେ ବିଷ ଦେଇ ଦେବ ! ନରହନ୍ତ୍ରୀ, ପିଶାଚୀ, ରାକ୍ଷସୀ !

ହୋଟେଲ ମାଲିକ ଖାଲି ଗଣ୍ଡିଏ ଖାଇବାକୁ ଦେଇ ଚାକରାଣୀଟିଏ ପାଇ ଯାଇଥିଲେ । ମାତ୍ର ଖାଉଟିଙ୍କ ପ୍ରତିବାଦ ପ୍ରତି ସଜାଗ ନ ରହିଲେ ବ୍ୟବସାୟ ବୁଡ଼ିଯିବ ଯେ ! ଶେଷକୁ ସୁବର୍ଣ୍ଣଙ୍କୁ ସେ ବି ବିଦାୟ କରିଦେଲେ ।

ଲୋକେ କହନ୍ତ—ବ୍ରହ୍ମରାକ୍ଷସ ଓ ପିଶାଚୀ ଯେଉଁ ଡାଳରେ ବସିବ ସେ ଡାଳ ଭାଙ୍ଗିପଡ଼ିବ । କଥାଟା ଏକାବେଳକେ ସତ୍ୟ । ସୁବର୍ଣ୍ଣ ଯେଉଁ ଠାରେ ଆଶ୍ରୟ ନେଲେ—ସେଠି ଠିକ ଏଇକଥା ହେଲା ।

ପୁରୀ ସହର ଗୁଡ଼ ଏଣେ ତେଣେ କିଛିଦିନ ସେ ଭିକ୍ଷା କରି ବୁଲିଲେ । ଅବଶେଷରେ ସହର ବାହାରେ ଲୋକନାଥଙ୍କ ନିକଟରେ ଆଶ୍ରୟ ନେଲେ । ଏଠି କୁଷ୍ଠରୋଗୀଙ୍କ ସଂଖ୍ୟା ଖୁବ ବେଶୀ । ଶେଷକୁ ସୁବର୍ଣ୍ଣ କୁଷ୍ଠରୋଗ ଦ୍ୱାରା ଆକ୍ରାନ୍ତ ହୋଇ ପଡ଼ିଲେ । କିଛିଦିନ ପରେ ଦିହମୁହଁ ବିଭତ୍ସ ଦିଶିଲା । କାନ ନାକ ଫୁଲି ଲାଲ ପଡ଼ିଗଲା । ଗୋଡ଼ ହାତର ଆଙ୍ଗୁଠି ଗୁଡ଼ିକ ବିକୃତ ଦେଖାଗଲା । ବାଲି ରାସ୍ତା କଡ଼କୁ ସେ ଛିଡ଼ା କେରପାଲ ଖଣ୍ଡିକ ଉପରେ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ଶୋଇ ଗଲେ । ଗଲାଅଇଲା ବାଟୋଇଙ୍କୁ ବିକୃତ ହାତବଢ଼ାଇ ପଇସାଏ ଦିପଇସା ମାଗୁଥାଆନ୍ତ । ଚିହ୍ନିଲା ଲୋକେ ନିଜ ନାକରେ ହାତଦେଇ ଚାଲିଗଲା ବେଳକୁ କହି ହେଉଥାଆନ୍ତ—ହେଇଟି ହୋ "ଶଙ୍କରହାକର" ସହ କର୍ମିଣୀ ସୁବର୍ଣ୍ଣ ଦେବୀ । ଯୌବନ ବେଳେ "କୋଟି-ବ୍ରାହ୍ମାଣ୍ଡ-ସୁନ୍ଦରୀ" ଥିଲେ । ଆଉ ହେଇଟି, ଆଜି ତାଙ୍କର ଉଲଗ୍ନ ବକ୍ଷ ଆଉକୁ ଚାହିଁ । ସ୍ୱର୍ଣ୍ଣକାନ୍ତିଜଣା ମୁଖାରବିନ୍ଦକୁ ଅନାଅ । 'ଥୁ' ବୋଲି ଛେପ ଲଣ୍ଡାଏ ପକାଇ ଦେବାକୁ ମଧ୍ୟ ଘୃଣା ଲାଗୁଛି । ପଚିତ ଗଳିତ ଦେହରୁ ଦୁର୍ଗନ୍ଧ ବାହାରୁଚି । ଏଇ ଦେହ ପୁଣି ଦିନେ ଥିଲା—ଯତି-ମନ-ଭୁଲା—ଅପ୍ସରା ସୁନ୍ଦରୀ ।

ସାମନାକୁ ଖଣ୍ଡେ ଛିଡ଼ା ଦରିଘ ବାଲି ଉପରେ ପରା ହୋଇଥାଏ, ଚାଲିଲା ଅଇଲା ଲୋକେ ପଇସାଏ ଦିପଇସା ପକାଇ ଦେଇ ଯିବାପାଇଁ ।

ଜାଗର ଯାତ୍ରା ଦିନ ଲୋକନାଥଙ୍କ ନିକଟରେ ପ୍ରବଳ ଭିଡ଼ ହୋଇଥାଏ । ବାଟ କଡ଼କୁ ଶହ ଶହ କୁଷ୍ଠରୋଗୀ ଭିକ୍ଷାପାତ୍ର ଧରି ପଡ଼ିଥାଆନ୍ତ । ଶିବ ଦର୍ଶନ କରିବାକୁ ଆସି ଏମାନଙ୍କ ବିଭତ୍ସ ଦୃଶ୍ୟ ଦେଖି ଲୋକେ ଘୃଣାରେ ପଳାଇ ଯାଉଥାଆନ୍ତ । ଜଣେ କେହି ଚାଲିଯାଉଥିବାର ଦେଖି ସୁବର୍ଣ୍ଣ ଡାକ ପକାଇଲେ—

ହାଇକାହେ ମଦାନ୍ଧମେ, ହାଇକାହେ ଚଇନ ବାନ୍ଧୁ ! ଆସ ଆସ । ଏଣିକ ଥରେ ଆଖି ଫେରାଅ । ପଳାଇ ଯାଉଚ କୁଆଡେ ? ଯାହା ଯାହା କରିଚ, ତୁମକୁ ବି ହାନେ ହୁଏତ ମୋର ଦଶା ଭୋଗିବାକୁ ପଡ଼ିବ ।

ଚଇନଏ ଅଠକି ଛିଡ଼ା ହୋଇଗଲେ । ନାକରେ ଅଙ୍ଗୁଳି ଦେଇ ଠିଆ ହୋଇଥାଆନ୍ତି ସେ । ଚାହିଁଲେ—ସୁବର୍ଣ୍ଣ ଦେବୀ ଇଏ— କହିଲେ—କିଏ ଲୋ ତୁ ? କାହାଁକି ଡାକୁଛୁ ?

ସୁବର୍ଣ୍ଣ କହିଲେ—ମୁଁ ପରା ସୁବର୍ଣ୍ଣ ହୋ, ହାନେ ଥିଲି ତୁମର ଅଙ୍କଶାୟିନୀ । ଯାହାକୁ ତୁମେ ଶେଷ ଆଡ଼କୁ ବେନାମୀ କବଲି କହି ସର୍ବସ୍ୱ ଠକି ନେଲ । ନବାଗ୍ରସୁର ଆଶ୍ରୟଗୃହ ଖଣ୍ଡିକୁ ନିଜସ୍ୱ କରିନେଲ । ଭାବଚକି ଭଗବାନ ସେ କଥା ଜାଣନ୍ତି ନାହିଁ ? ଜାଣିଛ କି ଏତେବଡ ଅଧର୍ମ ପାଇଁ ତୁମକୁ କିଛି ଦଣ୍ଡ ଭୋଗିବାକୁ ପଡ଼ିବ ନାହିଁ ?

ଚଇନ ଦେଖିଲେ—ଏଇ ସୁବର୍ଣ୍ଣ ଦେବୀ । ହାନେ ଯିଏ ସୁବର୍ଣ୍ଣ ନିର୍ମିତ ନିଖୁଣ ପ୍ରତିମାଟିପରି ବିରାଜୁଥିଲା । ଯାହାର ସୁକୋମଳ ଅଙ୍ଗଲତା ହାନେ କେତେ ପୁରୁଷଙ୍କୁ ବିମୋହିତ କରି ଦେଉଥିଲା । ଲାବଣ୍ୟର ଭଣ୍ଡାର ସେଇ ସୁବର୍ଣ୍ଣମୟୀର ଆଜ ଏ ଦଶା !

ଯୁବଶ୍ରାୟୁ ରକ୍ତାଧର<br>
ରମ୍ୟ ଜ୍ୟୋତି ନୟନର<br>
ସ୍ୱର୍ଣ୍ଣ ଘନସମ ବକ୍ଷ, ଗୁରୁ ପଦ୍ମାନନ<br>
ଇନ୍ଦ୍ରଧନୁ ଶୋଭାସମ ପଲାନ୍ତ ବଦନ ।

ଚଇନ ଗୁହାଁ ରହିଲେ—ଛି ଛି, ସେଇ ହାଡ ଇଏ, ସେଇ ମାଂସ, ସେଇ ମେଦ, ସେଇ ରୂପ, ସେଇ ଭେକ ? ସେଇ ଚର୍ମ, ସେଇ

ଅସ୍ଥି ସେଇ ମଜ୍ଜା ? କୁଆଡ଼େ ଗଲା ସେ ଲାବଣ୍ୟ । କାହିଁ ଗଲା ସେଦିନର ସେ ପ୍ରସ୍ଫୁଟିତ ଯୌବନର ଚିତ୍ତବିମୋହନକାରୀ ସୌନ୍ଦର୍ଯ୍ୟ-ସମ୍ପଦ । କାହିଁ ଗଲା ସେ ଉନ୍ମାଦମୟୀ ସ୍ୱର୍ଣ୍ଣମୟୀର ପ୍ରଗଳ୍‌ଭତା । ଛି ଛି, ଅଜି ଏହି ଦୁର୍ଗନ୍ଧ ବାହାରୁଚି ସେହି ଦେହରୁ । କି ବିକୃତ ବିଭତ୍ସ ରୂପଧାରଣ କରିଛି ଆଜି ଏ ସୁବର୍ଣ୍ଣର ଅଙ୍ଗକାନ୍ତି । ସୁରମ୍ୟା ନାରୀର ପରିଣତି କଅଣ ଏଇଆ !

ସୁବର୍ଣ୍ଣ ଡାକିଲା—ହଇ ହେ ଚଇନ ବାବୁ, ସେଦିନ ପରା ବାଡ଼ବାଟେ ଲୁଚି ଲୁଚି ଆସି ଏଇ ନାରୀର ଫୁଲଶଯ୍ୟା ଉପରକୁ ଚଢ଼ି ପଡ଼ୁଥିଲ ! ଆଜ କାହିଁକି ଦୂରେଇ ଯାଉଛ ହେ ! ପାଖକୁ ଆସ । ଆଲିଙ୍ଗନ କର । ଚୁମ୍ବନ ଦିଅ । ଆଜବି ମୁଁ ସେଇ ସୁବର୍ଣ୍ଣ ହୋ । ଶବ୍ଦ-ରତ୍ନାକରର ଉପର ପୃଷ୍ଠା ଓଲଟାଇଲେ ମୋର ଫଟୋ ଦେଖିବାକୁ ପାଇବ ।

ଚଇନବାବୁ ଘୃଣାରେ ଦୂରେଇ ଯିବାକୁ ବାହାରିଲେ ।

ସୁବର୍ଣ୍ଣ ପୁଣି ଡାକିଲେ—ହଇ ହେ, ଚଇନ ମକଦ୍ଦମେ । ଚାଲିଯାଉଛ କୁଆଡ଼େ ? ଜୀବନସାରା ଅପକର୍ମ କରି କରି ଆଜ ମୋର ଏ ଦଶା । ତୁମେ ବି କମ ଅନ୍ୟାୟ କରିନାହଁ ! ଭାବୁଚକି କିଛି ତୁମକୁ ଭୋଗିବାକୁ ପଡ଼ିବ ନାହିଁ । ଏ ହାତ ପାପ ସେ ହାତ ଭୋଗେ ନାହିଁ । ତୁମର କର୍ମଫଳ ତୁମକୁ ହିଁ ଭୋଗିବାକୁ ପଡ଼ିବ ହେ ମକଦ୍ଦମେ ! ମତେ ଫାଙ୍କିଦେଲ, ତାଙ୍କୁ ଫାଙ୍କି ଦେଲ, ଦୁନିଆ ଆଖିରେ ଧୂଳିଦେଲ । କିନ୍ତୁ ଜାଣିରଖ, ଉପରେ ଜଣେ ନ୍ୟାୟଦଣ୍ଡ ଧରି ବସିଛି । ତା ଦୃଷ୍ଟିରେ କେହି କେବେ ନିସ୍ତାର ପାଇପାରେ ନାହିଁ । ତୁମକୁ ହୁଏତ ଦିନେ ନା ଦିନେ ଖଣ୍ଡେ ଛିଡ଼ା କେରପାଲ୍ ଧରି ଲୋକନାଥଙ୍କର ଏଇ ବାଲି-ଚଟାଣ ଉପରକୁ ଆସିବାକୁ ହିଁ ପଡ଼ିବ । ତୁମର ବି ବଳ, ବୟସ, ବପୁ, ରୂପ, ଭେକ, ଧନ, ସମ୍ପଦ

ସବୁର ପରିଣତି ମୋରି ପରି ହେବ ହେ । ମୋରି ଭଳି ହେବ ! ନିଜ କୃତ ପାପର ପ୍ରାୟଶ୍ଚିତ୍ତ ତୁମକୁ ହିଁ ଏକା ଭୋଗ କରିବାକୁ ପଡ଼ିବ ହେ !

ଚଇନିଙ୍କ ଛାତି ଭିତରଟା ଦୁଲୁକି ଉଠିଲା । ଭୟଭୀତ ଭାବେ ଅଣନିଃଶ୍ୱାସୀ ହୋଇ ସେଠାରୁ ସେ ପଳାଇ ଗଲେ ।

ପଳାଇ ଗଲେ କୁଆଡ଼େ ଯିବେ ? ତାଙ୍କୁ ଛାଡ଼ି ଦଉଛି କିଏ ? ତାଙ୍କର ମନ ଭିତରେ ଲୁଚି ବସିଛି ତାଙ୍କର ବିଚାରକ । ଦୁନିଆଁକୁ ଲୁଚାଇ ଲୁଚାଇ ଲୋକେ ଅପକର୍ମ କରିଯିବେ ସିନା, କିନ୍ତୁ ଏ ବିଚାରକ ସବୁକଥା ଦେଖୁଛି, ସବୁକଥା ଶୁଣୁଛି । ଠିକ୍ ବେଳ ଆସିଗଲେ ସେ ତାଙ୍କୁ ଦଣ୍ଡ ଦେଇ ଦେଉଛି । ସେଇ ମନ ଚଇନି ବାବୁଙ୍କ ଭିତରେ ଭିତରେ ଧୀରେ ସ୍ୱରରେ ଶୁଣାଇ ଦେଲା—ଆଉ ଅଳ୍ପ ଦିନ ଅପେକ୍ଷା କରହେ ଚଇନି ବାବୁ । ତୁମ ଦଶା କଅଣ ହେବ ଦେଖିବାକୁ ସାମାନ୍ୟ କିଛିଦିନ ମାତ୍ର ଅପେକ୍ଷା କର ।

